# ସାରଳା ରତ୍ନ ଭଣ୍ଡାର ରସ ସାଗର

## (ଢ଼ଗ ଢ଼ମାଳି ପ୍ରବାଦ)

୩ୟ ଖଣ୍ଡ




ବିନୋଦ ବିହାରୀ ଦାସ

## ।। ମତାମତ ।।

ଗୋଟିଏ ଜାତିର ହୃଦୟର ସ୍ପନ୍ଦନ ଅନୁଭବ କରିବାକୁ ହେଲେ ତା'ର କାବ୍ୟପରଂପରାକୁ ଅନୁଧ୍ୟାନ କରିବାକୁ ହୁଏ ,କିନ୍ତୁ ସେ ଜାତିର ସାଂସ୍କୃତିକ ଜୀବନ-ନାଟିକାର ସ୍ପନ୍ଦନ ଅନୁଭୂତ ହୁଏ ତାର ସମୃଦ୍ଧ ଲୋକ-ପରଂପରାରୁ । ଏହି ଲୋକ-ପରଂପରା ବିଧୃତ ହୋଇଥାଏ ସେ ଜାତିର କାଳ କାଳରୁ ପ୍ରଚଳିତ ପ୍ରବାଦ,ପ୍ରବଚନ,ପ୍ରହେଳିକା,ବୋଲି ଢଗ-ଢମାଳି,ଲୋକବାଣୀ ,ଲୋକଗୀତି ଓ ଲୋକକଥା ଇତ୍ୟାଦି ମାଧ୍ୟମରେ । ବିପୁଳ ଐଶ୍ୱର୍ଯ୍ୟମଣ୍ଡିତ ଓଡ଼ିଆ ଜାତିର ଐତିହ୍ୟବାହୀ ପ୍ରାଣ-ସ୍ପନ୍ଦନରେ ଏସବୁର ମୂଲ୍ୟ ଓ ଗୁରୁତ୍ୱ କିଛି କମ୍ ନୁହେଁ । କାଳର କୁଟୀଳ ଗତିରେ ଅନେକ କିଛିର ପରିବର୍ତ୍ତନ ଘଟେ ; ସଭ୍ୟତାର ମୁହଁ ଓ ଚେହେରା ବଦଳିଯାଏ, କିନ୍ତୁ ଲୋକସାହିତ୍ୟ ଲୋକପରଂପରା ଓ ଲୋକସଂସ୍କୃତିର ନାଭିପଦ୍ମରୁ ଉଦ୍‌ଭବ ହୋଇଥିବାରୁ ତାହା କାଳ କାଳ ପାଇଁ ଜୀଇ ରହି ଚିହ୍ନାଇ ଦେଉଥାଏ ଜାତିର ପାରଂପରିକ ବୈଶିଷ୍ଟ ।

ଏ ଜାତିର ସେହି ସମୃଦ୍ଧ ପରଂପରାବାହୀ ଲୋକସାହିତ୍ୟର ବିଚ୍ଛିନ୍ନ ବିଭବ ଓ ଦିଗ୍‌ଭାବକୁ ଖୋଜି ଠୁଳକରି ବର୍ଣ୍ଣାନୁକ୍ରମିକଭାବେ ସଜାଇ ବିଭିନ୍ନ ଖଣ୍ଡରେ ଲୋକାର୍ପଣ କରିବାର ସ୍ୱେଚ୍ଛାକୃତ ଗୁରୁଦାୟିତ୍ୱ ବହନ କରିଛନ୍ତି ଶ୍ରୀଯୁକ୍ତ ବିନୋଦ ବିହାରୀ ଦାସ । ତାଙ୍କର ଏ ଉଦ୍ୟମ ବନ୍ଦନୀୟ ଓ ଅଭିନନ୍ଦନୀୟ । ପୂର୍ବରୁ ଏ ଦିଗରେ ଉଦ୍ୟମ ହୋଇଥିଲେବି ତାକୁ ଅଧିକ ବିଧିବଦ୍ଧ,ବିସ୍ତୃତ ଓ ଶୃଙ୍ଖଳିତ ରୂପଦେବାକୁ ଚେଷ୍ଟା କରିଛନ୍ତି ସଙ୍କଳୟିତା । ବୃତ୍ତିରେ ଜଣେ ଆଇନଜୀବୀ ହୋଇଥିଲେ ମଧ୍ୟ ପ୍ରବୃତ୍ତିରେ ଜଣେ ସଂସ୍କୃତି-ସନ୍ଧାନୀ ବୃଦ୍ଧସେବୀ ହୋଇଥିବାରୁ ଶ୍ରୀଯୁକ୍ତ ଦାସଙ୍କର ଏହି ନିରବଚ୍ଛିନ୍ନ ମହତୀ ପ୍ରଚେଷ୍ଟା ମହାନ୍ ଓଡ଼ିଆଜାତିର ଅମୂଲ୍ୟ ସଂପଦ ହୋଇ ରହିବ ,ଏହା ନିଃସନ୍ଦେହ ।

**ଶ୍ରୀ ବ୍ରଜନାଥ ରଥ**
ସଭାପତି
ଫକୀରମୋହନ ସାହିତ୍ୟ ପରିଷଦ, ବାଲେଶ୍ୱର

# ସାରଳା ରତ୍ନଭଣ୍ଡାର
# ରସସାଗର

( ତୃତୀୟ ଖଣ୍ଡ )

ଗ୍ରନ୍ଥ -ଆମୁଖ

ଶ୍ରୀ ହୃଦାନନ୍ଦ ରାୟ

ଦର୍ଶନ ଅଧ୍ୟାପକ

ସଙ୍କଳୟିତା

ବିନୋଦ ବିହାରୀ ଦାସ

# ସାରଳା ରତ୍ନଭଣ୍ଡାର ରସସାଗର (ତୃତୀୟ ଖଣ୍ଡ)
# सारला रत्नभण्डार रससागर (३य खण्ड)
## SARALA RATNABHANDAR RASASAGARA (3rd Volume)

## ଉପଦେଷ୍ଟା, ପୃଷ୍ଠପୋଷକ, ସ୍ମାରକ ଓ ନିର୍ଦ୍ଦେଶକ
## ମା' ସାରଳା


| | |
|---|---|
| ସଙ୍କଳୟିତା | ଶ୍ରୀ ବିନୋଦ ବିହାରୀ ଦାସ |
| ପ୍ରକାଶକ ସର୍ବ ସତ୍ୱାଧିକାରୀ © | ବିପିନବିହାରୀ ଏଜୁକେସନାଲ୍ ଆଣ୍ଡ ପବ୍ଲିକ ଚେରିଟେବୁଲ୍ ଟ୍ରଷ୍ଟ, ବାଗଲପୁର, ପୋଷ୍ଟ - ଅଠାନ୍ତର - ୭୫୨୧୦୨ |
| ଡ଼ି.ଟି.ପି. | ଶ୍ରୀରାମ କମ୍ପ୍ୟୁଟର୍ସ୍, ମାନସିଂ ବଜାର, ବାଲେଶ୍ୱର । |
| ମୁଦ୍ରାକର | ଶ୍ରୀ ରାମକୃଷ୍ଣ ପ୍ରିଣ୍ଟର୍ସ, ୬/ବି. ଘୋନାଥ ମଜୁମ୍‌ଦାର ଷ୍ଟ୍ରିଟ୍, କଲିକତା - ୯ |
| ପ୍ରଚ୍ଛଦଶିଳ୍ପୀ | ଶ୍ରୀ ଶିବ ପାଣିଗ୍ରାହୀ, ଅଧ୍ୟାପକ |
| ପ୍ରଥମ ପ୍ରକାଶ | ଅକ୍ଷୟ ତୃତୀୟା - ୬.୫.୨୦୦୦ |

ବିତରକ

ପଦ୍ମାଳୟା
୩୧/ଏ ଜନପଥ, ୟୁନିଟ୍ - ୩
ଭୁବନେଶ୍ୱର । (ଫୋନ୍ : ୫୩୧୦୧୫)

ଦି . ଲ .(The Law)
ନିମଚଉଡ଼ି, କଟକ - ୨
ଫୋନ୍ : ୬୨୦୭୬୮

ମୂଲ୍ୟ : ୧୦୫/- (ଶହେ ପାଞ୍ଚ)



ଓଡ଼ିଶାର ପ୍ରଥମ ଚାଟାର୍ଡ୍‌ଏକାଉଟେଣ୍ଟ, ସାହିତ୍ୟାନୁରାଗୀ,

ପରୋପକାରୀ, ସମାଜସେବକ, ଜ୍ଞାନବୃଦ୍ଧ, ଜନପ୍ରିୟ, .

**୰ ହୃଦୟାନନ୍ଦ ନାୟକ,** ବି.ଏ., ଏଫ୍. ସି. ଏ. କୁ

ମୁଁ ମୋର ଓକିଲାତି ଜୀବନର ପ୍ରାରମ୍ଭରେ ଗୁରୁ ରୂପେ ପାଇବାର ସୌଭାଗ୍ୟ ଲାଭ କରିଥିଲି । ତାଙ୍କ ତତ୍ତ୍ୱାବଧାନରେ ତିନିବର୍ଷ କାଳ ତାଙ୍କର ଜଣେ ଅନୁଗତ କର୍ମୀରୂପେ କାର୍ଯ୍ୟ କରିଥିଲି । ସେଇ ସ୍ମରଣୀୟ ତିନି ବର୍ଷ ମୋର ଭବିଷ୍ୟତ ଜୀବନକୁ ବହୁତ ପ୍ରଭାବିତ କରିଛି । ତାଙ୍କର ଅଗାଧ ଈଶ୍ୱରବିଶ୍ୱାସ,ଅଧ୍ୟବସାୟ,ଜାତୀୟ ପ୍ରେମ,କର୍ମନିଷ୍ଠା ଓ ଅବିଶ୍ରାନ୍ତ ସାଧନା ମୋ ଜୀବନର ଗତିପଥ ନିୟନ୍ତ୍ରିତ କରିଛି । ତାଙ୍କଠାରୁ ମୁଁ ଯେଉଁ ଅଧ୍ୟବସାୟ,ଧୈର୍ଯ୍ୟ ଓ ଭଗବତ ଭକ୍ତିର ଦୀକ୍ଷା ଗ୍ରହଣ କରିଅଛି ,ତାହାରି ଫଳରେ ଆଜି ଏପରି ଏକ ଆୟାସସାଧ୍ୟ, ସାଧନା ସାପେକ୍ଷ କାର୍ଯ୍ୟ ସାଧନ କରିବା ମୋ ପକ୍ଷରେ ସମ୍ଭବପର ହୋଇ ପାରିଛି ।

ମୁଁ ତାଙ୍କ ସଂସ୍ପର୍ଶରେ ଆସି ନଥିଲେ , ନାନା ବାଧା-ବିଘ୍ନ ,ଅଭାବ -ଅସୁବିଧା, ଘାତ-ପ୍ରତିଘାତ,ଆଶା-ନିରାଶା ମଧ୍ୟରେ ତାଙ୍କର ଆଶୀର୍ବାଦରୁ ଈଶ୍ୱରୀ କୃପା ଲାଭକରି, ଏହି ଗ୍ରନ୍ଥର ସଙ୍କଳନ ସମ୍ପୂର୍ଣ୍ଣ କରପାରି ନଥାନ୍ତି ।

ସେହି ମହାନଆତ୍ମା ପ୍ରତି ଭକ୍ତିପୂର୍ଣ୍ଣ ପ୍ରଣତି ଜଣାଇ ଏହି ଗ୍ରନ୍ଥଟିକୁ ତାଙ୍କରି ଉଦ୍ଦେଶ୍ୟରେ ବିନମ୍ରତାର ସହ ଉତ୍ସର୍ଗ କରୁଛି ।

ତସ୍ମୈ ଶ୍ରୀ ଗୁରୁବେ ନମଃ

**ସଙ୍କଳୟିତା**

## ସୂଚୀପତ୍ର



**ମୋଟ ପୃଷ୍ଠାସଂଖ୍ୟା - ୩୦୨ (୨୯୪ + ୮)**

# ସାରଳା ରତ୍ନଭଣ୍ଡାର ରସସାଗର
## (ତୃତୀୟ ଖଣ୍ଡ)

## ଅଂଶଦାୟୀ ବୃନ୍ଦ

| | |
|---|---|
| ଉପକରଣ ସଂଗ୍ରାହକ | ଶ୍ରୀମତୀ ଝରଣା ରାଣୀ ଦାସ, ଆଡ଼ଭୋକେଟ୍ |
| ସଂପାଦନା ନିର୍ଦ୍ଦେଶକ | ଶ୍ରୀ ମହେଶ୍ୱର ମୂଳିଆ, ସଂପାଦକ 'ଉତ୍କଳପ୍ରସଙ୍ଗ' |
| ସଂପାଦନା ମଣ୍ଡଳୀ | ଶ୍ରୀ ଗୋବିନ୍ଦ ଚନ୍ଦ୍ର ଦାସ, କାର୍ଯକାରୀ ସଂପାଦକ 'ପ୍ରଜାତନ୍ତ୍ର'<br>ଶ୍ରୀ ସରୋଜ ରଞ୍ଜନ ମହାନ୍ତି, ସଂପାଦକ 'ଝଂକାର' |
| କାର୍ଯ୍ୟକାରୀ ସଂପାଦକ | ଶ୍ରୀ କିଶୋରୀ ମୋହନ ସାମନ୍ତରାୟ, ଶିକ୍ଷକ |
| ଯୁଗ୍ମ ସହକାରୀ | ଶ୍ରୀ ଭୁବନ ମୋହନ ସାହୁ, ଶିକ୍ଷକ<br>ଶ୍ରୀ ପ୍ରଭାକର ପ୍ରଧାନ , ଶିକ୍ଷକ |
| ଡ଼ି.ଟି.ପି. ନିର୍ଦ୍ଦେଶନା | ଶ୍ରୀ ନାରାୟଣ ସିଂହ, ବି.ଏ., ପି.ଜି.ଡ଼ି.ସି.ଏ. |
| ସହାୟକ | ଡାକ୍ତର କୃଷ୍ଣା ଦାସ, ଏମ୍.ଡ଼ି. (ଶିଶୁରୋଗବିଶେଷଜ୍ଞ) |
| ପରାମର୍ଶକ | ଶ୍ରୀ ମନ୍ମଥ ନାଥ ମହାନ୍ତି, ସେକ୍ରେଟେରୀ,<br>ଓଡ଼ିଶା ରାଜ୍ୟ ବାର କାଉନସିଲ୍ |
| ବ୍ୟବସାୟ ପରାମର୍ଶକ | ଶ୍ରୀ ବନୱାରିଲାଲ ଅଗ୍ରୱାଲ, ବେତନଟୀ |
| ବ୍ୟବସ୍ଥାପକ | ଶ୍ରୀ ଚକ୍ରଧର ପ୍ରଧାନ, ଆଡ଼ଭୋକେଟ୍ |
| ସଂଯୋଜକ | ଶ୍ରୀ ନିର୍ମଳ କାନ୍ତ ମହାନ୍ତି, ପ୍ରଧାନଶିକ୍ଷକ |
| ତତ୍ତ୍ୱାବଧାରକ | ଶ୍ରୀ ସୁନୀଲ ଦତ୍ତ |

# ମଙ୍ଗଳାଚରଣ

## ନୃତ୍ୟ ଗଣପତିଙ୍କୁ ବନ୍ଦନା

ନୃତ୍ୟ ପ୍ରିୟାୟ ଗଣନାୟକ ସୁନ୍ଦରାୟ ।
ନଗେନ୍ଦ୍ର ସୂତ୍ର ପରିଭୂଷଣ-ଭୂଷିତାୟ ।।
ଲମ୍ବୋଦରାୟ ଶୁଭଦାୟ ହରପ୍ରିୟାୟ ।
ତୁଭ୍ୟଂ ନମୋଽସ୍ତୁ ସର୍ବ ବିଘ୍ନ ବିନାଶକାୟ ।।

ହେ ଗଣପତି ! ତୁମେ ନୃତ୍ୟ ପ୍ରିୟ । ତୁମେ ଗଣମାନଙ୍କର ଅଧିନାୟକ ଏବଂ ଅତିସୁନ୍ଦର । ନାଗରାଜ ତୁମ ଅଙ୍ଗରେ ଉପବୀତ ଭାବରେ ବିଭୂଷିତ । ତୁମେ ଲମ୍ବୋଦର । ତୁମେ ଶୁଭଦ ଓ ହରପ୍ରିୟ । ହେ ପ୍ରଭୁ ! ସମସ୍ତ ବିଘ୍ନ ବିନାଶ କର ।

(୨)

## ଦେବୀ ଶକ୍ତି ଆରାଧନା

ବିମଳା କମଳା ସ୍ୱର୍ଗରେ ସାରଳା
　　　　ମର୍ତ୍ତେ ବୋଲାଉ ମଙ୍ଗଳା
ନମୋ ନାରାୟଣୀ ଅପର୍ଣ୍ଣା ପାର୍ବତୀ
　　　　ରଖ ମୋ ବୁଡ଼ିଲା ଭେଳା ।
ଦକ୍ଷିଣ ତୁ କାଳୀ ଅଟୁ ମୁଣ୍ଡମାଳୀ
　　　　ଅଟୁ ବିକଟ ମର୍ଦ୍ଦିନୀ
ଘୂର୍ମିତଲୋଚନୀ ପ୍ରଗଳେ ଶ୍ରୀଫୁଲ
　　　　ନିଜ ପାଦ ଲୋ ଗମନୀ
ବନ୍ଦଇ ବିନୋଦ ରାମଚଣ୍ଡୀ ପାଦେ
　　　　କରୁଅଛି ନିବେଦନ
ଏହି ପଦ ମୁହିଁ କହୁଅଛି ଭାବି
　　　　ଏପଦ କଳି ରଞ୍ଜନ ।

× × × ×

ଜୟତୁ କମଳା　　　　ଜୟତୁ ବିମଳା
　　　ଜୟ ଜୟ ମା' ସାରଳା
ଦେବୀ ନାମ ଧରି　　　ଗୀତ ମୁଁ ଗାଇବି
　　　ସୁସ୍ୱରେ ଫିଟୁ ମୋ ଗଳା
ସବୁଠାରେ ଅଛୁ　ମା' ଠାକୁରାଣୀ
　　　ପଦ ଦିଅ ଗଣି ଗଣି ।

(୩)

## ଗୁହ୍ୟକାଳୀ (ଭଦ୍ରକାଳୀ) ବନ୍ଦନା

କାଳୀ କରାଳ ବଦନାଂ ମୁଣ୍ଡମାଳା ବିଶୋଭିତାମ୍ ।
ଲୋଳ ଜିହ୍ୱାଂ ତ୍ରିନେତ୍ରାଙ୍ଗଖଡ୍‌ଗ ପାତ୍ର ଧରାନନାମ୍ ।।
ଗୁହ୍ୟାଦ୍ ଗୁହ୍ୟତମାଂ ଦେବୀଂ ସର୍ବସିଦ୍ଧି ପ୍ରଦାୟିନୀମ୍
ଗୁହ୍ୟ ଚକ୍ରେଶ୍ୱରୀଂ ବନ୍ଦେ କାଳିକାଂ କାଳମାତ୍ରକାମ୍ ।।

ହେ ଗୁହ୍ୟକାଳୀ ! ତୁମେ କରାଳ ବଦନା, ନରମୁଣ୍ଡମାଳାରେ ବିଭୂଷିତା । ତୁମର ଜିହ୍ୱା ଅତି ଚପଳ । ତୁମେ ତ୍ରିନେତ୍ରା, ଖଡ୍‌ଗ ଧାରିଣୀ । ପାନପତ୍ର ତୁମ ଅଧରକୁ ସ୍ପର୍ଶ କରିଅଛି। ତୁମେ ଅପ୍ରକଟା ଏବଂ ଗୃହ୍ୟଚକ୍ରର ଅଧିଶ୍ୱରୀ । ତୁମେ ସିଦ୍ଧିଦାୟିନୀ ,କାଳିକା ଏବଂ କାଳମାତୃକା । ତୁମକୁ ବନ୍ଦନା କରୁଅଛି ।

(୪)

## ମା' ବିମଳାଙ୍କୁ ପ୍ରଣିପାତ

ବିମଳେ ତ୍ୱଂ ଜଗଦ୍ ମାତା ବିମଳେ ତ୍ୱଂ ଜଗଦ୍ ପିତା
ବିମଳେ ତ୍ୱଂଜଗଦ୍ଧାତ୍ରୀ ,ବିମଳାୟୈ ନମୋନମଃ ।
× × × ×
ଶରଣାଗତ ଦୀନାର୍ତ୍ତ ପରିତ୍ରାଣ ପରାୟଣେ
ସର୍ବସ୍ୟାର୍ତ୍ତ ହରେଦ୍ଦେବୀ ନାରାୟଣୀ ନମୋଽସ୍ତୁତେ ।

ମା' ବିମଳା ! ତୁମେ ଜଗତର ମାତା ,ପିତା ଓ ଧାତ୍ରୀ । ଶରଣାଗତ ଦୀନ ,ଆର୍ତ୍ତଙ୍କ ସମସ୍ତଙ୍କ ଦୁଃଖଦୁର୍ଦ୍ଦଶା ମୋଚନ ପାଇଁ ବିନମ୍ର ପ୍ରଣତି ।

(୫)

## ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଜଣାଣ

ରତ୍ନାକରସ୍ତବ ଗୃହଂ ଗୃହିଣୀ ଚ ଲକ୍ଷ୍ମୀ
କିଂ ଦେୟମସ୍ତି ଭବତେ ପୁରୁଷୋତ୍ତମାୟ ।
ଆଭୀର ଗୋପଲଳନା ହୃତମାନସାୟ
ଦତ୍ତଂ ମନସ୍ତଦନୁ ମେ କୃପୟା ଗୃହାଣ ।

ହେ ପୁରୁଷୋତ୍ତମ ! ସାଗର ଆପଣଙ୍କର ଗୃହ ଏବଂ ସାରା ବ୍ରହ୍ମାଣ୍ଡର ଅନ୍ନଦାତ୍ରୀ ଜଗଜ୍ଜନନୀ ମହାଲକ୍ଷ୍ମୀ ଆପଣଙ୍କ ଗୃହିଣୀ । ଆପଣଙ୍କର କି ଅଭାବ ଅଛି ଯେ ଏ ଦୀନ ଆପଣଙ୍କୁ କିଛି ଦାନ କରିବ ? ଆପଣ ଦ୍ୱାପର ଯୁଗରେ ଗୋପାଳ ଓ ଗୋପାଙ୍ଗନାମାନଙ୍କ ମନପ୍ରାଣକୁ ଅପହରଣ କରିନେଇ ଯାଇଥିଲେ । ଏ ଦୀନ ଆପଣଙ୍କ ନିକଟରେ ତାର ମନ ପ୍ରାଣକୁ ଅର୍ପଣ କରୁଛି । କୃପା କରି ଗ୍ରହଣ କରନ୍ତୁ ।

(୬)

## ବାକ୍‌ଦେବୀ ମା' ସରସ୍ୱତୀଙ୍କୁ ବନ୍ଦନା

ଶୁକ୍ଳାଂ ବ୍ରହ୍ମବିଚାର ସାର ପରମା ମାଦ୍ୟାଂ ଜଗଦ୍ ବ୍ୟାପିନିଂ ।
ବୀଣା ପୁସ୍ତକ ଧାରିଣୀମଭୟଦାଂ ଜାଡ୍ୟାନ୍ଧକାରାପହାମ୍ ।।
ହସ୍ତେ ସ୍ଫଟିକ ମାଳିକାଂ ଚ ଦଧତୀଂ ପଦ୍ମାସନେ ସଂସ୍ଥିତାଂ ।
ବନ୍ଦେ ତାଂ ପରମେଶ୍ୱରୀଂ ଭଗବତୀଂ ବୁଦ୍ଧିପ୍ରଦାଂ ଶାରଦାମ୍ ।।

ମା ସରସ୍ୱତୀ! ତୁମେ ଶୁଭ୍ରା । ବେଦାର୍ଥ ବିଚାର କରି ସାରତତ୍ତ୍ୱ ନିରୂପଣ କରିବାରେ ତୁମେ ନିପୁଣା । ତୁମେ ଆଦ୍ୟାଶକ୍ତି , ନିଖିଳ ଜଗତବ୍ୟାପୀ । ଅଜ୍ଞାନ ଅନ୍ଧକାରନାଶିନୀ, ଅଭୟଦାୟିନୀ । ହସ୍ତରେ ତୁମେ ବୀଣା ଓ ପୁସ୍ତକ ଧାରଣ କରିଅଛ ,ସ୍ଫଟିକମଣିର ମାଳା ବହନ କରିଅଛ । ପଦ୍ମାସନରେ ତୁମେ ଉପବିଷ୍ଟା । ତୁମେ ପରମେଶ୍ୱରୀ,ଭଗବତୀ ଓ ଶାରଦା । ତୁମକୁ ବନ୍ଦନା କରୁଅଛି ।

(୭)

## ମହାଲକ୍ଷ୍ମୀଙ୍କୁ ଭକ୍ତ୍ୟାର୍ଘ

ସରସିଜ ନିଳୟେ ସରୋଜ ହସ୍ତେ ।
ଧବଳ ତରାଂଶୁକ ଗନ୍ଧ ମାଲ୍ୟଶୋଭେ ।।
ଭଗବତୀ ! ହରିବଲ୍ଲଭେ ମନୋଜ୍ଞେ ।
ତ୍ରିଭୁବନ ଭୂତିକରି ! ପ୍ରସାଦ ମହ୍ୟମ୍ ।।

ମା ମହାଲକ୍ଷ୍ମୀ ! ତୁମେ ପଦ୍ମନିଳୟର ବିଳାସିନୀ ଓ ହସ୍ତରେ ପଦ୍ମ କଳିକା । ତୁମେ ଶୁକ୍ଳବସ୍ତ୍ର ପରିହିତା । ଗନ୍ଧମାଲ୍ୟରେ ବିଶୋଭିତା । ତୁମେ ଭଗବାନଙ୍କର ପ୍ରିୟତମ ,ମନୋଜ୍ଞ,ତ୍ରିଭୁବନର ଐଶ୍ୱର୍ଯ୍ୟଦାୟିନୀ । ହେ ଭଗବତୀ ! ପ୍ରସନ୍ନ ହୁଅ ।

(୮)

## ଶୀତଳା ଦେବୀଙ୍କୁ ବନ୍ଦାପନା

ଶୀତଳେ ସ୍ୱର୍ପହସ୍ତେ ଚ ମହାଗର୍ଦ୍ଦଭ ବାହିନୀ ।
ରକ୍ଷଣାଦ୍ ସର୍ବଗାତ୍ରାଣି ଶୀତଳେ ଶୀତଳ ପ୍ରଦେ ।।
ଶୀତଳେ ତ୍ୱଂ ଜଗନ୍ମାତା ଶୀତଳେ ତ୍ୱଂ ଜଗଦ୍ ପିତା ।
ଶୀତଳେ ତ୍ୱଂ ଜଗଦ୍ଧାତ୍ରୀ ଶୀତଳାୟୈ ନମୋନମଃ ।।

ହେ ଶୀତଳେ ! ତୁମେ ହାତରେ କୁଲା ଧରିଅଛ । ଗର୍ଦ୍ଦଭ ବାହନ ଆରୋହଣ କରିଅଛ । ତୁମେ ଶୀତଳ ଦାୟିନୀ । ମୋର ଅଙ୍ଗକୁ ଶାନ୍ତି ପ୍ରଦାନ କର । ତୁମେ ଜଗତର ମାତା,ପିତା । ତୁମେ ଜଗତକୁ ଧାରଣ କରିଅଛ । ତୁମକୁ କୋଟି କୋଟି ଦଣ୍ଡବତ ।

(୯)

## ଶ୍ରୀ ଲୋକନାଥଙ୍କୁ ପ୍ରଣିପାତ

ନମସ୍ତେ ଲୋକନାଥାୟ ହ୍ୟକର୍ମକର୍ମଦାୟିନେ ।
ନମସ୍ତେ ବୃଷମାରଢ ମୁମାପତିଂ ନମାମ୍ୟହମ୍ ।।

ହେ ଲୋକନାଥ ! ତୁମେ ଅକର୍ମାଙ୍କୁ କର୍ମ ଦିଅ । ତୁମେ ବୃଷଭ ଉପରେ ଆସୀନ । ତୁମେ ଉମାପତି । ତୁମକୁ ସାଷ୍ଟାଙ୍ଗ ପ୍ରଣାମ କରୁଛି ।

(୧୦)

## ନୀଳମାଧବଙ୍କୁ ପ୍ରାର୍ଥନା

ନୀଳାଦ୍ରି ଶିଖରାସୀନଂ ନମାମି ନୀଳମାଧବମ୍ ।
ପ୍ରଣତାର୍ତ୍ତିହରଂ ଦେବଂ ଶରଣାଗତରକ୍ଷକମ୍ ।।

ହେ ନୀଳମାଧବ ! ତୁମେ ନୀଳାଚଳର ଅଗ୍ରଭାଗରେ ଅବସ୍ଥାନ କରିଅଛ। ତୁମେ ପ୍ରଣତ ଲୋକର ଦୁଃଖନାଶକ । ତୁମେ ଶରଣାର୍ଥୀର ଶରଣଦାତା । ହେ ପ୍ରଭୁ ,ତୁମକୁ ପ୍ରଣାମ କରୁଛି ।

(୧୧)

**ମହାକବି କାଳିଦାସ ରଘୁବଂଶର ପ୍ରାରମ୍ଭରେ**
**ପରମେଶ୍ୱରଙ୍କୁ ବନ୍ଦନା କରି ଲେଖିଥିଲେ -**

ବଗାର୍ଥାବିବ ସଂପୃକ୍ତୌ
ବାଗର୍ଥ- ପ୍ରତିପତ୍ତୟେ,
ଜଗତଃପିତରୌ ବନ୍ଦେ,
ପାର୍ବତୀ -ପରମେଶ୍ୱରୌ
କ୍ୱସୂର୍ଯ୍ୟ- ପ୍ରଭବୋ ବଂଶଃ
କ୍ୱଚାଳ୍ପ -ବିଷୟା ମତିଃ
ତିତୀର୍ଷୁ ଦୁସ୍ତରଂ ମୋହା
ଦୁଡୁପେନାସ୍ମି ସାଗରମ୍ ।

ଶବ୍ଦ ଏବଂ ଅର୍ଥ ମଧ୍ୟରେ ଯେପରି ନିତ୍ୟ ସମ୍ବନ୍ଧ ବିଦ୍ୟମାନ,ସେହିଭଳି ସମ୍ବନ୍ଧଥିବା ଜଗତର ଜନନୀ ପାର୍ବତୀ ଓ ଜନକ ପରମେଶ୍ୱରଙ୍କୁ ଶବ୍ଦ ଓ ଅର୍ଥର ସମ୍ୟକ ଜ୍ଞାନଲାଭପାଇଁ ମୁଁ ବନ୍ଦନା କରୁଛି । କେଉଁଠାରେ ବିରାଟ ସୂର୍ଯ୍ୟବଂଶ, ଆଉ କେଉଁଠାରେ ମୋ ଭଳି କ୍ଷୁଦ୍ରବୁଦ୍ଧି ବ୍ୟକ୍ତି । ମୁଁ ଅଜ୍ଞାନ୍ ବଶତଃ ଅପୂର୍ବ ରଘୁବଂଶ ଚରିତ ବର୍ଣ୍ଣନା କରିବା ପାଇଁ ଯେ ଉଦ୍ୟମ କରୁଛି , ଏହା ଡଙ୍ଗାରେ ଦୁସ୍ତର ସମୁଦ୍ର ପାର ହେବାର ମୋର ପ୍ରଚେଷ୍ଟା ବୋଲି ମୁଁ ମନେକରେ। ଏହି ଶ୍ଳୋକକୁ ଆବୃତିପୂର୍ବକ ସାଷ୍ଟାଙ୍ଗ ପ୍ରଣାମ କରି ଜଗତ ଜନନୀ ଓ ପରମେଶ୍ୱରଙ୍କୁ ବନ୍ଦନା କରି 'ସାରଳା ରତ୍ନଭଣ୍ଡାର ରସ ସାଗର (୩ୟ ଖଣ୍ଡ) 'ଗ୍ରନ୍ଥ ଆରମ୍ଭ କରୁଛି ।

* * * * * * * *

**ଶ୍ରୀ ହୃଦାନନ୍ଦ ରାୟ**

ଦର୍ଶନ ଅଧ୍ୟାପକ

# ଗ୍ରନ୍ଥ -ଆମୁଖ

## ଓଁ

**ସାରଳା ରତ୍ନ ଭଣ୍ଡାର ରସସାଗର** ଗ୍ରନ୍ଥର ତୃତୀୟ ଖଣ୍ଡ ପ୍ରକାଶିତ ହେବାର ସୁଅବସରରେ ତାହାର ସଙ୍କଳୟିତା ଶ୍ରୀ ବିନୋଦ ବିହାରୀ ଦାସ ମହାଶୟଙ୍କୁ ଅନ୍ତରରେ ଗଭୀର କୃତଜ୍ଞତା ଅର୍ପଣ କରୁଅଛି । ଝଙ୍କଡ଼ ବାସିନୀ ମା' ସାରଳାଙ୍କ ପ୍ରତ୍ୟକ୍ଷ ପ୍ରେରଣାରେ ଶ୍ରୀ ଦାସ ମହାଶୟ ଏ ଗ୍ରନ୍ଥ ରଚନାରେ ପ୍ରବୃତ୍ତ ହୋଇଛନ୍ତି ; ସାହିତ୍ୟ ଜଗତ ପ୍ରତି ତାଙ୍କ ଅନ୍ତରାମ୍ତା ଉନ୍ମେଷିତ ହୋଇଅଛି ; ତାଙ୍କ ଜୀବନ ଧାରାରେ ଅଭୂତପୂର୍ବ ଅଭାବନୀୟ ଚାକ୍ଷୁସ ପରିବର୍ତ୍ତନ ଲକ୍ଷିତ ହୋଇଅଛି । ନିଜର ଭୋଗୀ ଜୀବନକୁ ସେ ଯୋଗୀ ଜୀବନରେ ରୂପାନ୍ତରିତ ହୋଇଯିବା ସ୍ୱୟଂ ଲକ୍ଷ୍ୟ କରିଛନ୍ତି । କେଉଁ ପ୍ରାଚୀନ କାଳରୁ ଅଜ୍ଞାତ ଭୂମିରେ ପଡ଼ି ରହିଥିବା 'ଲୋକ ବାଣୀ' ଢଗ,ଢମାଳି, ବଚନମାନଙ୍କୁ ବହୁ ଯତ୍ନରେ ସଂଗ୍ରହ କରି ପରୀକ୍ଷା ନିରୀକ୍ଷା ସହିତ ଏ ଜାତିର ବାଣୀଭବନର ରତ୍ନଭଣ୍ଡାରକୁ ସମୃଦ୍ଧ କରାଇଛନ୍ତି । ଏଥି ପାଇଁ ଯେଉଁ ଅକ୍ଳାନ୍ତ ପରିଶ୍ରମ,କାୟକ୍ଳେଶ,ଅର୍ଥଶ୍ରାଦ୍ଧ,ନିଷ୍ଠା,ଉତ୍ସାହର ଆବଶ୍ୟକତା ପଡ଼ିଛି ,ତାହା ସେ ଅକୁଣ୍ଠ ଚିତ୍ତରେ ଅର୍ପଣ କରିଛନ୍ତି । ଏସବୁ ମା' ସାରଳାଙ୍କ ପାଇଁ ତାଙ୍କ ଆତ୍ମିକ ଉଦ୍‌ବେଳନ ଓ ଉଦ୍‌ବୋଧନର ନିବେଦିତ ଭାବମୟ ପୁଷ୍ପାଞ୍ଜଳି ବୋଲି ସେ ଅନୁଭବ କରିଛନ୍ତି । ଚନ୍ଦ୍ରୋଦୟରେ କୁମୁଦବନ କିମ୍ୱା ସୂର୍ଯ୍ୟୋଦୟରେ ପଦ୍ମବନ ଆତ୍ମିକ ଉଲ୍ଲାସରେ ବିକସିତ ହୋଇ ସେହି ଦିବ୍ୟରଶ୍ମି ପ୍ରତି ସ୍ୱତଃ ନିବେଦିତ ହୋଇଗଲା ପରି ଶ୍ରୀ ବିନୋଦ ବିହାରୀ ଦାସଙ୍କ ହୃଦୟ-ସର୍ବସ୍ୱ ଏହି 'ରତ୍ନ ଭଣ୍ଡାର' ଓ 'ରସସାଗର' ମା' ସାରଳାଙ୍କ ଠାରେ ନିବେଦିତ ହୋଇଯାଇଛି । ରସିକ ପାଠକମାନଙ୍କ ଭୃଙ୍ଗ-ସମାଗମରେ ସେହି ପଦ୍ମ-କୁମୁଦ-ସରୋବର ଭରପୂର ହୋଇଯାଉ ଏହା ସର୍ବାନ୍ତକରଣରେ କାମନା କରୁଛି । ସେତିକି କାମନା କରି ଏହି ଦୁଇଧାଡ଼ି ଓଡ଼ିଶାର ବିଦଗ୍ଧ ପାଠକମାନଙ୍କ ପାଇଁ ଗ୍ରନ୍ଥ-ଆମୁଖ ଭାବରେ ଲେଖିଲି । ଏତିକି କହିଲେ ଯଥେଷ୍ଟ ହେବ ଯେ ଶ୍ରୀ ଦାସ ମହାଶୟ ଙ୍କ ଦ୍ୱାରା ସଙ୍କଳିତ ଏହି ଦୁର୍ଲ୍ଲଭ ଗ୍ରନ୍ଥ ଯଥାର୍ଥରେ ଏକ ବିସ୍ତୀର୍ଣ୍ଣ 'ରତ୍ନ ଭଣ୍ଡାର' ଓ 'ରସ ସାଗର' ।

ଏହା ସାଧାରଣ ଅର୍ଥରେ ଏକ ସଂଗ୍ରହ ବା ସଙ୍କଳନ ମାତ୍ର ନୁହେଁ । ପିପୀଲିକା-ଧର୍ମୀ ସଂଗ୍ରହରେ କେବଳ ମନୋନିବେଶ ନକରି ମଧୁମକ୍ଷୀକା- ଧର୍ମୀ ପରିଶୀଳନରେ ଶ୍ରୀ ଦାସ ମହାଶୟ ଆତ୍ମନିୟୋଗ କରିଅଛନ୍ତି । ଢଗ ଢମାଳି ମାନଙ୍କର ପ୍ରୟୋଜନୀୟ ସ୍ଥଳରେ ସେ

ଅନୁବାଦ,ଟୀକା ଟିପ୍ପଣୀ ସଂଯୋଜନ କରି ତାଙ୍କ ସାହିତ୍ୟିକ ପ୍ରତିଭାର ପୂର୍ଣ୍ଣ ବିନିଯୋଗ କରିଛନ୍ତି । ରୁଚିବନ୍ତ ଭାଷାର ପୟୋଗ, ଭାବଗର୍ଭକ ବିଶ୍ଳେଷଣାତ୍ମକ ସମୀକ୍ଷଣ ଓ ତାତ୍ପର୍ଯ୍ୟ ନିର୍ଦ୍ଧାରଣ କରି ସଂଗୃହୀତ ରତ୍ନମାନଙ୍କୁ ସେ ଶାଣୋତ୍ତୀର୍ଣ୍ଣ ଅପୂର୍ବ ଔଜ୍ଜ୍ୱଲ୍ୟରେ ମଣ୍ଡିତ କରି ଦେଇଛନ୍ତି । ଆଧୁନିକ ଜୀବନର ପ୍ରାସଙ୍ଗିକତା ସହିତ ଏକ ସମନ୍ୱୟ -ଧର୍ମୀ ଉପସ୍ଥାପନା ଦ୍ୱାରା ଏହି ରତ୍ନମାନଙ୍କର ମୂଲ୍ୟ ବହୁଗୁଣରେ ବର୍ଦ୍ଧିତ ହୋଇଛି । ଚିହ୍ନରା ଗ୍ରାହକମାନଙ୍କ ପାଇଁ ଧନ୍ଦିହେବାର ଅବକାଶ ସେ ରଖିନାହାନ୍ତି । ଗ୍ରନ୍ଥର ଉପାଦେୟ ଟିକା- ଟିପ୍ପଣୀ ସଙ୍ଗକୁ ଶ୍ରୀ ଦାସ ମହାଶୟଙ୍କ ଗବେଷଣା-ଧର୍ମୀ ମନ୍ତବ୍ୟମାନ ତାଙ୍କ ରଚିତ' ଗ୍ରନ୍ଥ -ପ୍ରବେଶ' ଓ'ଅବତରଣିକା'ର ଅଙ୍ଗ ମଣ୍ଡନ କରିଛି । ବିଭିନ୍ନ ଖଣ୍ଡରେ ସନ୍ନିବେଶିତ କର୍ମ ବର୍ଦ୍ଧିଷ୍ଣୁ ଏହି ଅବତରଣିକାମାନ ଏକ ସ୍ୱତନ୍ତ୍ର ସ୍ରୋତସୃଷ୍ଟି କରିଅଛି । ଗବେଷଣାରତ ଛାତ୍ର,ଅଧ୍ୟାପକ ଓ ବିଦ୍ୱାନଙ୍କ ପାଇଁ ଏହି ଅବତରଣିକାମାନ ଯେ ଚିନ୍ତାରାଜ୍ୟର ଜନପଥକୁ ରାଜପଥରେ ପରିଣତ କରାଇବାରେ ସହାୟକ ହୋଇଅଛି ଏହା ନିଶ୍ଚିତ ରୂପେ କୁହା ଯାଇପାରେ । 'ସାରଳା ରତ୍ନ ଭଣ୍ଡାର ରସସାଗର' ଦ୍ୱିତୀୟ ଖଣ୍ଡର ପ୍ରଚ୍ଛଦପଟର flapରେ ସନ୍ନିବେଶିତ ବିଦ୍ୱାନ ବନ୍ଧୁ ଶ୍ରୀଯୁକ୍ତ ରାଜକିଶୋର ମିଶ୍ରଙ୍କ 'ମତାମତ' ରୁ ଧାଡ଼ିଏ ଶ୍ରଦ୍ଧା ଅନୁମୋଦନ ସହ ଉଦ୍ଧାର କରୁଛି ,''ଓଡ଼ିଆ ଜତିର ସୁକୁମାର ଲଳିତ ଆତ୍ମାକୁ ଚିହ୍ନାଇବାରେ ଏହି ସଙ୍କଳନ ଟି ଏକ ସାର୍ଥକ ପ୍ରୟାସ'' ଅଟେ । ଓଡ଼ିଆ ଜାତିର ''ଆବେଗିକ ଇତିହାସ ସଙ୍କଳନ'' ର ଯେଉଁ ନୂତନ ଦିଗନ୍ତ ଅଚିରେ ଉନ୍ମୋଚିତ ହେବ ତହିଁରେ ଶ୍ରୀ ଦାସ ମହାଶୟଙ୍କ ମନନଶୀଳ ମନ୍ତବ୍ୟମାନ ଯେ ସ୍ଥାନିତ ହେବ ଏଥିରେ ସନ୍ଦେହର ଅବକାଶ ନାହିଁ । ପଥପ୍ରଦର୍ଶକ ଭାବରେ ଶ୍ରୀ ବିନୋଦ ବିହାରୀ ଦାସ ମହାଶୟଙ୍କୁ ଅଭିନନ୍ଦନ ଜଣାଉଛି ।

ପ୍ରଥମ ଖଣ୍ଡରେ ପୂଜ୍ୟ ପ୍ରଫେସର ଶ୍ରୀଯୁକ୍ତ ବିଧୁଭୂଷଣ ଦାସଙ୍କ ନୂତନ ଦିଗଦର୍ଶୀ ସୁଚିନ୍ତିତ ପାଣ୍ଡିତ୍ୟ ପୂର୍ଣ୍ଣ 'ଅଭିମତ' ଏକ ଉଜ୍ଜ୍ୱଳ ଦାର୍ଶନିକ ପ୍ରାକ୍ କଥନ । ପରମ ମିତ୍ର ଶ୍ରୀଯୁକ୍ତ ଗିରିଜା ଭୂଷଣ ପଟ୍ଟନାୟକଙ୍କ 'କିଞ୍ଚିତ କଥନ' ରେ ଓଡ଼ିଆ ଜାତିର ପ୍ରବହମାନ ଇତିହାସ ସ୍ରୋତରେ ବିଭିନ୍ନ କାଳର ଯେଉଁ 'ନିୟମ ଓ ପଦ୍ଧତି', 'ଐତିହ୍ୟ ଓ ପରମ୍ପରା'' ର ଆକଳନ ଓ ସାର୍ଥକ ବ୍ୟାଖ୍ୟା ପାଇଁ ନିର୍ଦ୍ଦେଶ ଦେଇଛନ୍ତି ତାହା ଶ୍ରୀ ବିନୋଦ ବିହାରୀ ଦାସଙ୍କ ଗ୍ରନ୍ଥକୁ ଦୀର୍ଘଜୀବୀ କରିବ ।

ଦ୍ୱିତୀୟ ଖଣ୍ଡରେ ସନ୍ନିହିତ ସମ୍ମାନନୀୟ ସୁସାହିତ୍ୟିକ ଶ୍ରୀଯୁକ୍ତ ସାତକଡ଼ି ହୋତା ମହୋଦୟଙ୍କ 'ମୁଖବନ୍ଧ' ରେ 'ଢଗ' ବିଷୟରେ କହିଛନ୍ତି,''ମଣିଷର ଅନୁଭବ ଓ ଅବବୋଧରେ ଯେଉଁ ସାର୍ବଜନୀନ ବିଷୟ ସର୍ବକାଳୀନ ହେବା ପାଇଁ ବ୍ୟବହାର ବିଧି ଦ୍ୱାରା ଯୋଗ୍ୟ ପ୍ରମାଣିତ ହୋଇଛି ତାହାହିଁ କେବଳ ସମୟ ଓ ସୀମା ଅତିକ୍ରମ କରି ଚେତନାର ବିକାଶ ସହିତ ମିଶି ଯାଇଛି । '' ଢଗଢମାଳି ଜୀବନବୋଧର ବ୍ୟଞ୍ଜନା ପରି ବର୍ଣ୍ଣାଢ୍ୟ ଉପାଦାନ''। ବ୍ୟବହାର

ବିଧିର କଷଟି ପଥରରେ ଘଷିହୋଇ ଯେଉଁ ସ୍ୱର୍ଣ୍ଣରେଣୁମାନ ରେଖା ରଚନା କରି ରହିଛନ୍ତି ସେହି 'ଢଗଢମାଳି' ମାନଙ୍କ ପୁନରୁଦ୍ଧାର ଓ ସାହିତ୍ୟିକ,ଦାର୍ଶନିକ ଓ ଐତିହାସିକ ମୂଲ୍ୟାୟନ ଲାଗି ଶ୍ରୀ ବିନୋଦ ବିହାରୀ ଦାସଙ୍କ ପ୍ରଚେଷ୍ଟା ସ୍ମରଣୀୟ ହୋଇ ରହିବ ।

ଯେଉଁ ପର୍ଯ୍ୟାୟ ଓ ପରମ୍ପରା କ୍ରମେ ପଣ୍ଡିତ କପିଳେଶ୍ୱର ବିଦ୍ୟାଭୂଷଣ ନନ୍ଦଶର୍ମା (ଖ୍ରୀ ୧୮୭୬) 'ଭାଷାକୋଷ' କାର ଗୋପାଳଚନ୍ଦ୍ର ପ୍ରହରାଜ (ଖ୍ରୀ: ୧୯୨୬) ଲୋକରତ୍ନ ଡ଼କ୍ଟର କୁଞ୍ଜବିହାରୀ ଦାଶ(ଖ୍ରୀ:୧୯୭୩) ଅଧ୍ୟାପକ ସର୍ବେଶ୍ୱର ଦାସ ,ଶ୍ରୀଯୁକ୍ତ ଚିନ୍ତାମଣି ମହାପାତ୍ର ପ୍ରମୁଖଙ୍କ ନାମକୁ ଶ୍ରୀ ଦାସ ଆନ୍ତରିକ ସମ୍ମାନସହ ତାଙ୍କ ଗ୍ରନ୍ଥର ଦ୍ୱିତୀୟ ଖଣ୍ଡ ଅବତରଣିକାରେ ଉଲ୍ଲେଖ କରିଛନ୍ତି , ସେହି ପର୍ଯ୍ୟାୟ ଓ ପରମ୍ପରାରେ ବରେଣ୍ୟ ବନ୍ଧୁ ଶ୍ରୀ ବିନୋଦ ବିହାରୀ ଦାସଙ୍କ ଶୁଭନାମ ଆପେ ଆପେ ସଂଯୋଜିତ ହୋଇ ଯାଉଛି । 'ଲୋକବାଣୀ' ନାମରେ କଥିତ ଢଗଢମାଳି ସାହିତ୍ୟର ଯେତେବେଳେ ଅଧିକ ପ୍ରଚାର ଓ ପ୍ରସାର ଘଟିବ ,ଏ କ୍ଷେତ୍ରକୁ ଶ୍ରୀ ବିନୋଦ ବିହାରୀ ଦାସ ଙ୍କ ଅବଦାନର ମହତ୍ୱ ଅଧିକରୁ ଅଧିକ ପରିସ୍ଫୁଟ ହେବ ।

ଶ୍ରୀ ବିନୋଦ ବିହାରୀ ଦାସ ଜଣେ ଖ୍ୟାତନାମା ଟିକସ ଆଇନ୍ ପରାମର୍ଶ ଦାତା ଆଡ଼ଭୋକେଟ୍ । ସେ ଓଡ଼ିଶା ରାଜ୍ୟ ବାର୍‌କାଉନ୍‌ସିଲର ପୂର୍ବତନ ଉପସଭାପତି ଏବଂ ଆନ୍ତର୍ଜାତିକ ବାର୍ ଆସୋସିଏସନ୍‌ର ସଦସ୍ୟ । ଭାରତୀୟ ବାର୍ କାଉନ୍‌ସିଲ ତରଫରୁ ଆଇନଜୀବୀ ପ୍ରତିନିଧିମାନଙ୍କ ନେତୃତ୍ୱ ନେଇ ୧୯୮୦ରୁ ୧୯୮୮ ମଧ୍ୟରେ ପାଞ୍ଚଥର ଆନ୍ତର୍ଜାତୀୟ ଆଇନ ମହାସଭା ମାନଙ୍କରେ ଯୋଗଦାନ ଏବଂ ଆଇନ ଅନୁଧ୍ୟାୟୀ ଭାବେ ୟୁରୋପ , ଆମେରିକା ,କାନାଡ଼ା, ପ୍ରଭୃତି ଦେଶ ମହାଦେଶ ର ବିଭିନ୍ନ ସ୍ଥାନକୁ ସେ ଗ୍ରସ୍ତ କରି ଅନୁଭୂତି ଅର୍ଜନ କରିଛନ୍ତି ।

ଶ୍ରୀ ଦାସ ମହୋଦୟଙ୍କର ସହଧର୍ମିଣୀ ଓ ସହକର୍ମିଣୀ ଆଡ଼ଭୋକେଟ୍ ସମାଜସେବୀ ଶ୍ରୀମତୀ ଝରଣାରାଣୀ ଦାସ ଓ ପରିବାର ବର୍ଗ ଶ୍ରୀ ଦାସଙ୍କୁ ଏହି ସଙ୍କଳନରେ ଅଶେଷ ସହାୟକତା କରିଛନ୍ତି । ଶ୍ରୀ ସୁନୀଲ ଦତ୍ତଙ୍କ ସମେତ ସମସ୍ତଙ୍କ ସହଯୋଗ ଲାଗି ଶ୍ରୀ ଦାସ କୃତଜ୍ଞତା ପ୍ରକାଶ କରିଛନ୍ତି । ଏ ଗ୍ରନ୍ଥ ଓଡ଼ିଶାର ପାଠକପାଠିକା ମାନଙ୍କ ଦୃଷ୍ଟି ଆକର୍ଷଣ କରୁ ଏହି କାମନା କରୁଛି ।

କଟକ — **ଶ୍ରୀ ହୃଦାନନ୍ଦ ରାୟ**

ତା ୧୭।୪।୨୦୦୦



*ସମ୍ମାନ୍ତ ପାଠକ ପାଠିକା ମାନଙ୍କ ସମ୍ମେଦାର୍ଥେ*

ପ୍ରସ୍ତୁତି ଓ ପ୍ରକାଶ ପଥେ

# ସାରଳା ରତ୍ନଭଣ୍ଡାର ରସସାଗର (ଚତୁର୍ଥ ଖଣ୍ଡ)



*ଏଥିରେ ରହିଛି :-*

- ❖ 'କ' ଓ 'ଖ' ଅକ୍ଷର କ୍ରମାନ୍ୱେ ଢ଼ଗଢ଼ମାଳି, ପ୍ରବାଦ, ଲୋକୋକ୍ତି , ଉକ୍ତି, ଛଟା, ନାଁଦିଆ ଓ ଲୋକମୁଖର ବୋଲି ପ୍ରଭୃତି ।
- ❖ ଶିଶୁ ମନୋରଞ୍ଜକ ଓ ଶବ୍ଦଲହଡ଼ି ପଦମାନ ।
- ❖ ଢ଼ଗଢ଼ମାଳି ଓ ପ୍ରବାଦର ପ୍ରଭୃତି ସଂପର୍କରେ ଏକ ଦୀର୍ଘ ଗବେଷଣା ମୂଳକ ଆଲୋଚନା ।
- ❖ ବ୍ୟକ୍ତିତ୍ୱ ସମ୍ପନ୍ନ ଓ ପ୍ରତିଷ୍ଠିତ ସାରସ୍ୱତ ସାଧକଙ୍କ ମୁଖବନ୍ଧ ।

ସଂକଳୟିତ୍ରୀ

# ଗ୍ରନ୍ଥ ପ୍ରବେଶ

କୀଚକ ବାହୁବଳେ ବିରାଟ ରାଜା । ଏହା ଏକ ପୌରାଣିକ ପ୍ରବାଦ । ଏହାର ତାତ୍ପର୍ଯ୍ୟ ହେଲା - ମହାଭାରତରେ ବର୍ଣ୍ଣିତ ବିରାଟ ରାଜାଙ୍କର ନିଜର ବାହୁବଳ ନଥିଲା , କିନ୍ତୁ ସେ ତାଙ୍କର ଦୁର୍ଦ୍ଧାନ୍ତ ଓ ଶକ୍ତିଶାଳୀ ଶ୍ୟାଳକ କୀଚକକୁ ସେନାପତି ପଦରେ ନିଯୁକ୍ତ କରି ତାର ପରାକ୍ରମରେ ରାଜ ଐଶ୍ୱର୍ଯ୍ୟ ପ୍ରାପ୍ତ ହୋଇଥିଲେ। ତେଣୁ କେହି ଅଯୋଗ୍ୟ ତଥା ନିଷ୍କର୍ମା ବ୍ୟକ୍ତି ଅନ୍ୟର ପରାକ୍ରମ ଯୋଗୁଁ ଯଶ, ସମ୍ପଦ ପ୍ରାପ୍ତ ହେଲେ ଏହି ପ୍ରବାଦଟି ସେ କ୍ଷେତ୍ରରେ ପ୍ରୟୋଗ କରାଯାଏ ।

ପ୍ରଧାନମନ୍ତ୍ରୀ ଚାଣକ୍ୟଙ୍କ ବିଚକ୍ଷଣତା ଓ ତୀକ୍ଷ୍ଣ ବୁଦ୍ଧି ଏବଂ ତାଙ୍କ ପ୍ରଣୀତ ନ୍ୟାୟଶାସ୍ତ୍ର, ରାଜ୍ୟଶାସନ୍ ବିଧି , ଅର୍ଥନୀତି , ଉପଦେଶାତ୍ମକ ପ୍ରବଚନ ଅପାଣ୍ଡକ ନନ୍ଦବଂଶକୁ ଧ୍ୱଂସ କରି ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କୁ ଭାରତର ଏକଛତ୍ରପତି ସମ୍ରାଟ ପଦରେ ଅଭିଷିକ୍ତ କରାଇଥିଲା ଏବଂ ସାମ୍ରାଜ୍ୟ ସ୍ଥାପନ କରାଇଥିଲା ।

ସେହିପରି ମା' ସାରଳାଙ୍କ ଆଜ୍ଞା ଓ ଅପାର ଆଶୀର୍ବାଦରୁ ଏ ଅକିଞ୍ଚନ 'ରତ୍ନଭଣ୍ଡାର ରସସାଗର' ଗ୍ରନ୍ଥଭଳି ଏକ ଦୁରୁହ ସଂକଳନ କାର୍ଯ୍ୟ ସଂପାଦନ କରିବାକୁ ସମର୍ଥ ହୋଇଛି । ତେଣୁ ଆଦ୍ୟରେ ତାଙ୍କରି ନାମକୁ ସ୍ମରଣ କରି ଏହି ଗ୍ରନ୍ଥଟିର ନାମକରଣ କରାଯାଇଛି 'ସାରଳା ରତ୍ନଭଣ୍ଡାର ରସସାଗର' । ସେଇ କରୁଣାମୟୀଙ୍କ କରୁଣାର କୈବଲ୍ୟ ଲାଭକରି ମୋ ପରି ପଙ୍ଗୁ ଗିରି ଲଂଘିବାକୁ ସାହସ କରିଛି । ମୋ ପରି ମୂକକୁ ବାଚାଳ କରାଇଛି । ଏହି ପରିପ୍ରେକ୍ଷୀରେ ମୋର ଅନ୍ତରର ଉଦ୍‌ଗତ ଭାବୋଚ୍ଛ୍ୱାସକୁ ବିଦଗ୍ଧ ପାଠକମାନଙ୍କ ପାଇଁ ଉପସ୍ଥାପନା କଲି:-

ମୁହିଁତ ମୁରୁଖ ଏକେ ତ ବାଳୁଙ୍ଗା
ବୁଦ୍ଧି ସୁଧି କିଛି ନାହିଁ
ତୋହରି କୃପାରୁ ପାଉ ଥାଏ ଧନ
ଜାଣେ ନାହିଁ କିସ ପାଇଁ ।
ନାହିଁ ମୋ ଶକତି କି କରିବି ଇଚ୍ଛି
ଦର୍ଶାଇ ଦେ ଲୋ ମା'
ତୋ ଆଦେଶ ଆଜ୍ଞା ପାଳନ କରିବି
ପ୍ରକଟାଇ ତୋ' ମହିମା ।

'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ 'ପ୍ରଣେତା, ଓଡ଼ିଆ ପ୍ରବାଦର ପ୍ରବାଦ ପୁରୁଷ, ଢଗ ସମ୍ରାଟ ,ପ୍ରଖ୍ୟାତ ଆଇନଜୀବୀ ୰ଗୋପାଳଚନ୍ଦ୍ର ପ୍ରହରାଜ ତାଙ୍କ ପ୍ରଣୀତ ' ଓଡ଼ିଆ ଲୌକିକ ପଦ ବା ଢଗଢମାଳି ବଚନ' ର ପ୍ରଥମ ଭାଗର ଅବତରଣିକା ତା ୧-୧-୧୯୨୬ ରେ ସ୍ୱୀକାର କରିଛନ୍ତି ଯେ ଲୋକମୁଖରେ ପ୍ରଚଳିତ ବଚନ ଓ ପ୍ରୟୋଗମାନଙ୍କୁ ସଞ୍ଚୟ କରି ରଖିଯିବା ଲାଗି ତାଙ୍କର ବହୁକାଳର ବାସନା ଥିଲା । ଏହାର ସୂଚନା ସେ ୧୯୦୬ ମସିହାରେ 'ବାଇ ମହାନ୍ତି ପାଞ୍ଜି' ରେ ପ୍ରକାଶ କରିଥିଲେ ଏବଂ ତତ୍‌ପରେ 'ଉତ୍କଳ ସାହିତ୍ୟ' ପତ୍ରିକାର 'ଦୁନିଆ ହାଲଚାଲ' ରେ ମଧ୍ୟ ଉଲ୍ଲେଖ କରିଥିଲେ।

ଢଗ ସମ୍ରାଟ ପ୍ରହରାଜଙ୍କ ମତରେ ' ଲୌକିକ ପଦମାନ ଯେଉଁ ଆକାରରେ ଲୋକମୁଖରେ ଶୁଣାଯାଏ ଓ ବୋଲାଯାଏ ,ସେଗୁଡ଼ିକ ସେହି ଆକାରରେ ଉଦ୍ଧାର କରିବା ସଂଗ୍ରାହକଙ୍କର କର୍ତ୍ତବ୍ୟ '

ମା' ସାରଳାଙ୍କ ମାର୍ଗ ନିର୍ଦ୍ଦେଶ ଏବଂ ଢଗ ସମ୍ରାଟଙ୍କ ଏହି ମୂଲ୍ୟବାନ ପରାମର୍ଶ ସଙ୍କଳୟିତାଙ୍କୁ ଉଦ୍‌ବୁଦ୍ଧ ଓ ଅନୁପ୍ରାଣିତ କରିଛି ।

ଭକ୍ତକବି ଦୀନକୃଷ୍ଣ ଦାସଙ୍କ କୃତ ' ଆର୍ତ୍ତତ୍ରାଣ ଚଉତିଶା'ରୁ ପଦଟିଏ ଉଦ୍ଧାର କଲି :-

ଢମାଳି ପ୍ରାୟ ମୋ ଉତ୍ତର ।
ଢାଳେ (=ଟିକିଏ ମାତ୍ର)ନ ମଣ ଚକ୍ରଧର ।

ଏଥିରୁ ଓଡ଼ିଆ 'ଢମାଳି' ଶବ୍ଦର ସଂଜ୍ଞା ସୂଚିତ ହୋଇଛି । 'ଢଗ' ଟିଏ ବୋଲାଗଲେ ତାର ଉତ୍ତରରେ 'ଢମାଳି 'ଟିଏ ବୋଲାଯାଉଥିଲା । କାରଣ 'କଥାର ଲଥା' ଯେପରି ପ୍ରସଂଗଟିକୁ ଆହୁରି ଆକର୍ଷଣୀୟ ରସାଳ ଉପଭୋଗ୍ୟତାର ମାନ ବୃଦ୍ଧି କରାଇଥାଏ, ସେହିପରି ଢମାଳି ଢଗର ରସିକତାକୁ ସ୍ଥଳ ବିଶେଷରେ ଆହୁରି ରସାଳ କରାଇଥାଏ.। ଢଗ ଢମାଳି ର ପାର୍ଥକ୍ୟ ପରିଲକ୍ଷିତ ହୋଇଥାଏ । ଢଗ ଠାରୁ ଢମାଳି ଆକାର ବଡ଼ । ସାଧାରଣତଃ ଢଗର ଉତ୍ତରରେ ଢମାଳି କୁହାଯାଏ । ଉଲ୍ଲିଖିତ ପଦଟି ଏପରି ସିଦ୍ଧାନ୍ତରେ ଉପନୀତ ହେବାର ନଜିର ନୁହେଁ । ଢଗର ଆକାର ବଡ଼ ହେଲେ ଯେ ତାହା ସର୍ବଦା ଢମାଳିରେ ପରିଣତ ହେବ କିମ୍ବା ବିବେଚିତ ହେବ ,ଏପରି ଅନୁମାନ କରିବା ଠିକ୍ ନୁହେଁ ।

ବିଜ୍ଞାପନ ଜରିଆରେ ସାଧାରଣତଃ ଯେପରି ବିଷୟ ଓ ବସ୍ତୁର ପ୍ରଚାର କରାଯାଇଥାଏ ,ସେହିପରି ଆଜକୁ ୭୫ ବର୍ଷ ପୂର୍ବେ ଢଗଢମାଳିର ପ୍ରଚାର ଓ ପ୍ରସାର ବିଜ୍ଞାପନ ମାଧ୍ୟମରେ ହେଉଥିବାର ପ୍ରଣୀତ 'ଢଗ ଢମାଳି' ପୁସ୍ତିକାଟି ୧୯୨୬ ମସିହାରେ

ପ୍ରକାଶିତ ହୋଇଥିଲା । ଯାହାରକି ମୂଲ୍ୟ ଥିଲା ମାତ୍ର ଚାରି ପଇସା । ଏହି ପୁସ୍ତିକାଟିର ଆଦ୍ୟରେ ଢଗଢମାଳିରେ ଯେଉଁ ବିଜ୍ଞାପନଟି ମୁଦ୍ରିତ ହୋଇଥିଲା , ତାହା ହେଲା -

ଢଗ ପଢିଥିଲେ ଢମାଳି ଶୁଣ
ଚାରୋଟି ପଇସା ଦେଇଣ କିଣ ।

ଚଷାଭାଇ ହଳକଲାବେଳେ ,ଡେଣ୍ଡାରୁ ପାଣି କାଢିଲାବେଳେ , ଶଗଡ଼ିଆ ଭାଇ ଶଗଡ଼ ଚଳାଇଲାବେଳେ , କେଉଟଭାଇ ମାଛ ଧରିଲାବେଳେ ,ନାଉରୀଭାଇ ଡ଼ଙ୍ଗାରେ ଲୋକଙ୍କୁ ପାରି କଲାବେଳେ ,କୁମ୍ଭାର ହାଣ୍ଡି ଗଢିଲାବେଳେ ,କମାରଭାଇ ତାତିଲା ଲୁହା ପିଟିଲାବେଳେ,ଧୋବାଭାଇ ଓ ଧୋବଣୀ ନଈ ବା ପୋଖରୀ ତୁଠରେ ବସି ଲୁଗା କାଚିବାବେଳେ ,ଶ୍ରମଜନିତ ଶାରୀରିକ କଷ୍ଟ ଲାଘବ କରିବା ପାଇଁ ,ପୁଣି ଗଉଡୁଣୀ ଦୁଧ ଦହି ବୁଲେଇ ବିକିଲାବେଳେ ,ସାପୁଆକେଳା ସାପଖେଳ ପ୍ରଦର୍ଶନ କଲାବେଳେ ,କେଳୁଣୀ ମାଇପିଙ୍କ ଅଙ୍ଗରେ ଚିତା କୁଟିଲାବେଳେ ,ଝିଅବୋହୂ ଦୋଳି ଖେଳିଲାବେଳେ, ବିବାହ ବାସରେ ଝିଅ ବିଦାହେଲାବେଳେ ,ନାନା ଓଷା ବ୍ରତ, ପୁନିଅ ପର୍ବମାନଙ୍କରେ ଚିତ୍ତ ବିନୋଦନ ପାଇଁ ମନଫୁଲାଣିଆ ଢଗଢମାଳି ପୂର୍ବେ ସର୍ବତ୍ର ଓ ସମସ୍ତଙ୍କ ମୁଖରେ ଗୀତ ହେଉଥିଲା। ଢଗଢମାଳି ପର୍ଯ୍ୟାପ୍ତ ପରିମାଣରେ ବ୍ୟବହାର ହେଉଥିବାରୁ ଶ୍ରୀକୃଷ୍ଣ ଓ ଗୋପୀମାନଙ୍କ ଉପାଖ୍ୟାନ ମଧ୍ୟ ଢଗଢମାଳି ରୂପରେଖ ବହନ କରିଥିଲା । କାରଣ ଢଗଢମାଳି ରସିକତାର ଏକ ଅଙ୍ଗ ଏବଂ କୃଷ୍ଣ ରସିକିଆ ତଥା ରସିକ ଶେଖର ଥିବାରୁ ଢମାଳି ରଚୟିତାଗଣ ଭଗବାନ ଶ୍ରୀକୃଷ୍ଣଙ୍କୁ ମଧ୍ୟ ଢମାଳି ପରିସର ମଧ୍ୟରେ ଭର୍ତ୍ତି କରିଦେଇଛନ୍ତି । ଯେପରି-

ଢଗ ଢମାଳିଆ ନାଗର କହ୍ନାଇ
ଢମାଳି ଗୀତଙ୍କୁ ଗୁପୀ(=ଗୋପୀ) ମାନେ ବାଇ;
ଅତି ଢମାଳିଆ ଶ୍ରୀକୃଷ୍ଣ
ରାଧିକା ସଙ୍ଗେ ବାଇ ।

ଢଗଢମାଳି,ପ୍ରବାଦ ମଧ୍ୟରେ ନିହିତ ଛଇଳ -ଛଇ-ଛଟକ-ଛଟା-ତାନମାନର ମନୋରଞ୍ଜକ ବ୍ୟଞ୍ଜନ ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ସମାଜର ଆବାଳ ବୃଦ୍ଧ ବନିତାଙ୍କୁ ଉଦ୍‌ଫୁଲ୍ଲିତ ଓ ଉଚ୍ଚାଟ କରୁଥିଲା । କାଳକାଳଧରି ଲୋକମୁଖରେ ପ୍ରଚଳିତ ସେଇ ମନୋଜ୍ଞ ଓ ରସୋତ୍ତୀର୍ଣ୍ଣ ବାଣୀଗୁଡ଼ିକୁ ପାଠକଙ୍କ ନିକଟରେ ପରିବେଷଣ କଲାବେଳେ ଗାଇବାକୁ ଇଚ୍ଛାହୁଏ :-

ଏଇ ରାଇଜର କଥା  ସଂଗାତଲୋ
ଏଇ ରାଇଜର କଥା
ଆଜିବି ଗାଇବି ଏଇ ସମାଜରେ
କଥା ସଙ୍ଗେ ଥିବ ଲଥା ।

× × × ×

କଥାଏ କହିବି ମୁହିଁ,
କଥା ଶୁଣିଲେ ତୋ ବଥା ଚାଲିଯିବ
ପରାଣକୁ ଯିବ ଛୁଇଁ ।
ଏମତି ହୁନ୍ଦର କଥା
କଥା ସଙ୍ଗେ ପୁଣି ଲଥା ଯୋଡ଼ିଥିବି
ଆକାଶେ ଲାଗିବ ମଥା ।

ଆଧୁନିକ ଯୁଗର ସିନେମା,ଥିଏଟର ,ଯାତ୍ରା,ରେଡ଼ିଓ ,ଭିଡ଼ିଓ ଓ ଦୂରଦର୍ଶନ ପ୍ରଭୃତି ମନୋରଞ୍ଜକ ଉପକରଣ ପୂର୍ବେ ନଥିଲା । ଢଗଢମାଳି ମଧ୍ୟରେ ପ୍ରଭୂତ ପରିମାଣରେ ଆମୋଦପ୍ରଦ ଗୁଣ ନିହିତ ଥିବାରୁ , ସଚରାଚର ଏଗୁଡ଼ିକ ବ୍ୟବହୃତ ହେଉଥିଲା ଓ ସର୍ବତ୍ର ପ୍ରଚଳିତ ଥିଲା । ଅଧିକନ୍ତୁ ଏଥିପାଇଁ ଆର୍ଥିକ ତାଡ଼ନା ନଥିବାରୁ ଏହାକୁ ଲୋକେ ସ୍ୱଚ୍ଛନ୍ଦରେ ନିଜ ନିଜ ମଧ୍ୟରେ ବୋଲାବୋଲି ହୋଇ ଚିତ୍ତବିନୋଦନ କରୁଥିଲେ । ଢଗଢମାଳିରେ ଆସକ୍ତ ଓ ନିଶାଗ୍ରସ୍ତ ହୋଇ ଲୋକମାନେ ନିଜ ନିଜର କାମଧନ୍ଦା ଛାଡ଼ି ଦିନରାତି ସବୁବେଳେ ଆନନ୍ଦ ଉପଭୋଗରେ ମାତି ରହିବା ଉଚିତ୍ ନୁହେଁ । ତେଣୁ ଲୋକଙ୍କୁ ସକାଳୁ ସକାଳୁ କାମଧନ୍ଦା ଛାଡ଼ି ଢଗଢମାଳି ବୋଲିବାକୁ ବାରଣ  କରାଯାଇଥିଲା । ନିମ୍ନୋକ୍ତ ଢମାଳିରୁ ସାମାଜିକ ଅଙ୍କୁଶର ନିଦର୍ଶନ ମିଳିଥାଏ :-

ଢମାଳି  ନ ଗାଇ ସକାଳେ
ଲାଗିଯାଅ କାମରେ
ଢମ ଦେଖାଇଲେ କେହିକି
ବଡ଼ ହୁଏ ଲୋକରେ ?

ଢଗଢମାଳି ଯେ ହାସ୍ୟରସରେ ପରିପୂର୍ଣ୍ଣ ,ତାହା ଅତିବଡ଼ୀ ଜଗନ୍ନାଥ ଦାସଙ୍କ ରଚିତ ଭାଗବତର ନିମ୍ନଲିଖିତ ପଦରୁ ପରିସ୍ଫୁଟ ।

''ଅନ୍ତୁଡ଼ି ଶାଳେ ଯାଇ ମିଳି
ହାସ୍ୟକେ କରନ୍ତି ଢମାଳି ।''

ପୁଣି ଢଗଢମାଳି ଯେ କେତେକ ଢମାଳିଆ ଏବଂ ବାହାପିଆ ଲୋକଙ୍କର ହାସ୍ୟରସର ବିଷୟବସ୍ତୁ ତାହା ନୁହେଁ ; ତାହା ଲୋକଙ୍କ ପ୍ରକୃତି ,ଚାଲିଚଳନ ଏବଂ ସମାଜକୁ କେତେବେଳେ ନିନ୍ଦା କରିଛି ତ, କେତେବେଳେ ବ୍ୟଙ୍ଗ ମଧ କରିଛି ; କେତେବେଳେ ଚେତାବନୀ ·ଦେବାକୁ ପଛେଇ ନାହିଁ। ଏହାର ସୂଚନା ଆମ୍ଭେମାନେ 'ଦନାଇବଚନ' ର ନିମ୍ନଲିଖିତ ପଦରୁ ପାଇଥାଉଁ :-

''ଢୋଲ ହୋଇ ଯେବେ ନଥାଏ ସ୍ୱର
ସର (=ପୋଖରୀ) ହୋଇ ଯେବେ ନଥାଏ ନୀର ।
ଢମାଳିଆ ନାମ ଅଟେ ସେ ପୁର
କହେ ଦନାଇ ଏକଥା ନିକର ।''

କାଳର କରାଳ ଗ୍ରାସରେ ଓଡ଼ିଶାର ସ୍ଥାପତ୍ୟ ଓ ଭାସ୍କର୍ଯ୍ୟର ଅବକ୍ଷୟ ଘଟୁଥିଲେ ବି ତାହା ଏଯାବତ୍ ତିଷ୍ଠି ରହିଛି ଏବଂ କାଳକାଳକୁ ବଞ୍ଚି ରହିବ ମଧ । କିନ୍ତୁ ଲୁପ୍ତପ୍ରାୟ ସଂସ୍କୃତି ଓ ସାରସ୍ୱତ ସମ୍ପଦର ପୁନରୁଦ୍ଧାର ନ ହେଲେ ତାହା ସମାଜ ଓ ଜନମାନସରୁ ଅନ୍ତର୍ହିତ ହୋଇଯିବ । ଓଡ଼ିଆ ସାହିତ୍ୟର ଐତିହ୍ୟ କାଳକାଳକୁ କିପରି ଓଡ଼ିଶାର ଏକ କାଳଜୟୀ କୃତି ଓ ବିଭୂତି ଭାବେ ତିଷ୍ଠି ପାରିବ ,ସେଥିପ୍ରତି ସାହିତ୍ୟାନୁରାଗୀ ପାଠକ ପାଠିକା , ସାରସ୍ୱତସାଧକ ,ଗବେଷକ ,ଅଧ୍ୟାପକ ,ସର୍ବୋପରି ଯୁବ ସମାଜ ସଜାଗ ହେଲେ ଯାଇ ସାହିତ୍ୟର ଗୌରବୋଜ୍ଜ୍ୱଳ ଅତୀତ ଜନମାନସରେ ଉଜ୍ଜୀବିତ ରହି ପାରିବ ।

ଢଗ ଢମାଳି ,ପ୍ରବାଦର ସଙ୍କଳନ କାର୍ଯ୍ୟରେ ମୁଁ ଏପରି ଭାବରେ ନିମଜ୍ଜିତ ହୋଇପଡ଼ିଲି ଯେ , ଘର ସଂସାର କଥା ଭୁଲିଗଲି । ମୋର ଅର୍ଥାଗମର ଏକମାତ୍ର ପନ୍ଥା ଓକିଲାତି ବୃତ୍ତି ବ୍ୟାହତ ହୋଇ ପଡ଼ିଲା । ଏସବୁ ମୋର ପାଗଳାମି ବୋଲି ଅନେକ ଉପହାସ କଲେ । ସହବୃତ୍ତିଗତ ପ୍ରତିଦ୍ୱନ୍ଦୀମାନଙ୍କ ମଧରେ ଉତ୍କଣ୍ଠାର ଆଭିମୁଖ୍ୟ ପ୍ରକାଶ ପାଇଲା । ଏପରିକି ପରିବାରର ଲୋକେ ମଧ ଭ୍ରୂକୁଞ୍ଚନ କରିବାକୁ ପଛେଇଲେ ନାହିଁ। ମୋର ଏତାଦୃଶ ଅପକର୍ଷଣ ପାଇଁ ସହଯୋଗୀ ,ବନ୍ଧୁବାନ୍ଧବମାନଙ୍କର ନୀରବ ବିଦ୍ରୁପର ଶିକାର ହେଲି । ଏ ସମସ୍ତ ଉତ୍ପୀଡ଼ନ ମନକୁ ମୋର ଅତର୍କିତ ଭାବେ ଆନ୍ଦୋଳିତ ଏବଂ ବିଚଳିତ କଲା । ଏତିକିବେଳେ ଶୂନ୍ୟବାଣୀ ପ୍ରାୟ ମୋ କର୍ଣ୍ଣରେ ନିନାଦିତ ହୋଇଉଠିଲା ମହାପୁରୁଷ ଅତିବଡ଼ୀ ଜଗନ୍ନାଥଦାସଙ୍କ ଭାଗବତ ବାଣୀ--

''ନାହିଁ ମୋ ମାନ ଅପମାନ । ପୁତ୍ର କଳତ୍ର ଗୃହ ଧନ ।
ଆତ୍ମାକୁ ରମଇଁ ମୁଁ ନିତ୍ୟେ । ନିଶ୍ଚିନ୍ତେ ଭ୍ରମଇ ଜଗତେ ।''

ମନରେ ଏକ ଅଭିନବ ଅଲୌକିକ ଚେତନା ଜାଗ୍ରତ କଲା । ମୁଁ ନିଶ୍ଚିନ୍ତ ହେଲି । ସାଂସାରିକ ପ୍ରତିକୂଳ ପ୍ରତିକ୍ରିୟା ,ଉପେକ୍ଷିତ ମନ୍ତବ୍ୟ ଓ ଉପହାସ ମୋତେ ବିଚଳିତ କିମ୍ବା ସଂକଳ୍ପଚ୍ୟୁତ କରିପାରିଲା ନାହିଁ । ଏହାଯେ, ମା' ସାରଳାଙ୍କର ଅଜ୍ଞାତ ଅଯାଚିତ ଅନୁକମ୍ପା ,ମୁଁ ବୁଝିପାରିଲି । କାରଣ ମୁଁ ଅତ୍ୟନ୍ତ ଦରିଦ୍ର ଓ ଅସହାୟ ଥିଲି । ତାଙ୍କର କୃପା ଓ କରୁଣା ବିନା ଏହି ଦାରିଦ୍ର୍ୟ ମଧ୍ୟରେ ଏପରି ଜ୍ଞାନୋଦୟ ଏକ ବିଡ଼ମ୍ବନା ଥିଲା । ଏହି ଚେତନାରୁ ନିମ୍ନୋକ୍ତ ପ୍ରଶ୍ନବାଚୀ ଢଗଟି ମନରେ ଉଦୟ ହୋଇ ମୋର ମାନସିକତାକୁ ସଙ୍କଳନ କାର୍ଯ୍ୟରେ ସର୍ବୋତଭାବେ ନିୟୋଜିତ କରିବା ପାଇଁ ସୁଦୃଢ କରାଇଲା ।

''ବାରଶ ବଢେଇର ଦାୟ
ନାଁ ପୁଅରେ ଦାୟ ?''

ଏଇ ପ୍ରବାଦମୂଳକ ପ୍ରଶ୍ନ କୋଣାର୍କ ମନ୍ଦିର ନିର୍ମାଣକାରୀ ବାରଶହ ଓଡ଼ିଆ ବଢେଇଙ୍କ ମଧ୍ୟରୁ ଜଣକ ମନରେ ଉଦ୍ରେକ ହୋଇଥିଲା । କେବଳ ମୋ ପାଇଁ ନୁହେଁ - ଏଇ ପ୍ରଶ୍ନଟି ସମସ୍ତଙ୍କ ପାଇଁ । କଥାଟି ହେଉଛି --

ଆଜକୁ ୭୬୦ ବର୍ଷତଳେ ଲାଙ୍ଗୁଡ଼ା ନରସିଂହଦେବଙ୍କ ରାଜତ୍ୱକାଳରେ କାରୁକାର୍ଯ୍ୟପୂର୍ଣ୍ଣ ବିଶ୍ୱବିଖ୍ୟାତ ବିଶାଳ କୋଣାର୍କ ମନ୍ଦିର ନିର୍ମାଣ ପାଇଁ ରାଜକୋଷରୁ ପ୍ରାୟ ଚାଳିଶ କୋଟି ଟଙ୍କା ବ୍ୟୟ ହୋଇଥିଲା । ବାରଶହ ବଢେଇ ଷୋଳବର୍ଷକାଳ ନିର୍ମାଣ କରିଥିଲେ । ନିର୍ମାଣ କାର୍ଯ୍ୟ ସମ୍ପୂର୍ଣ୍ଣ ହେବାପାଇଁ ଦିନଧାର୍ଯ୍ୟ ହୋଇଥିଲା । ସର୍ତ୍ତଥିଲା ସମୟ ମଧ୍ୟରେ କାମ ଶେଷ ନହେଲେ ବାରଶହ ବଢେଇଙ୍କର ମୁଣ୍ଡକାଟ ହେବ । ମନ୍ଦିର ସମ୍ପୂର୍ଣ୍ଣ ହେଲା , ହେଲେ ଦଧିନଉତି ଶତଚେଷ୍ଟାକରି ମଧ୍ୟ ମରାଯାଇ ପାରିଲା ନାହିଁ । ଏହି ସମୟରେ ବିଶୁମହାରଣାର ଏକମାତ୍ର ୧୬ ବର୍ଷର ପୁଅ ଧର୍ମପଦ (ଡ଼ାକ ନାଁ- ଧରମା) ବାପକୁ ଦେଖିବ ବୋଲି, ମା' ସହିତ ଜିଗର କରି ,ଗାଁରୁ ଆସି ବେଳ ରତ ରତ ବେଳେ ପହଞ୍ଚିଲା । ତା ପରଦିନ ସକାଳ ସୁଦ୍ଧା ମନ୍ଦିର ନସରିଲେ ବାରଶହ ବଢେଇଙ୍କର ମୁଣ୍ଡକାଟ ହେବା କଥା ଶୁଣିଲା । ଦଧିନଉତି ନିଶ୍ଚିତ ଭାବରେ ସେ ନିଜେ ବସେଇ ପାରିବ ବୋଲି କହିଲା । ମାତ୍ର ଏଥିରେ ରାଜାଙ୍କର ସର୍ତ୍ତ ଖିଲାପ ହେଲା । ପ୍ରଥମତଃ -ବାରଶହ ବଢେଇଙ୍କ ସହିତ ଅଧିକ ଜଣେ ମିଶି କାର୍ଯ୍ୟ କରିବା ଓ ରାଜାଙ୍କର ହୁକୁମର ବିରୁଦ୍ଧାଚରଣ କରିବା । ଦ୍ୱିତୀୟତଃ ଅନ୍ୟ ଉପାୟ ପାଇଁ ସମୟର ଅଭାବ । ପରଦିନ ସକାଳ ସୁଦ୍ଧା ମନ୍ଦିରର ମୁଣ୍ଡି ମରିବ , ନହେଲେ 'ମୁଣ୍ଡ କାଟ' । ନିଷ୍ପତ୍ତି ହେଲା ସମସ୍ତଙ୍କର ଅଗୋଚରରେ ଧର୍ମପଦ ରାତାରାତ ମନ୍ଦିର ଚୁଳିମାରି ମନ୍ଦିର ଶିଖରରୁ ସମୁଦ୍ରକୁ ଲମ୍ଫ ପ୍ରଦାନ କରି ତାର ଜୀବନକୁ ବାରଶହ ବଢେଇଙ୍କ ପାଇଁ ଉତ୍ସର୍ଗ କରିବ । ବିଶୁମହାରଣା ମନେ ମନେ 'ଜାତି ସ୍ୱାର୍ଥ' କୁ

'ନିଜ ସ୍ୱାର୍ଥ' ସହିତ ତଉଲିଲା । ନିଜ ସ୍ୱାର୍ଥଠାରୁ ଜାତି ସ୍ୱାର୍ଥ ବଡ଼ ବୋଲି ସେ ହୃଦୟଙ୍ଗମ କଲା । ତେଣୁ ବାରଶହ ବଢେଇଙ୍କର ଜୀବନ ରକ୍ଷା ପାଇଁ ନିଜର ଏକମାତ୍ର ପୁତ୍ରକୁ ବଳିଦେଲା । ଓଡ଼ିଆ ଜାତିର କୀର୍ତ୍ତିସ୍ତମ୍ଭ କୋଣାର୍କ ମନ୍ଦିରପରି ,ବିଶୁମହାରଣା ଓ ଧର୍ମପଦର ଜାତି ପ୍ରୀତି କାଳକାଳକୁ ପ୍ରବାଦ ମାଧ୍ୟମରେ ବହୁଲୋକଙ୍କୁ ପ୍ରେରଣା ଯୋଗାଉଛି । ଅନ୍ୟ ପକ୍ଷରେ ଯେଉଁମାନେ ନିଜ ନିଜ ଚିନ୍ତାରେ ଜୀବନ ବିତାନ୍ତି ,ସେମାନେ ହୁଅନ୍ତି ଜଣେ ଜଣେ ସ୍ୱାର୍ଥପର ସଂସାରୀ ।

ବୃତ୍ତି ଓ ତହିଁରୁ ଉଦ୍‌ଭୂତ ଉପାର୍ଜନ ଉଭୟେ ଏକ ତତ୍‌କାଳ ବସ୍ତୁ । ଏହାର ଉପଡ଼ଙ୍ଗର କ୍ଷଣସ୍ଥାୟୀ ଓ ସ୍ୱ-ଭୋଗ୍ୟ । ମାତ୍ର ସାହିତ୍ୟର ପ୍ରତିଷ୍ଠା ଓ ସମ୍ମାନ ଯୁଗ ଯୁଗ ବ୍ୟାପି ଓ ଜାତି ଭୋଗ୍ୟ । ତେଣୁ ବୃତ୍ତି ଓ ଉପାର୍ଜନ ପଛରେ ଧଇଁ ସଇଁ ହୋଇ ଧାଇଁ କ୍ଷଣିକ କୃତୀ ଓ ଉନ୍ମାଦନା ଲାଭକରିବା ଯାହା , ମଦନିଶାରେ ରଙ୍କ ନିଜକୁ ରାଜା ଭାବିବା ସେଇୟା । ବୃତ୍ତି ଓ ଉପାର୍ଜନ ଯଦି ଅନ୍ତତଃ ଚିର ସ୍ୱଭୋଗ୍ୟ ନ ହେଲା , ତାହାହେଲେ ପରିଣତ ବୟସରେ ନିଃସହାୟ ହୋଇ ସାରସ୍ୱତ ସାଧନାରେ ନିମଜ୍ଜିତ ହେବା କି ? ପୁଣି ପ୍ରାଚୀନ ସାହିତ୍ୟ ପାଇଁ ମୋର ଏପରି ଆଗ୍ରହ ବା କାହିଁକି ? ଏ ସବୁ ପ୍ରଶ୍ନ ମୋ ମାନସପଟରେ ସ୍ୱତଃ ଉଦିତ ହେଲା । ମା' ସାରଳାଙ୍କର ଦିବ୍ୟ ଶକ୍ତିର ସ୍ପର୍ଶରେ ସବୁ କିଛି ସମାଧାନ ହୋଇଗଲା । ମୋ ହୃଦୟ ,ମନ ଓ ଶରୀର ଉଲ୍ଲସିତ ହେଲା । ସେଠୁଁ ମୁଁ ଜାଣିଲି ଯେ ମୋର ଏହି ଜାଗ୍ରତ ପ୍ରବୃତ୍ତିଟି ଗୋଟିଏ ମାତ୍ର ଆଦର୍ଶରେ ବିଧୃତ । ସେଇ ଆଦର୍ଶଟି ହେଉଛି ପ୍ରାଚୀନ ଐତିହ୍ୟଠାରୁ ବିଚ୍ୟୁତ ହୋଇ କୌଣସି ସଂସ୍କୃତିର ଅଗ୍ରଗତି ସମ୍ଭବପର ନୁହେଁ । ମୋର ଦୃଢ ବିଶ୍ୱାସ ଯେ ଅତୀତର ବୁନିଆଦି ଉପରେ ଜାତିର ଭବିଷ୍ୟତ ଗଢିଉଠେ । ପୁଣି ଅତୀତର ରସ ସିଞ୍ଚିତ ନହେଲେ ଜାତୀୟ ଜୀବନର ଅଭିବୃଦ୍ଧି ଘଟେ ନାହିଁ । ସେପରି ଜୀବନ ମାତୃସ୍ତନ୍ୟରୁ ବଞ୍ଚିତ ଶିଶୁପରି ।

ଯେଉଁ ଆଦର୍ଶର କଥା ଅତି ସହଜ ଓ ସରଳ ଭାବରେ କୁହାଗଲା , ସେଇ ପଥରେ ବିଚରଣ କରିବା ସେତେ ସହଜସାଧ୍ୟ ନୁହେଁ । ଅନେକ କ୍ଷେତ୍ରରେ ପୁରୁଣା ପୋଥି , ଲେଖା , କଥା ଲୁପ୍ତ । କ୍ଷେତ୍ର ବିଶେଷରେ ଲୁପ୍ତ ନହେଲେ ବି ଦୁର୍ଲଭ । ସେଇ ପୋଥି,ଲେଖାମାନ ସଂଗ୍ରହ କରିବା ,ଲୋକ ସ୍ମୃତି ଓ ଲୋକମୁଖରୁ କଥାସବୁ ସଂଗ୍ରହ କରିବା ; ପୁଣି ସେସବୁର ଅନୁଲିପି ପ୍ରସ୍ତୁତ କରି ତାକୁ ମୁଦ୍ରଣ କରିବା ସହଜସାଧ୍ୟ ନୁହେଁ । ଅବଶ୍ୟ ଏସବୁ ନେପଥ୍ୟକାହାଣୀ ପାଠକ ସମାଜର ଏସବୁ ଜାଣିବା କଥାକି ନୁହେଁ ,ତାହା ମୁଁ ଜାଣେ ନାହିଁ । ତଥାପି ସେମାନେ ଜିଜ୍ଞାସୁ -ଉଲ୍ଲିଖିତ ଆଦର୍ଶକୁ ରୂପାୟନ କରିବାରେ ଆମ୍ଭେ କେତେଦୂର ସାଫଲ୍ୟ ଅର୍ଜନ କରିଛୁ ।

ପ୍ରାଚୀନ ସାହିତ୍ୟ କ୍ଷେତ୍ରରେ ମୁଁ ଅତି ଅର୍ବାଚୀନ ତଥାପି ଆଗ୍ରହର ସହିତ ସମସ୍ତ ବୃତ୍ତିଗତ ବୈଭବକୁ ଜଳାଞ୍ଜଳି ଦେଇ ସେଇ ସାଧନାରେ ବ୍ରତୀ ହୋଇଛି । ଏତେ ରତ୍ନ , ଏତେ ରସ ଯାଭିତରେ ଯେ ପୂରିରହିଛି , ମୋ ପରି ଅଜ୍ଞ ଓ ଅବୋଧର ଅଗୋଚର ଥିଲା । ରତ୍ନଭଣ୍ଡାର ଅନ୍ୱେଷଣରେ ରସସାଗରକୁ ଯାଇ ମହାସାଗରରେ ଝାସ ଦେଲି । ମହାସାଗରର ମହାନନ୍ଦ ର ଢେଉରେ ସବୁ ଯେପରି ବିଲୀନ ହୋଇଗଲା ।

ଓଡ଼ିଆ ଜାତିର କର୍ଣ୍ଣଧାର ଯୋଗଜନ୍ମା ଆଇନଜୀବୀ ମଧୁସୂଦନ ଦାସ (ମଧୁ ବାରିଷ୍ଟର) ,ଓଡ଼ିଆ ଜାତିର ମଉଡ଼ମଣି ଆଇନଜୀବୀ (ମୟୂରଭଞ୍ଜ ରାଜ୍ୟ ସରକାରଙ୍କ ଓକିଲ) ଉତ୍କଳମଣି ଗୋପବନ୍ଧୁ ଦାସ ,କଟକର ପ୍ରଖ୍ୟାତ ଆଇନଜୀବୀ 'ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ' ପ୍ରଣେତା ଜଗ ସମ୍ରାଟ ଗୋପାଳଚନ୍ଦ୍ର ପ୍ରହରାଜ,ପୁରୀର ଖ୍ୟାତନାମା ଆଇନଜୀବୀ ଓଡ଼ିଆ ଜାତିର ସ୍ମୃତିଲିପି 'ପ୍ରାଚୀନ ଉତ୍କଳର' ରଚୟିତା ଓ ସାରସ୍ୱତ ସେବକ ଜଗବନ୍ଧୁ ସିଂହ ପୁଣି ବିଭିନ୍ନ ପ୍ରଦେଶର କୃତି ଆଇନ ବୃତ୍ତିଜୀବୀମାନେ ସେମାନଙ୍କର ନିଜ ନିଜ ଜାତୀୟ ଭାଷାର (ବଙ୍ଗଳା, ହିନ୍ଦୀ, ତେଲଗୁ,ତାମିଲ,ମଲୟାଲମ୍,ମରାଠୀ,ଗୁଜୁରାଟୀ) ସାହିତ୍ୟ ସହିତ ଯେ କେବଳ ନିୟମିତ ସଂଯୋଗ ରକ୍ଷା କରନ୍ତି ତାହା ନୁହେଁ ,ସେମାନଙ୍କ ମଧ୍ୟରୁ ଅନେକ ସାହିତ୍ୟର ପୁରୋଧା ମଧ । ଏହି ମନିଷୀମାନଙ୍କର ପ୍ରେରଣା ମୋତେ ଉଦ୍‌ବୁଦ୍ଧ କଲା । ବୃତ୍ତି ଓ ସାହିତ୍ୟ ମଧ୍ୟରେ ବ୍ୟବଧାନଟିକୁ ମୁଁ ସହଜରେ ଉପଲବ୍ଧି କରିପାରିଲି ।

ଜଗତ୍ ବିଖ୍ୟାତ୍ ଇଂରାଜୀ ନାଟ୍ୟକାର ଜର୍ଜ ବାର୍ଣ୍ଣାଡ୍ ଶ' ନିଜ ଘରର ଫାଟକରେ ଗୋଟିଏ ପ୍ରବଚନ ଲେଖି ମାରିଦେଇଥିଲେ - ତାହା ହେଉଛି," They say. what say they ? Let them say .ଅର୍ଥାତ୍ " ଲୋକେ କହୁଛନ୍ତି,କ'ଣ ସେମାନେ କହୁଛନ୍ତି ? ଯାହା କହିବେ କହନ୍ତୁ ।" ମୋର ବ୍ୟକ୍ତିଗତ କକ୍ଷଚ୍ୟୁତି ବହୁ ସମାଲୋଚନାର କାରଣ ହେଲେ ମଧ ଏହି ପ୍ରବଚନଟି ଅସୁସ୍ଥ ମନୋବୃତ୍ତିରୁ ମୋତେ ନିବୃତ୍ତ କଲା ।

ଆନନ୍ଦର କଥା ଯେ ଅଧୁନା ପାଠକ ସମାଜର ଦ୍ରୁତ ପରିବର୍ତ୍ତନ ଘଟୁଛି । ସେମାନଙ୍କର ପଠନ ରୁଚି ଫେରିଛି । ଚିନ୍ତନର ମଧ ରୂପାନ୍ତର ହୋଇଛି ।ତେଣୁ ମାଟି କଣ୍ଢେଇ ବା ତାଳପତ୍ରର ସିପେଇ ପରି ଖେଳଣା ଧରେଇସେମାନଙ୍କୁ ଆଉ ଭୁଲେଇ - ଚୁଲେଇ ହେବନାହିଁ । ଆମ୍ଭ ଦ୍ୱାରା ସଙ୍କଳିତ ୧୯୯୬ରେଦୁଇଥର ପ୍ରକାଶିତ ଏହି ଗ୍ରନ୍ଥ ର ୧ମ ଖଣ୍ଡ ଓ ୧୯୯୯ରେ ପ୍ରକାଶିତ ୨ୟ ଖଣ୍ଡ ପାଠକପାଠିକାମାନଙ୍କ ପାଖରେ ବିଶେଷ ଆଦୃତ ହୋଇ ପାରିଛି । ଏଥିରୁ ଶୁଭଦିନର ସଙ୍କେତ ମିଳୁଛି । ଏହିପରି ଯଦି ପାଠକମାନଙ୍କର ରୁଚି ଚାହିଦା ଅବଧାରିତ ହୁଏ, ତାହେଲେ ସମସ୍ତ ପ୍ରାଚୀନ ସାହିତ୍ୟ,

ତାର ସମୀକ୍ଷା ଓ ପ୍ରକାଶନର ମାନ ବିକାଶପଥରେ ଅଗ୍ରସର ହେବ । ପ୍ରାଚୀନ ଓଡ଼ିଆ ସାହିତ୍ୟର ସେବକବୃନ୍ଦ ସେଇ ଶୁଭଦିନର ପ୍ରତୀକ୍ଷାରେ ଯେଉଁ ସୁଧୀବୃନ୍ଦ ସେଇ ପଥର ପଥିକ ,ସେମାନଙ୍କୁ ଆନ୍ତରିକ ଅଭିବାଦନ ଜଣାଇବା । ସେମାନଙ୍କ ପାଇଁ ମା' ସାରଳାଙ୍କର କୃପା ପ୍ରାର୍ଥନା କରୁଛି ।

ଏହି ବୃହଦାକାର ପାଣ୍ଡୁଲିପି ସଂଶୋଧନ,ସମ୍ମାର୍ଜନ ଓ ସଜ୍ଜୀକରଣ ଏକାକି କରିବସିଲେ ତାହା ବର୍ଷବର୍ଷ ଅତିବାହିତ ହେଲେ ମଧ ସରିବ ନାହିଁ । ଏହାଭାବି ସଂଶୋଧନ ,ସମ୍ମାର୍ଜନ ଓ ସଜ୍ଜୀକରଣ କାର୍ଯ୍ୟପାଇଁ କେତେଜଣ ସାହିତ୍ୟ ଅନୁରାଗୀ ସହଚରଙ୍କୁ ସମାହିତ କରି ସହକର୍ମୀ କରାଇଲି ଏବଂ ଗ୍ରନ୍ଥପ୍ରକାଶନ ସଂକ୍ରାନ୍ତ ଆନୁଷଙ୍ଗିକ ସମସ୍ତକାର୍ଯ୍ୟ ସମ୍ପାଦନ ପାଇଁ ମୋର ଦତ୍ତ ସଂଖାଳି ଶ୍ରୀମାନ ସୁନୀଲ ଦତ୍ତଙ୍କୁ ସମ୍ପୂର୍ଣ୍ଣ ଦାୟିତ୍ୱ ଦେଲି । ଏମାନଙ୍କ ସାହାଯ୍ୟ ,ସହଯୋଗ ପାଇନଥିଲେ ଜୀବନରେ ଢଗଢମାଳି,ପ୍ରବାଦ ସଙ୍କଳନ ରୂପକ ମହାବ୍ରତ ମୁଁ କାର୍ଯ୍ୟରେ ପରିଣତ କରିପାରି ନଥାନ୍ତି । ଏଥିପାଇଁ ମୁଁ ସେମାନଙ୍କ ନିକଟରେ ସାରା ଜୀବନ ଋଣଗ୍ରସ୍ତ ହୋଇ ରହିଲି ।

ମୋର ଆଦରଣୀୟା ସାନ ଭଉଣୀ ଓଡ଼ିଶା ସରକାରଙ୍କର ସ୍ୱାସ୍ଥ୍ୟ ବିଭାଗର ଶିଶୁରୋଗ -ବିଶେଷଜ୍ଞ ଡ଼ାକ୍ତର କୃଷ୍ଣା ଦାସ ,ଏମ. ଡ଼ି. (ପାଟନା) ଏହି ଗ୍ରନ୍ଥ ସଙ୍କଳନ ଓ ପ୍ରକାଶନ ପାଇଁ ଅଯାଚିତ ଭାବରେ ସମସ୍ତ ପ୍ରକାର ସହାୟତା ଦେଇ ଏହି ଜାତୀୟ କାର୍ଯ୍ୟରେ ମୋତେ ଯେପରି ଉତ୍ସାହ ପ୍ରଦାନ କରିଛନ୍ତି, ତାହା ଚିରସ୍ମରଣୀୟ ହୋଇ ରହିବ । ଏଥିପାଇଁ ଆମ୍ଭେ କୃତଜ୍ଞତା ଜ୍ଞାପନ କରିବା ସଙ୍ଗେ ସଙ୍ଗେ ମା' ସାରଳାଙ୍କ ନିକଟରେ ତାଙ୍କର ଦୀର୍ଘ-ନିରାମୟ ଜୀବନ ପ୍ରାର୍ଥନା କରୁଛୁ ।

ମୋର ଘନିଷ୍ଠ ସହୋଦରକଳ୍ପ ,ଓଡ଼ିଶାର ଅନ୍ୟତମ ସ୍ୱାଧୀନତା ସଂଗ୍ରାମୀ ଆଦର୍ଶବାଦୀ ଆଇନ୍ ଜୀବୀ ବିଶ୍ୱନାଥ ପସାୟତଙ୍କ ପୁତ୍ର ,ମୋର ଗୁରୁଦେବ ହୃଦୟାନନ୍ଦ ନାୟକଙ୍କର ଜାମାତା, ଔପନ୍ୟାସିକ ତଥା ଯୁଗାନ୍ତକାରୀ ଉପନ୍ୟାସ 'ସାବତ ମା'ର କୀର୍ତିମାନ ରଚୟିତା ସତ୍ୟାନନ୍ଦ ବେହୁରାଙ୍କର ନାତି , ବର୍ତ୍ତମାନ କେରଳ ଉଚ୍ଚନ୍ୟାୟାଳୟର ମୁଖ୍ୟ ନ୍ୟାୟମୂର୍ତ୍ତି ଶ୍ରୀଯୁକ୍ତ ଅରଜିତ ପସାୟତ ଏହି ଗ୍ରନ୍ଥର ଦୁଇଟିଯାକ ଖଣ୍ଡ ପାଠକରି ଭାବବିହ୍ୱଳିତ ହୋଇ କବି ସୁଲଭ ଭାଷାରେ ଯେଉଁ ପଦାବଳୀଟି ରଚନା କରିଛନ୍ତି ତାହା ମୋତେ ଅଭିଭୂତ କରିଛି । ସେଇ ପଦ୍ୟାଂଶଟି ଏହି ଗ୍ରନ୍ଥରେ ସନ୍ନିବେଶିତ ହୋଇଛି । ଭାରତର ସେ ଜଣେ ସୁଯୋଗ୍ୟ ସନ୍ତାନ ହୁଅନ୍ତୁ -ମା' ସାରଳାଙ୍କ ପାଖରେ ମୋର ଏତିକି ପ୍ରାର୍ଥନା ।

ଓଡ଼ିଶାର ବରେଣ୍ୟ ସାରସ୍ୱତ-ସାଧକ , ପ୍ରବୁଦ୍ଧ ପ୍ରବକ୍ତା ,ପରମଜ୍ଞାନୀ, ପ୍ରବୀଣ ଶିକ୍ଷାବିତ୍, ପ୍ରଖ୍ୟାତ ଦର୍ଶନ ଅଧ୍ୟାପକ ଶ୍ରୀଯୁକ୍ତ ହୃଦାନନ୍ଦ ରାୟ ମହୋଦୟ ମୋର ଅନୁରୋଧ ରକ୍ଷାକରି ଏହି ଗ୍ରନ୍ଥର ଅଗ୍ରଲେଖା ଲେଖିବା ପାଇଁ ଯେପରି ଅକୁଣ୍ଠିତ ଚିତ୍ତରେ ସମ୍ମତି ପ୍ରଦାନ କଲେ, ଏହା ଯେ ନିୟତିର ନିର୍ଦ୍ଦେଶ ଓ ମା' ସାରଳାଙ୍କର ଏ ଅକିଞ୍ଚନ ପ୍ରତି ଆଉ ଏକ କରୁଣା , ଏହା ବୁଝିବାକୁ ମୋର ବାକି ରହିଲା ନାହିଁ ।

ବହୁ କାର୍ଯ୍ୟବ୍ୟସ୍ତତା ସତ୍ୱେ ମହାନୁଭବୀ ଓ ଗୁଣଗ୍ରାହୀ ଅଧ୍ୟାପକ ଶ୍ରୀ ରାୟ ମୋ' ଦ୍ୱାରା ସଙ୍କଳିତ ଗ୍ରନ୍ଥଗୁଡ଼ିକ ପାଠକରି ତାଙ୍କର ତାତ୍ତ୍ୱିକ ଭାବଗର୍ଭକ 'ଗ୍ରନ୍ଥ-ଆମୁଖ' ପରିବେଷଣ କରିଛନ୍ତି । ସେଥିପାଇଁ ମୁଁ ସେହି ପ୍ରଚଣ୍ଡ ପ୍ରଜ୍ଞାପୁରୁଷଙ୍କ ନିକଟରେ କୃତକୃତ୍ୟ ଓ ଚିରଋଣୀ ହୋଇ ରହିଲି ।

ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରାପ୍ତ, ଫକୀରମୋହନ ସାହିତ୍ୟ ପରିଷଦର ସଭାପତି ଓ ପ୍ରଥିତ କବି ଶ୍ରୀଯୁକ୍ତ ବ୍ରଜନାଥ ରଥଙ୍କ ମତାମତ ଗ୍ରନ୍ଥଟିକୁ ଅଳଂକୃତକରିଛି । ତାଙ୍କର ଶ୍ରଦ୍ଧା ଓ ସହାନୁଭୂତି ପାଇଁ ମୁଁ ଚିର କୃତଜ୍ଞ ।

ଏତଦ୍ ବ୍ୟତୀତ ଯେଉଁସବୁ ମୂଲ୍ୟବାନ ଉପାଦାନ ମାଳ ମାଳ ବିଭିନ୍ନ ଗ୍ରନ୍ଥ, ପାଣ୍ଡୁଲିପି ,ପତ୍ର ପତ୍ରିକା ,ଲେଖା ଅଭିଲେଖ, ପୋଥି , ନଥିପତ୍ର ଇତ୍ୟାଦିରୁ ସଂଗୃହୀତ ହୋଇଛି । ପୁଣି କେତେକ ଉପାଦାନ ଶହ ଶହ ବ୍ୟକ୍ତି ବିଶେଷଙ୍କ ପାଖରୁ ଗ୍ରହଣ କରାଯାଇଛି , ସେହି ସମସ୍ତ ସହୃଦୟ ବ୍ୟକ୍ତି ଓ ସମ୍ମାନନୀୟ ଗ୍ରନ୍ଥକାର ମାନଙ୍କୁ ମୋର ଭକ୍ତିପୂର୍ଣ୍ଣ ପ୍ରଣାମ ଜଣାଉଛି । ୨ୟ ଖଣ୍ଡ ଗ୍ରନ୍ଥର ବିଜ୍ଞାପନ ଅନୁଯାୟୀ 'ସମାଜ'ସମ୍ପାଦିକା ତଥା ଲୋକସେବକ ମଣ୍ଡଳର ଆଜୀବନ ସଭ୍ୟା ଶ୍ରୀମତୀ ମନୋରମା ମହାପାତ୍ରଙ୍କର ମୁଖବନ୍ଧ ଆମ୍ଭର ତ୍ରୁଟିଯୋଗୁଁ ୩ୟ ଖଣ୍ଡ ମୁଦ୍ରଣ ପୂର୍ବରୁ ସଂଗୃହୀତ ହୋଇପାରିଲା ନାହିଁ । ଏହା ମୋର ଚରମ ହତଭାଗ୍ୟ । ସେଥିପାଇଁ ଆମ୍ଭେ ବିଶେଷ ଦୁଃଖିତ ଓ ଅନୁତପ୍ତ । ଆମ୍ଭକୁ ମାର୍ଜନା କରିବା ପାଇଁ ନିବେଦନ କରୁଛୁ । ପରବର୍ତ୍ତୀ ଖଣ୍ଡରେ ତାଙ୍କର ଅଗ୍ରଲେଖା ସନ୍ନିବେଶିତ କରିବାପାଇଁ ବାସନା ରହିଲା । ଗ୍ରନ୍ଥର ବ୍ୟବସ୍ଥାପକ ,ସଂଯୋଜକ ,ସମ୍ପାଦନା ନିର୍ଦ୍ଦେଶକ ,ସମ୍ପାଦନା ମଣ୍ଡଳୀ ,ପ୍ରଚ୍ଛଦଶିଳ୍ପୀ ,ମୁଦ୍ରାକର,ବ୍ୟବସାୟ ପରାମର୍ଶକ ପ୍ରଭୃତି ସ୍ୱନାମଧନ୍ୟ ଓ ସମ୍ମାନନୀୟ ବ୍ୟକ୍ତିଗଣଙ୍କ ସହଯୋଗିତା ଓ ଅନ୍ତରାଳରେ ଥିବା ସହୃଦୟ ବନ୍ଧୁଙ୍କ ଅଗାଧ ଶ୍ରଦ୍ଧା,ଡ଼ି.ଟି.ପି. କରିଥିବା ଯୁବ ଅଧ୍ୟାପକ ଶ୍ରୀ କମଳା କାନ୍ତ ଦାଶଙ୍କ ଅକୁଣ୍ଠିତ ସାହାଯ୍ୟ ସହଯୋଗରେ ଏହି ଗ୍ରନ୍ଥଟି ଲୋକ ଲୋଚନକୁ ଆସିପାରିଲା । ମା' ସାରଳା ସେମାନଙ୍କର ଉତ୍ତରୋତ୍ତର ଉନ୍ନତି ସାଧନ କରାନ୍ତୁ । ଗ୍ରନ୍ଥର ପ୍ରକାଶକ ଟ୍ରଷ୍ଟ ବୋର୍ଡ଼ର ସହୃଦୟ କର୍ମକର୍ତ୍ତାମାନଙ୍କୁ ଆମ୍ଭେ ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଅଛୁ ।

ଆୟକର ଅଫିସର ଶ୍ରୀ କେଶବ ଚନ୍ଦ୍ର ସାହାଣୀ ଓ ତାଙ୍କର ସହଧର୍ମିଣୀ ଶ୍ରମତୀ ପ୍ରେମଲତା ସାହାଣୀଙ୍କର ମୋ ପ୍ରତି ଶ୍ରଦ୍ଧା ଓ ଗ୍ରନ୍ଥ-ପ୍ରକାଶନରେ ଅଯାଚିତ ସାହାଯ୍ୟ ପାଇଁ କୃତଜ୍ଞତା ଜ୍ଞାପନ କରୁଛି ।

ସଙ୍କଳନ ସମ୍ପର୍କରେ ଯେ କୌଣସି ପରାମର୍ଶ,ଢଗ-ଢମାଳି ,ପ୍ରବାଦ,ପ୍ରବଚନ ସମ୍ପର୍କରେ ନୂତନ ତଥ୍ୟ ପାଠକ ପାଠିକା ମାନଙ୍କଠାରୁ ସାଦରେ ଓ ସସମ୍ମାନେ ଗ୍ରହଣ କରାଯିବା ସଙ୍ଗେ ସଙ୍ଗେ ଯଥା ମୂଲ୍ୟ ପ୍ରଦାନ କରାଯିବ ।

ସଙ୍କଳନରେ କୌଣସି ତ୍ରୁଟି ବିଚ୍ୟୁତି ପାଇଁ ବିଜ୍ଞ ପାଠକ ପାଠିକାମାନଙ୍କଠାରୁ କ୍ଷମା ମାଗିନଉଛି ।

ଶୁଦ୍ଧ ଅଶୁଦ୍ଧ ପୁରାଇ ପଢ଼ିବ
ଲେଖନକାର ଦୋଷ ନଧରିବ ।

* * *

ଅତି ଅନ୍ୟାୟ କର୍ମ ମୋର । ମୁଁ କର୍ମହୀନ ଦୁରାଚାର ।।
ଅଜ୍ଞାନ ମୂଢ ଧନଲୋଭୀ । ଆପଣା ପାପେ ପରାଭବୀ ।।
ଏକି ଅଦ୍‌ଭୁତ କର୍ମ ମୋର । ଦଇବ ବଳେ ବଳିଆର।।
ବିଚାର ନାହିଁ ମୋର ତହିଁ । ସ୍ୱଭାବେ କ୍ଷୁଦ୍ର ମୁଁ ଅଟଇ ।।
ଯେ ତୋର ଇଚ୍ଛା ଏବେ କର ।
ଆମ୍ଭେ ତୋ ଚରଣେ କିଙ୍କର ।।

ଅତିବଡ଼ୀ ଜଗନ୍ନାଥ ଦାସଙ୍କର ଲେଖନୀ ନିଃସୃତ ଅମୃତବାଣୀ ଦୁଇପଦ ଉଦ୍ଧାର କରି ସଙ୍କଳୟିତା ତାର ଅବାଞ୍ଛିତ ଓ ଅହେତୁକ କର୍ମପାଇଁ ପାଠକପାଠିକାମାନଙ୍କ ନିକଟରେ ନିଜ ଜୀବନର ନିରାଟ ସତ୍ୟକୁ ନିଃଶଙ୍କାରେ ବ୍ୟକ୍ତ କରୁଛି । ‘ ଗ୍ରନ୍ଥପ୍ରବେଶ ’ ର ସମାପ୍ତି କରି ନମ୍ରତାର ସହିତ ପ୍ରଣାମ ଜଣାଉଛି ।

ବିନୋଦ ବିହାରୀ ଦାସ, ଆଡ଼ଭୋକେଟ,
ଗାନ୍ଧୀପାର୍କ ଗେଟ୍, ବାରିପଦା - ୭୫୭୦୦୧, ଫୋନ୍ - ୫୨୬୮୫
ଏବଂ ପ୍ରୁଫ୍‌ରୋଡ଼, ବାଲେଶ୍ୱର - ୭୫୬୦୦୧, ଫୋନ୍ - ୩୬୨୩୭୨
ଅକ୍ଷୟ ତୃତୀୟା : (୬-୫-୨୦୦୦)

*ବରେଣ୍ୟ ପାଠକ ପାଠିକା ମାନଙ୍କ ଅକୁଣ୍ଠ ଶ୍ରଦ୍ଧା ଓ ଆଶୀର୍ବାଦରୁ*

୧୯୯୭ ମସିହାରେ ପ୍ରଥମେ ପ୍ରକାଶିତ

# ସାରଳା ରତ୍ନଭଣ୍ଡାର ରସସାଗର (ପ୍ରଥମ ଖଣ୍ଡ)




*ଏଥିରେ ରହିଛି :-*

- ❖ ଚାଣକ୍ୟଙ୍କ ଦ୍ୱାରା ପ୍ରଣୀତ ଅର୍ଥଶାସ୍ତ୍ରର ଜନକଲ୍ୟାଣକର ନିୟମାବଳୀ ।
- ❖ ପ୍ରାଚୀନ ଓଡ଼ିଶାର ପାରମ୍ପାରିକ ରୀତି-ନୀତିରୁ ଉଦ୍ଭୁତ ଲୋକବାଣୀର ଲୁପ୍ତପ୍ରାୟ ଦନାଇ ବଚନ, ନାଥବଚନ, କୁଂଜବନ ବଚନ, ଡାକଘଷିବଚନ, କୃଷିବଚନ, ଖନାବଚନ, ଇତ୍ୟାଦି ।
- ❖ ମୟୂରଭଞ୍ଜର ପ୍ରାଚୀନ ଜାତୀୟ ସଂଗୀତ, ଝୁମର ଗୀତ, ପଶ୍ଚିମ ଓଡ଼ିଶା ଓ ଦକ୍ଷିଣ ଓଡ଼ିଶା ବୋଲି ଓ ଲୋକଗୀତ ।
- ❖ ଓଡ଼ିଆ ଢଗ ଢ଼ମାଳି, ପ୍ରବାଦର କାଳ ନିରୂପଣ ସଂପର୍କରେ ଏକ ଦୀର୍ଘ ଗବେଷଣା ମୂଳକ ଆଲୋଚନା ।
- ❖ ୰ ପ୍ରଫେସର ବିଧୁଭୂଷଣ ଦାସଙ୍କ 'ଅଭିମତ' ଏବଂ ଶ୍ରୀଯୁକ୍ତ ଗିରୀଜା ଭୂଷଣ ପଟ୍ଟନାୟକଙ୍କ 'କିଞ୍ଚିତ କଥନ' ।

ସଂକଳୟିତା

# ଅବତରଣିକା

ସବୁ ଦେଶରେ ,ସବୁ କାଳରେ ପ୍ରବାଦ ବାକ୍ୟ ତଥା ଢଗ -ଢମାଳିର ପ୍ରଚଳନ ଅଛି । କିନ୍ତୁ କେବେ ବା କି ରୂପରେ ପ୍ରବାଦ ,ଢଗ-ଢମାଳିର ଉଦ୍ଭବ ପ୍ରଥମେ ହୋଇଥିଲା, ତାହାର ସୂଚନା ମିଳେ ନାହିଁ। ଏହି 'ଖଣ୍ଡ' ,'ତୁଛ' ,'ବାକ୍ୟ' ତଥା 'ପଦ'ଗୁଡ଼ିକ ନିରର୍ଥକ ନୁହେଁ। କୌଣସି ତତ୍ତ୍ୱ ଓ ନୀତି ପ୍ରଚାର ପାଇଁ ଏହା ଉଦ୍ଦିଷ୍ଟ ନ ହେଲେ ମଧ୍ୟ କାଳ କାଳ ଧରି ଏହା ଲୋକମୁଖରେ ପ୍ରଚାରିତ ହୋଇ ଆସୁଛି । ପ୍ରବାଦ, ବଚନ, ଢଗ-ଢମାଳିର ଆଦିକଥା ଯାହା ହେଉନା କାହିଁକି ,ଏହି ପ୍ରବାଦ ଯେ ମଣିଷ ମନର ସ୍ୱତଃସ୍ଫୂର୍ତ୍ତ ଉତ୍ସ ,ଏଥିରେ ସନ୍ଦେହ ନାହିଁ । ତାହାର ପ୍ରତ୍ୟକ୍ଷ ଜ୍ଞାନ ବା ଅନୁଭୂତି ନିଜର ସ୍ୱଭାବ ସୁଲଭ ସରଳ ଓ ସହଜ ଭାଷାରେ ନିଃସୃତ ହୋଇଥିଲା । ଗ୍ରନ୍ଥାଦି ରଚନାର ବହୁପୂର୍ବରୁ ମଧ୍ୟ ପ୍ରବାଦ ବା ପ୍ରବାଦମୂଳକ କଥନୀର ଅସ୍ତିତ୍ୱ ଥିଲା ବୋଲି ଅନୁମାନ କରାଯାଏ । କାରଣ ଏଗୁଡ଼ିକ ରଚନା କରିବା ପାଇଁ ରଚିତ ହୋଇନାହିଁ, ମନୁଷ୍ୟ ମନରେ ସ୍ୱତଃ ଜନ୍ମି ଅଛି । ତେଣୁ ମୁହଁରେ ଆପେ ଆପେ ପ୍ରଚଳିତ ହୋଇ ଆସିଛି । ଦୃଷ୍ଟାନ୍ତ ସ୍ୱରୂପ-**କଟାଘା'ରେ ଲୁଣ ଛିଟା , ରଥ ଦେଖା କଦଳୀ ବିକା, ଦୁଧର ସ୍ୱାଦୁ ଘୋଳରେ ମେଣ୍ଟାଇବା,ଅତିଭକ୍ତି ଚୋରର ଲକ୍ଷଣ** । ବାସ୍ତବ ଅର୍ଥରେ ପ୍ରଯୁକ୍ତ ଏହି ସମସ୍ତ କଥିତ ବାକ୍ୟ କାଳକ୍ରମେ କୌଣସି ସାଧାରଣ ବିଷୟବସ୍ତୁ ବା ଘଟଣାର ଉପଲକ୍ଷେ ବ୍ୟବହୃତ ହୋଇ ପ୍ରବାଦର ଗୋଟିଏ ଗୋଟିଏ ବିଶିଷ୍ଟ ଲକ୍ଷଣ ସୃଷ୍ଟି କରିବାରେ ସହାୟକ ହେଲା ।

ମନେହୁଏ ପ୍ରବାଦ ବାକ୍ୟର ଆଦି ସ୍ରଷ୍ଟା ଥିଲେ ସାଧାରଣ ମନୁଷ୍ୟ । ସେମାନଙ୍କର ବୁଦ୍ଧି ଓ ବହୁଦର୍ଶିତ ପ୍ରଥମେ ପ୍ରବାଦର ଉପକରଣ ଏବଂ ପରେ ପ୍ରବାଦର ସୃଷ୍ଟି ଓ ପ୍ରଚଳନ ଲାଗି ସହାୟକ ହୋଇଥିଲା । ଯାହା ଦିନେ ପିତାର ବଚନ ଥିଲା, ତାହା କାଳକ୍ରମେ ପୁତ୍ରର ସମ୍ପତ୍ତି ହେଲା । ଗୃହିଣୀର ସରସ ବୋଲି ଘର ବାହାରେ ମଧ୍ୟ ଢଗ-ଢମାଳି,ପ୍ରବାଦର ରୂପ ଗ୍ରହଣ କଲା । ଗାଁ ମୁଖିଆର ରସିକତ ଆପ୍ତ-ବାକ୍ୟରେ ପରିଣତ ହେଲା । ଶିଳ୍ପୀ ବା କାରିଗରଙ୍କ ଧାରାବାହିକ ଶିଳ୍ପ ରହସ୍ୟ ପ୍ରବଚନ ମାଧ୍ୟମରେ ସ୍ଥାୟୀଭାବରେ ସ୍ମରଣୀୟ ହୋଇ ରହିଲା । ପ୍ରବାଦ ରଚୟିତାର ନାମ ଲୁପ୍ତ ହେଲା ସତ,ମାତ୍ର ତାର ରସାଳ ବାକ୍ୟ ସାଧାରଣରେ ପ୍ରତ୍ୟକ୍ଷ ଜ୍ଞାନ ବା ବାସ୍ତବ ଅନୁଭୂତିର ନିର୍ଯ୍ୟାସ ହିସାବରେ ଲୋକପ୍ରିୟ ହୋଇ ଲୋକ ପରମ୍ପରାରେ ପରିଣତ ହେଲା । କ୍ରମେ ଏଗୁଡ଼ିକ ସାହିତ୍ୟିକ ରଚନାରେ ଉଦ୍ଧୃତି ବା ଚଳନ୍ତି କଥାରେ ଅନ୍ତର୍ଭୁକ୍ତହୋଇ ଏହାର ରୂପ ଓ ରସ ପରିପୁଷ୍ଟି ଓ ସ୍ଥାୟିତ୍ୱ ଲାଭ କଲା ।

ସାଧାରଣ ମନୁଷ୍ୟ ଛଡ଼ା ପ୍ରବାଦ ବାକ୍ୟର ଉତ୍ପତ୍ତି ମୂଳରେ ଆଉ ଜଣେ ବ୍ୟକ୍ତି ଥିବାର ସୂଚନା ମିଳେ । ଏହି ବ୍ୟକ୍ତିଟି ସମାଜର ବିଦ୍ୟା,ବୁଦ୍ଧି,ମର୍ଯ୍ୟାଦାସଂପନ୍ନ ଜ୍ଞାନୀପୁରୁଷ ଅର୍ଥାତ୍ ଇଂରାଜୀରେ Oracle ନାମରେ ନାମିତ । ଯେଉଁମାନଙ୍କର ଚିନ୍ତା କରିବାର ସମୟ ବା ଶକ୍ତି ନାହିଁ ,ସେମାନେ ଜ୍ଞାନୀ ବ୍ୟକ୍ତିଙ୍କର ସୁଚିନ୍ତିତ ଓ ସଂକ୍ଷିପ୍ତ ବାକ୍ୟ-ସୂତ୍ରଗୁଡ଼ିକୁ ସାମାଜିକ ଜୀବନର ବିଧି ବୋଲି ମାନି ନେଉଥିଲେ । ବାଇବେଲର ପୂର୍ବ ଖଣ୍ଡରେ ସଲୋମନ ସଂଗୃହୀତ Proverbs ଗ୍ରନ୍ଥରେ ଯେଉଁ Words of the wise and their dark sayings ଅଛି , ତାହା ଅଧିକାଂଶ ଏଇ ଧରଣର ଅତି ପ୍ରାଚୀନ ପ୍ରବାଦ ବାକ୍ୟ । ଏହା ସଲୋମନ ନାମରେ ପ୍ରଚଳିତ ହେଲେ ମଧ ଏହି ସଂଗ୍ରହ ମଧରେ ଦୁଇଟି ବିଭିନ୍ନ ସମୟ ସ୍ତର ପରିଦୃଷ୍ଟ ହୁଏ । ପ୍ରାଚୀନତମ ଅଂଶ 'ପାରସ୍ୟ' ଅମଳରେ ,କିନ୍ତୁ ଏହାର ବର୍ତ୍ତମାନ ଆକାର 'ଗ୍ରୀକ୍' ସମୟର । ପୃଥିବୀର ପ୍ରବାଦ ବାକ୍ୟର ଉତ୍ପତ୍ତି କାଳ ଏଥିରୁ ଅନୁମାନ କରାଯାଏ ।

ଏହି ପ୍ରଜ୍ଞା ବଚନଗୁଡ଼ିକୁ ଲାଟିନ ଭାଷାରେ 'Sententia' କୁହାଯାଏ । ଏହା ସବୁ ସମୟରେ ଠିକ ପ୍ରବାଦ ବା 'Proverbium' ନୁହେଁ । ଏଗୁଡ଼ିକ ଜ୍ଞାନୀମାନଙ୍କର ନିଷ୍କର୍ଷ ତଥା ସୁଚିନ୍ତିତ,ସୁବ୍ୟକ୍ତ ଏବଂ ଅଧିକାଂଶ କ୍ଷେତ୍ରରେ ଉପଦେଶମୂଳକ ନୀତି-ବାକ୍ୟ । କିନ୍ତୁ ପ୍ରବାଦରେ ପାଣ୍ଡିତ୍ୟ ,ଚିନ୍ତା ବା ଉପଦେଶର ପ୍ରୟୋଜନ ନାହିଁ । କୌଣସି ବିଶିଷ୍ଟ ବ୍ୟକ୍ତି ,ବସ୍ତୁ ବା ଘଟଣାର ଉପଲକ୍ଷରେ ପ୍ରବାଦ ବାକ୍ୟ ବିଶେଷଭାବେ ଅଭିବ୍ୟକ୍ତ , ଯେପରିକି **ଦ୍ୱିତୀୟାର ଚାନ୍ଦ ଦେଖି ,ତେନ୍ତୁଳି ହେଲା ବଙ୍କା** । ଜ୍ଞାନୀର ବଚନରେ ଏପରି କୌଣସି ଉପଲକ୍ଷ ନ ଥିବାରୁ ତାହା ସାଧାରଣ ଭାବରେ ଗଠିତ , ଯେପରି - **ଅହିଂସା ପରମ ଧର୍ମ** । ପ୍ରଥମଟି ବିଚିତ୍ର ବହୁଦର୍ଶିତାର ସ୍ୱତଃ ପ୍ରବୃତ୍ତ ଓ ସରସ କଥନ ; ଅନ୍ୟଟି ଜ୍ଞାନ ଓ ଚିନ୍ତାର ପରିପାକରେ ପ୍ରସୂତ ନୀତିକଥାର ନିର୍ଯ୍ୟାସ ।

କିନ୍ତୁ ଲୋକୋକ୍ତି ଓ ପ୍ରାଜ୍ଞୋକ୍ତି ଉଭୟ ମଧରେ ପାର୍ଥକ୍ୟ ପରିଲକ୍ଷିତ ହେଲେ ମଧ ବ୍ୟାବହାରିକ ଜଗତରେ ଉଭୟହିଁ ପ୍ରଚଳିତ । ଏଗୁଡ଼ିକ ଜନସାଧାରଣଙ୍କ ଦ୍ୱାରା ପ୍ରବାଦ ହିସାବରେ ଗୃହୀତ ହେଲେ ଉଭୟଙ୍କର ସୂକ୍ଷ୍ମ-ସ୍ୱାତନ୍ତ୍ର୍ୟ ସେପରି ଭାବରେ ପରିଦୃଷ୍ଟ ହୁଏ ନାହିଁ ।

ଉଭୟ କ୍ଷେତ୍ରରେ ଉପରୁ ତଳକୁ ଓ ତଳୁ ଉପରକୁ କ୍ରମମାନ ବ୍ୟାପ୍ତିର ପ୍ରକ୍ରିୟା ଦେଖିବାକୁ ମିଳେ । ଏକ ପକ୍ଷରେ ଯେପରି ଲୋକୋକ୍ତି ପ୍ରାଜ୍ଞଙ୍କର ଚିନ୍ତା ଓ କର୍ମରେ ପ୍ରବେଶ କରିଥାଏ , ଅନ୍ୟପକ୍ଷରେ ସେହିପରି ପ୍ରାଜ୍ଞୋକ୍ତି ଲୋକଙ୍କର ଦୈନନ୍ଦିନ ଜୀବନ ଓ ଭାଷାରେ ବିକାଶ ଲାଭ କରେ । ଉଭୟର ମଧବର୍ତ୍ତୀ ହୋଇ ବିରାଜମାନ ହୁଏ ସାହିତ୍ୟର ଘୂର୍ଣ୍ଣାୟମାଣ ଚକ୍ର , ଯାହାଦ୍ୱାରା

ଉଭୟେ କାଳକ୍ରମେ ଗୃହୀତ ,ପରିତ୍ୟକ୍ତ ବା ପରିବର୍ତ୍ତିତ ହୋଇଥାନ୍ତି । ଅବଶେଷରେ ଯେତେବେଳେ ପାର୍ଥକ୍ୟର ସୀମା ପୋଛି ହୋଇ ଯାଏ ,ସେତେବେଳେ ପରସ୍ପରର ସୀମା ନିର୍ଦ୍ଧାରଣ ଆଉ ସମ୍ଭବପର ହୁଏ ନାହିଁ । ଅନେକ ଗ୍ରନ୍ଥକାରଙ୍କର ରଚନାରେ ପ୍ରବାଦ ବାକ୍ୟ ଦୃଷ୍ଟିଗୋଚର ହୋଇଥାଏ । କିନ୍ତୁ ସେଗୁଡ଼ିକ ତାଙ୍କର ସ୍ୱରଚିତ ନା ଜନଶ୍ରୁତି ରୁ ଆନୀତ ,ତାହା ନିର୍ଦ୍ଧାରଣ କରିବା କଠିନ । ସେହିପରି ଜନ ପ୍ରବାଦରେ ମଧ୍ୟ ଏପରି ଅନେକ ବାକ୍ୟ ଦେଖାଯାଏ ,ଯାହା ଶେଷ ପର୍ଯ୍ୟନ୍ତ ଗ୍ରନ୍ଥକାରମାନଙ୍କର ରଚନାରେ ସ୍ପଷ୍ଟ ହୋଇଥାଏ ।

ପ୍ରବାଦ ବାକ୍ୟ ଯେଉଁ ରୂପରେ ବା ଯେପରି ଭାବେ ଉତ୍ପତ୍ତି ହେଉନା କାହିଁକି, ଏହା ଜାତିର ଜୀବନରେ ପ୍ରାୟ ସର୍ବାନ୍ତକରଣରେ ପରିବ୍ୟାପ୍ତ ହୋଇଥାଏ । କିନ୍ତୁ ପ୍ରବାଦର ସମସ୍ତ ଲକ୍ଷଣ ମଧ୍ୟରେ ଗୋଟିଏ ପ୍ରଧାନ ଲକ୍ଷଣ ହେଲା ଯେ ଏହା ପ୍ରବାଦ ଭଳି ବା ଭାବରେ ଲୋକ ସମାଜରେ ଗୃହୀତ ହେବ । ଅର୍ଥାତ୍ ଏହାର ସାଫଲ୍ୟ ନିର୍ଭର କରେ ଲୋକମନର ସରଳ ଓ ସ୍ୱାଭାବିକ ସମର୍ଥନ ଉପରେ । ନିଜ ସହିତ ନିଜ ପରିଚୟର ଯେଉଁ ଆକସ୍ମିକ ବିସ୍ମୟ ଓ ଆମୋଦ ସେଥିରୁହିଁ ଏହାର ରସ ଉପଲବ୍ଧ ହୋଇଥାଏ । କେଉଁ କାଳରୁ କେଉଁ ବିଶିଷ୍ଟ ଲୋକ ଦ୍ୱାରା ପ୍ରବାଦ ବାକ୍ୟ ରଚିତ ହେଲେ ମଧ୍ୟ ଏହା ଜନମାନବ ନିର୍ବିଶେଷରେ ସର୍ବସାଧାରଣଙ୍କର ସମ୍ପତ୍ତି ; ତେଣୁ ଏହାର ରଚୟିତାଙ୍କର ନାମ ଓ ରଚନାର ସମୟ ପ୍ରଭୃତି ମନେରଖିବା ନିଷ୍ପ୍ରୟୋଜନ । ଏହା ସମସ୍ତଙ୍କର ଏବଂ ସବୁ ସମୟର । ବ୍ୟକ୍ତିଗତ ବୋଲି କିଛି ନଥିବାରୁ ଏହା ଜାତିଗତ ଏବଂ ଅନେକ ସମୟରେ ବ୍ୟକ୍ତିବିଶେଷଙ୍କ ମୁଖରେ ଜାତି ର ସମଷ୍ଟି ଜ୍ଞାନର ଅଭିବ୍ୟକ୍ତି । ବିଶିଷ୍ଟ ଆକାର ଓ ପ୍ରକାରରେ ପ୍ରକାଶିତ ହେଲେ ମଧ୍ୟ ଏହା ସାଧାରଣ ଭାବରେ ପ୍ରଯୁକ୍ତ; କାହାରିକୁ ନିର୍ଦ୍ଦିଷ୍ଟ ଭାବରେ ଲକ୍ଷ୍ୟ କରା ନଯାଇ ,ସାର୍ବଜନୀନ ଲକ୍ଷ୍ୟ ହେଉଛି ଏହାର ଉଦ୍ଦେଶ୍ୟ । ଏହି ଦୃଷ୍ଟିରୁ ପ୍ରବାଦ ଜଣକର ସରଳ ଓ ସହଜ ବୁଦ୍ଧିରେ ସହସା ପ୍ରତିଫଳିତ ହେଲେ ମଧ୍ୟ ଏହା ବହୁଜନ -ସୁଲଭ ବୁଦ୍ଧିର ଏକ ଉପାୟ ଓ କ୍ଷିପ୍ର ପ୍ରୟୋଗର ଅସ୍ତ୍ର । ଯାହାକୁ ଇଂରାଜୀରେ କୁହାଯାଇଛି - ' The wit of one man and the wisdom of many '.

ସେଥିପାଇଁ ଜାତିର ମନସ୍ତତ୍ତ୍ୱ ବା ଆଚାର ବ୍ୟବହାର ହିସାବରେ ପ୍ରବାଦର ଯଥେଷ୍ଟ ମୂଲ୍ୟ ରହିଛି , କିନ୍ତୁ ନିଛକ ନୀତି ବା ତତ୍ତ୍ୱକଥା ହିସାବରେ ଏହି ମୂଲ୍ୟ ଚିରନ୍ତନ ବା ସାର୍ବଜନୀନ ନୁହେଁ । ନୀତିବାକ୍ୟ ସହିତ ପ୍ରବାଦ ବାକ୍ୟର ପାର୍ଥକ୍ୟ ଏଇଥିପାଇଁ ଯେ ଉଚ୍ଚ ଆଦର୍ଶ ,ତତ୍ତ୍ୱଜ୍ଞାନ ବା ଲୋକଶିକ୍ଷା ପ୍ରବାଦର ମୂଳ କଥା ନୁହେଁ । ପ୍ରବାଦ ମଧ୍ୟରେ ଚିରନ୍ତନତ୍ୱ ବିଦ୍ୟମାନ ,କିନ୍ତୁ ଚିରନ୍ତନ ସତ୍ୟର ନିର୍ଦ୍ଦେଶକ ଭାବେ ନୁହେଁ, ଯେପରି ଧର୍ମର କଳ, ବାଆରେ ଟଳ ଟଳ । ଏହା ନୈତିକ ଜଗତର ସତ୍ୟ ହେଲେହେଁ ବ୍ୟାବହାରିକ ଜଗତର ତଥ୍ୟ ନୁହେଁ । ସେହିପରି - ଯମ, କୁଆଁର ,ଭଣଜା ,ଭଗାରୀ-ଏମାନେ ନୁହନ୍ତି କେବେ କାହାରି । ଏହା ବ୍ୟାବହାରିକ ଜଗତର

ତଥ୍ୟ ହେଲେବି ,ନୈତିକ ଜଗତର ସତ୍ୟ ନୁହେଁ । ପ୍ରବାଦର ପ୍ରଧାନ ଅନୁପ୍ରେରକ ନୈତିକ ଜ୍ଞାନ ନୁହେଁ ,ସାଂସାରିକ ଜ୍ଞାନ; ପରୋକ୍ଷ ଚିନ୍ତା ନୁହେଁ ,ପ୍ରତ୍ୟକ୍ଷ ଅନୁଭୂତି । ଯାହା ନିତ୍ୟ -ଦୃଷ୍ଟ ଏବଂ ନିତାନ୍ତ ପରିଚିତ,ତାହା ଭୂୟୋଦର୍ଶନ ,କିନ୍ତୁ ତାହାହିଁ ଯେ ବିଶୁଦ୍ଧ ସତ୍ୟ , ଏହା କହିବା ଠିକ୍ ନୁହେଁ। ତଥାପି ଏସବୁ ଅଧିକାଂଶ ପ୍ରବାଦକୁ ଖୋରାକ ଯୋଗାଇ ଥାଏ । ପ୍ରବାଦ ମଧ୍ୟରେ ଯେଉଁ ସତ୍ୟ ନିହିତ ଥାଏ , ତାହା ଆପେକ୍ଷିକ ସତ୍ୟ - ତତ୍ତ୍ୱମୂଳକ ସତ୍ୟନୁହେଁ ,ତଥ୍ୟମୂଳକସତ୍ୟ ।

ପ୍ରବାଦର ବହୁ ଦିଗ ଅଛି । ମାତ୍ର ପ୍ରବାଦ ମୁଖ୍ୟତଃ ବାସ୍ତବର ସ୍ୱରୂପ । ଏହା ବାଟ ଘାଟର ପ୍ରାଜ୍ଞତା,ପ୍ରାତ୍ୟହିକ ଅଭିଜ୍ଞତାର ସ୍ୱଚ୍ଛନ୍ଦ ପ୍ରକାଶ, ଯାହାକୁ ଇଂରାଜୀରେ କହନ୍ତି - A short sentence drawn from long experience । ସେଥିପାଇଁ ଏହା ସହସା ମାନସପଟରେ ଲାଗିଯାଏ ଏବଂ ପ୍ରୟୋଜନ ହେଲେ ତୁରନ୍ତ ପ୍ରୟୋଗ କରାଯାଇ ପାରେ । ଏଭଳି ଖୁବ୍ କମ ପ୍ରବାଦ ବାକ୍ୟ ଅଛି ,ଯାହାକୁ କି ରାମାୟଣ ,ମହାଭାରତ ପରି ବୁଝାଇ ନଦେଲେ ବୁଝିହୁଏ ନାହିଁ । ପ୍ରବାଦ ବାକ୍ୟ ସହଜ ବୋଧଗମ୍ୟ ଓ ସହଜ ପ୍ରୟୋଗ ହୋଇଥିବାରୁ ଏହା ଲୋକପ୍ରିୟତା ଓ ଲୋକସ୍ମୃତିରୁ ଲୁପ୍ତ ନହେବା ଅନ୍ୟ ଏକ କାରଣ ।

ପ୍ରବାଦ ବାକ୍ୟ ମଧ୍ୟରେ ଯେଉଁ ସତ୍ୟ ବା ତଥ୍ୟ ନିହିତ ଥାଏ , ଅନେକ ସମୟରେ ତାହା ନିତାନ୍ତ ସାଧାରଣ ଓ ସାମାନ୍ୟ ;ଅର୍ଥାତ୍ ଯାହାକୁଂ **ନୀରସ -ଉକ୍ତ ଅଥବା ଅସାର- ମନ୍ତବ୍ୟ** ବୋଲି କୁହାଯାଇ ପାରେ । ଏହାକୁ ଇଂରାଜୀରେ Platitude କୁହାଯାଏ । ବିଷୟବସ୍ତୁର ତୁଚ୍ଛତା ଓ ଦୈନ୍ୟତା ପାଇଁ ଏବଂ ପ୍ରବାଦରେ ପଟୁ ଓ କଟୁ ରସିକତା ପାଇଁ ଅନେକଙ୍କର ଧାରଣା ଯେ ପ୍ରବାଦ ବାକ୍ୟଗୁଡ଼ିକ ଥଟ୍ଟା ,ପରିହାସ ତଥା ଗ୍ରାମ୍ୟ ଭଣ୍ଡାମିର ଏକ ରୂପାନ୍ତର ମାତ୍ର । ଏପରି ଧାରଣାର ମୂଳରେ ରହିଛି ଓଡ଼ିଆ ଜାତିର ଭାବ , ଭାଷା ଓ ରସିକତା ସମ୍ବନ୍ଧରେ ଜ୍ଞାନର ଅଭାବ , ମର୍ମଗ୍ରହୀତାର ଅଭାବ ,ଅଥଚ ଉତ୍କଟ ସୂକ୍ଷ୍ମାଚାରଜନିତ ବିଳାସିତା । ଏହା ସତ୍ୟ ଯେ ବହୁ ଓଡ଼ିଆ ପ୍ରବାଦ ବାକ୍ୟରେ ସ୍ୱତଃସ୍ଫୁର୍ତ୍ତ କୌତୁକ ବା ଉଦ୍‌ଭଟ ରସିକତାର ଆଭାସ ପରିଲକ୍ଷିତ ହୁଏ । ଅନୁପ୍ରାସ ଓ ଯତିପାତ(ମେଳ) ପ୍ରଭୃତି ଏଗୁଡ଼ିକୁ ଲୋକପ୍ରିୟ କଲେ ମଧ ଏହା ପ୍ରବାଦ - ବାକ୍ୟର ଅପରିହାର୍ଯ୍ୟ ନୁହେଁ । ଏହା ମଧ ଠିକ୍ ନୁହେଁ ଯେ ,ପ୍ରବାଦ ବାକ୍ୟ ଗ୍ରାମ୍ୟ ଇତରତା ସହିତ ସମାନ ଅଟେ । ଗ୍ରାମ୍ୟ ଜୀବନ ଏବଂ ପଲ୍ଲୀଗୀତିକା (ଯାହାକୁ ଇଂରାଜୀରେ Buclic wit କହନ୍ତି ) ଓଡ଼ିଆ ପ୍ରବାଦ ବାକ୍ୟରେ ପ୍ରତିଫଳିତ ହେବାର ଦୃଷ୍ଟାନ୍ତ ସ୍ୱଳ୍ପ । ପ୍ରାୟ ସବୁ ଦେଶର ପ୍ରବାଦରେ ଏ କଥା ଅଳ୍ପ ବହୁତ ଦୃଷ୍ଟିଗୋଚର ହୋଇଥାଏ । ଯାହା ଗ୍ରାମର ତାହା ବାସ୍ତବରେ ଗ୍ରାମଜ ପ୍ରବାଦ ନୁହେଁ। ପ୍ରବାଦର ଭାଷା ପ୍ରାୟତଃ ଶକ୍ତିଶାଳୀ ଏବଂ ଅନେକ ସମୟରେ ବହୁ କଥା ଖୋଲ୍ ଖୋଲାଖୋଲି ଭାବରେ କୁହାଯାଇଥାଏ । କିନ୍ତୁ ଏହାର ଭାଷା ନିତ୍ୟନୈମିତ୍ତିକ

ବ୍ୟବହାରରେ ଏକ ବଳିଷ୍ଠଭାଷା ଏବଂ ଜୀବନର ଘନିଷ୍ଠ ଅଭିଜ୍ଞତାରୁ ଏହାକୁ ବିଛିନ୍ନ ଭାବରେ ଦେଖାଯାଏ ନାହିଁ। ଏହି ଧରଣର ଇଂରାଜୀ ପ୍ରବାଦ ସମ୍ପର୍କରେ କେହି କେହି ଲେଖକ କହିଛନ୍ତି - Many of the coarsest Proverbs are typically English । ଓଡ଼ିଆ ପ୍ରବାଦ ସକମ୍ପର୍କରେ ମଧ୍ୟ ଏହି ଇଂରାଜୀ ଉକ୍ତିଟି ପ୍ରଯୁଜ୍ୟ ।

ପ୍ରବାଦର ସାଫଲ୍ୟ ଏହାର ବିଷୟବସ୍ତୁ ଉପରେ ନିର୍ଭରଶୀଳ ନୁହେଁ । ଏହା ନିର୍ଭର କରେ ତାର ସହଜପ୍ରକାଶଭଙ୍ଗୀ ଉପରେ ,ଏହାର ସାଧାରଣ ବୁଦ୍ଧିର ସରସ ଚମତ୍କାରିତା ଉପରେ, ଏହାର ସଂକ୍ଷିପ୍ତ ଓ ସ୍ୱାଭାବିକ ପ୍ରୟୋଗର ସାର୍ଥକତା ଉପରେ। ଶବ୍ଦର ସ୍ୱଳ୍ପତା ଓ ଅର୍ଥର ଆଧିକ୍ୟ ପ୍ରବାଦର ଗୋଟିଏ ସାଧାରଣ ଲକ୍ଷଣ। କିନ୍ତୁ Epigram ବା ଲଘୁ ବାକ୍ୟସୂତ୍ରରେ ଯେଉଁ ସଂହତ ଚାତୁର୍ଯ୍ୟ ,ତାହାହିଁ ,ଏକମାତ୍ର ସମ୍ବଳ ନୁହେଁ।

ପ୍ରବାଦ ଉପଯୋଗିତାର ମୂଳକଥା ହେଉଛି ଯେ ଯାହା କୁହାଯାଏ, ତାହା ଏପରି ସହଜ ଓ ସୁବିଦିତ ଯେ ତତ୍‌କ୍ଷଣାତ୍ ତାହାର ପ୍ରୟୋଗର ଅଭିପ୍ରାୟ ବା ସଙ୍କେତ ହୃଦୟକୁ ସ୍ପର୍ଶ କରିଥାଏ। ଉଦାହରଣ ସ୍ୱରୂପ - **ଧାରରେ କାଟେ ,ଆଉ ଭାରରେ କାଟେ**। ଆମେ ଯେତେବେଳେ ଏହି କଥାଟି କହୁଁ , ସେତେବେଳେ ଧାରରେ କାଟିବା ଓ ଭାରରେ କାଟିବା ଦୁଇଟି ନିମନ୍ତେ ପରିଚିତ ବସ୍ତୁ ର ତୁଳନା ଦେଇ ଏ କଥା ଇଙ୍ଗିତ କରିଥାଉଁ ଯେ କେବଳ ବୁଦ୍ଧିର ଗୁଣ ନୁହେଁ ,ନିର୍ଗୁଣର ସହାୟ ସମ୍ପତ୍ତି ମଧ୍ୟ ସମାନ ଶକ୍ତିଶାଳୀ। ତେବେ ଅସଳଟି ହେଲା ଗୁଣ। ଯେଉଁ ବିଷୟ ଉପଲକ୍ଷରେ ପ୍ରବାଦଟିର ପ୍ରୟୋଗ ,ତାହା ଅଖଣ୍ଡ ହେଲେ ମଧ୍ୟ ଅସ୍ପଷ୍ଟ ନୁହେଁ। ଚୁମ୍ବକରେ ପ୍ରକାଶିତ ଭଙ୍ଗୀଓ ଦୃଷ୍ଟାନ୍ତର ସହଜ ଅଭିବ୍ୟକ୍ତି ଉପରେହିଁ ପ୍ରବାଦର ସାର୍ଥକତା ଓ ସମାଜ ନିର୍ଭର କରେ।

ସବୁ ପ୍ରବାଦର ଛାପ ଓ ପୋଷାକ ଠିକ୍ ଏକ ଉକମର ନୁହେଁ। କିନ୍ତୁ ପ୍ରାଚୀନ କାଳର ପ୍ରବାଦଗୁଡ଼ିକ ସଂକ୍ଷିପ୍ତ ,ବାସ୍ତବିକ ଉପଦେଶମୂଳକ ଏବଂ ଅଙ୍ଗ ଅତି ସ୍ୱଚ୍ଛନ୍ଦ ଭାବରେ ସାଧାରଣ କଥାରେ ପ୍ରକାଶିତ ହେଉଥିଲା। ପରେ ଦେଶ ,କାଳ ଓ ପାତ୍ରର ଉପଯୋଗୀ ରସତତ୍ତ୍ୱ ପ୍ରବାଦର ଗୋଟିଏ ପ୍ରୟୋଜନୀୟ ଲକ୍ଷଣ ହେବାର ଦେଖାଗଲା। କେତେକ ପାଶ୍ଚାତ୍ୟ ପଣ୍ଡିତଙ୍କର ମତାନୁଯାୟୀ --Wickedness proceedeth from the wicked । ବାଇବେଲର ଏହି ଉକ୍ତିଟି ସଲୋମନଙ୍କର ପ୍ରବାଦ ସଂଗ୍ରହ ମଧ୍ୟରେ ନାହିଁ। ସାମୁୟେଲଙ୍କର ପ୍ରଥମ ଖଣ୍ଡରେ ( I Sam,24.13 ) ଏହା ଦେଖିବାକୁ ମିଳେ। ଏହାକୁ ସବୁଠାରୁ ପ୍ରାଚୀନ ପ୍ରବାଦ ବାକ୍ୟ ବୋଲି କୁହାଯାଏ। କିନ୍ତୁ ମିଶର ଦେଶର Book of the Dead ଗ୍ରନ୍ଥରେ ଯେଉଁ ନୀତିବାକ୍ୟ ଅଛି, ତାହା ଅନ୍ତତଃ ଖ୍ରୀ:ପୂ: ୩୭୦୦ ମସିହାରେ ପ୍ରଚଳିତ ଥିଲା। Ke,-gemni ଓ Ptah-

Hotep ଙ୍କର ରଚନାରେ ଯେଉଁସବୁ ପ୍ରବାଦ ତୁଲ୍ୟ ବାକ୍ୟ ରହିଛି ,ସେଇ ସବୁ ଲେଖାର ସମୟ ଖ୍ରୀ:ପୂ: ୩୫୫୦ । କିନ୍ତୁ ଯେଉଁମାନେ ଏହି କଥା କହନ୍ତି ,ସେମାନେ ହୁଏତ ବୈଦିକ ବା ସଂସ୍କୃତ ସାହିତ୍ୟର ଖବର ରଖନ୍ତି ନାହିଁ। ବୈଦ୍ଦିକ ବା ସଂସ୍କୃତ ସାହିତ୍ୟରେ କେତେ ପରିମାଣରେ ପ୍ରବାଦର ପ୍ରୟୋଗ ଥିଲା ,ତାହାର କୌଣସି ଆଲୋଚନା ଏପର୍ଯ୍ୟନ୍ତ ହୋଇଛି ବୋଲି ସଙ୍କଳୟିତା ସୂଚନା ପାଇ ନାହାନ୍ତି । କିନ୍ତୁ ଅନୁସନ୍ଧାନ କଲେ ବୋଧହୁଏ ଉକ୍ତ ପ୍ରବାଦ ବାକ୍ୟ ଠାରୁ ପ୍ରାଚୀନତର ଦୃଷ୍ଟାନ୍ତ ଭାରତୀୟ ସାହିତ୍ୟରେ ନିଶ୍ଚିତ ଭାବେ ମିଳି ପାରିବ । ଉଦାହରଣ ସ୍ୱରୂପ କୁହାଯାଇ ପାରେ ଯେ - ଋକ୍‌ବେଦର ଏକ ପ୍ରସିଦ୍ଧସଂବାଦ ସୂକ୍ତରେ ଉର୍ବଶୀର୍ ଉକ୍ତି -

(୧) ନ ବୈ ସ୍ତ୍ରୈଣାନି ସଖ୍ୟାନି ସନ୍ତି
ସାଲାବୃକାଣାଂ ହୃଦୟାନ୍ୟେତା ।

ଅର୍ଥାତ୍, ନାରୀ ସହିତ ସଖ୍ୟ ନାହିଁ, ନାରୀର ହୃଦୟ ସାଲାବୃକ (କୁକୁର ,ମେଣ୍ଢା,ଶୃଗାଳ) ର ହୃଦୟ ପରି ।

(୨) କୋ ବଂା ଶୟୂତ୍ରା ବିଧବେବ ଦେବରଂ
ମର୍ଯ୍ୟଂ ନ ଯୋଷା କୃଣୁତେ ସଧସ୍ଥ ଆ ।

ଅର୍ଥାତ୍ ,ବିଧବା ଯେପରି ଦିଅରକୁ ,ନାରୀ ଯେପରି ପୁରୁଷକୁ ଶଯ୍ୟାରେ ଆହ୍ୱାନ କରେ ।

ଏହା ଉଲ୍ଲେଖଯୋଗ୍ୟ ଯେ ଏଗୁଡ଼ିକ ସବୁ ଲୋକକଥା । ଏହା ପ୍ରବାଦବାକ୍ୟର ଅତି ପ୍ରାଚୀନ ସାହିତ୍ୟକ ପ୍ରୟୋଗ ବୋଲି ମନେହୁଏ । ତା'ପରବର୍ତ୍ତୀ ସଂସ୍କୃତ ସାହିତ୍ୟରେ ଲୌକିକ କଥା ଛାଡ଼ିଦେଲେ ବି , ପ୍ରାଚୀନ ବ୍ରାହ୍ମଣ୍ୟ ଓ ବୌଦ୍ଧ ଗ୍ରନ୍ଥମାନଙ୍କରେ ଏତାଦୃଶ ପ୍ରବାଦ ବାକ୍ୟ ବିରଳ ନୁହେଁ ।

ପ୍ରବାଦ ବାକ୍ୟଗୁଡ଼ିକ ସଫଳ ଓ ସମାଦୃତ ହେବାର ଅନ୍ୟ ଏକ କାରଣ ହେଲା ଯେ ବିଭିନ୍ନ ଯୁଗର ଲେଖକମାନଙ୍କର ରଚନାରେ ମଧ ପ୍ରବାଦ ବାକ୍ୟ ବାକ୍ୟାଳଙ୍କାର ଭାବରେ ଆଦୃତି ଲାଭ କରିଅଛି । ବ୍ୟାଖ୍ୟା ବା ଦୃଷ୍ଟାନ୍ତ ହିସାବରେ କୌଣସି ବିଷୟବସ୍ତୁକୁ ସ୍ଥାପିତ ଓ ପଲ୍ଲବିତ କରିବା ପାଇଁ ,ଅଥବା ବହୁକଥା ଅଳ୍ପକେ କହିବା ଉଦ୍ଦେଶ୍ୟ ରଖିବାରେ ପ୍ରବାଦର ଯେ ଉପଯୋଗିତା ଅଛି ,ତାହା ଏକାଳ ଏବଂ ସେକାଳର ଲେଖକମାନେ ଅଳ୍ପ ବହୁତ ଅନୁଭବ କରିଛନ୍ତି ।

ଓଡ଼ିଆ ସାହିତ୍ୟରେ କିପରି ଏବଂ କେତେ ପ୍ରବାଦ ବା ପ୍ରବାଦମୂଳକ ଚଳନ୍ତି କଥା ବ୍ୟବହୃତ ହୋଇଅଛି , ସେ ସମ୍ପର୍କରେ ବିସ୍ତୃତଭାବରେ ଆଲୋଚନା ଏପର୍ଯ୍ୟନ୍ତ ହେବାର ସଙ୍କଳୟିତାଙ୍କ ଦୃଷ୍ଟିଗୋଚର ହୋଇନାହିଁ କିମ୍ୱା ସୂଚନା ମଧ୍ୟ ମିଳିନାହିଁ । କିନ୍ତୁ ଚର୍ଯ୍ୟାପଦରେ ଯେ ଅସଂଖ୍ୟ ପ୍ରବାଦ ବାକ୍ୟ ପ୍ରଯୁକ୍ତ,ତାହାର ଯଥେଷ୍ଟ ନିଦର୍ଶନ ମିଳେ । ଦୃଷ୍ଟାନ୍ତ ସ୍ୱରୂପ ଚର୍ଯ୍ୟାପଦରୁ କେତେକ ବାକ୍ୟ ନିମ୍ନରେ ପ୍ରଦତ୍ତ ହେଲା -

(୧) ଆପଣା ମାଁ ସେ ହରିଣା (=ମୃଗ) ବୈରୀ(=ଶତ୍ରୁ)।।(ଭୁସୁକୁ ପାଦ)
ଅର୍ଥାତ, ହରିଣୀ କୁଟୁମ୍ବ ବିବାଦକୁ ଜାଗ୍ରତ କରେ ।

(୨) ଗୁରୁ ବୋବ ସେ ସୀମା କାଲ ।। (ଭୁସୁକୁ ପାଦ)
ଅର୍ଥାତ୍ -ବୋବା ଗୁରୁକୁ କାଲ ଶିଷ୍ୟ ।

(୩) ବର ସୁଣ ଗୋହାଳି କି ସୋ ଦୁଠ଼ଟ ବଲନ୍ଦେ ।। ( ସରହ ପାଦ)
ଅର୍ଥାତ୍, ଦୁଷ୍ଟ ଗୋରୁଠାରୁ ଶୂନ୍ୟ ଗୁହାଳ ଭଲ ।

(୪) ହାଥେରେ କାଙ୍କଣ ମା ଲୋଉ ଦାପନ ।। (ସରହ ପାଦ)
ଅର୍ଥାତ୍ , ହାତରେ ଶଂଖା,ଦର୍ପଣଦେଖା ବା ହାତରେ କଂକଣ,ଦର୍ପଣର କି ପ୍ରୟୋଜନ ।

(୫) ଦୁହିଲ ଦୁଧୁ କି ବେଣ୍ଟେ ସାମାଅ ।। ( ଟେଣ୍ଟଣ ପାଦ)
ଅର୍ଥାତ୍ -ଦୁହାଁ ଯାଇଥିବା ଦୁଧ କି ପହ୍ନାରେ ପଶେ ।

(୬) ହାଁଡ଼ୀତେ ଭାତ ନାହି ନିତି ଆବେଶୀ ।। ( ଟେଣ୍ଟଣ ପାଦ)
ଅର୍ଥାତ୍, ଭାତ ନଥିଲାକୁ ଭୋକ ବେଶି ବା ହାଣ୍ଡିରେ ଭାତ ନଥିଲାକୁ ନିତି ଅତିଥି ।

(୭) ଟାଳତ ମୋର ଘର ନାହିଁ ପଡ଼ବେଶୀ ।। (ଟେଣ୍ଟଣ ପାଦ)
ଅର୍ଥାତ୍ -ଲୋକାଳୟରେ ମୋ ଘର( ଅଥଚ) ପଡ଼ୋଶୀ କେହି ନାହିଁ ।

(୮) ବଳଦ ବିଆଇଲ ଗବିଆ ବାଁଝେ ।। (ଟେଣ୍ଟଣ ପାଦ)
ଅର୍ଥାତ୍, ବଳଦ ବେଇଲା , ଗାଈ ହେଲା ବାଂଝ ।

(୯) ଜୋ ସୋ ବୁଧୀ ସୋଧ ନିବୁଧୀ । ଜୋ ସୋ ଚୋର ସୋଇ ସାଧୀ ।। (ଟେଣ୍ଟଣ ପାଦ)
ଅର୍ଥାତ୍ , ଯିଏ ବୁଦ୍ଧିଆ, ସେ ବୋକା । ଯିଏ ଚୋର ,ସିଏ କଟୁଆଳ (=ପୁଲିଶ)।

(୧୦) ନିତି ନିତି ସିଆଳା ସିହେ ସମ ଜୁଝଅ ।(ଟେଣ୍ଟଣ ପାଦ)
ଅର୍ଥାତ୍, ନିତି ସିଂହ ସହିତ ଶିଆଳ ଯୁଦ୍ଧ କରୁଛି ।

(୧୧) ବେଙ୍ଗସ ସାପ ବଡ଼ହିଲ ଜାଅ (ଟେଣ୍ଟଣ ପାଦ)
ଅର୍ଥାତ୍, ବେଙ୍ଗ ସାପକୁ ବଢିଛି ।

(୧୨) ଭାବ ନ ହୋଇ ଅଭାବ ଣ ଜାଇ (ଲୁଇ ପାଦ)

ଅର୍ଥାତ୍- ଭାବ ନ ହୋଇ ଅଭାବ ନ ଯାଇ ବା ଭାବ ନଥିଲେ ଅଭାବ ନାହିଁ।

(୧୩) ଅକଟ ହୁଁ - ଭବଇ ଗଅଣା। (ସରହ ପାଦ)

ଅର୍ଥାତ୍- ସଂସାରରେ ମୋହ ଆଶ୍ଚର୍ଯ୍ୟଜନକ।

(୧୪) ବାଟତ ଭଅ ଖଣ୍ଟେ ବି ବଳଆ। (ସରହ ପାଦ)

ଅର୍ଥାତ୍- ବାଟକୁ ଭୟ ବଳୁଆ ଖଣ୍ଡ।

(୧୫) ଜାସୁ ଅପ୍‌ପା ତାସୁ ପାରେଲା କାହି। (ଭୁସୁକୁ ପାଦ)

ଅର୍ଥାତ୍ - ଯହିଁ ନାହିଁ ଆତ୍ମା ତହିଁ ପର କାହିଁ।

(୧୬) ବାଁଝ ସୁଆ ଜିମ କେଳି କରଇ ଖେଳଇ ବହୁ ବିହ ଖେଳା।

ବାଳୁଆ ତେଲେଁ ସମର ସିଙ୍ଗେ ଆକାଶ ଫୁଲିଲା। (ଭୁସୁକୁ ପାଦ)

ଅର୍ଥାତ୍- ବନ୍ଧ୍ୟାର ପୁଅ ଖେଳ ଖେଳୁଛି ବୋଲି କହିବା ଯେପରି ଅସମ୍ଭବ ସେହିପରି ବାଲିରେ ତେଲ, ଶଶାର ଶିଙ୍ଘ, ଆକାଶ କୁସୁମ ପ୍ରଭୃତି ମଧ ଅସମ୍ଭବ।

ଚ଼ର୍ଯ୍ୟାପଦର ଲେଖକମାନେ ସେମାନଙ୍କର ଲେଖା ଏକ ଗୂଢ଼ ଅର୍ଥରେ ଲେଖୁଥିଲେ ବୋଲି ଯାହା ପର୍ଯ୍ୟାଲୋଚନା କରି କୁହାଯାଇଛି ,ତାହା ସମ୍ପୂର୍ଣ୍ଣ ଭାବେ ଠିକ୍ ନୁହେଁ। କାରଣ ସେମାନଙ୍କର ଲେଖାଗୁଡ଼ିକ ଯେ ଜନସାଧାରଣଙ୍କ ଉଦ୍ଦେଶ୍ୟରେ ଓ ସାଧାରଣ ଅର୍ଥରେ ବ୍ୟବହୃତ ଓ ପ୍ରଯୁକ୍ତ ପାଇଁ ଉଦ୍ଦିଷ୍ଟ ,ତାହା ସରହ ପାଦ(ଚର୍ଯ୍ୟାପଦ ଲେଖକଙ୍କ ମଧ୍ୟରୁ ଜଣେ ) ତାଙ୍କରି କଥନରେ ଲେଖିଛନ୍ତି :-

'' ସରହେ ଗହିଣ ଗୁହରି ଭାସ କହିଅ''।

(ଅର୍ଥାତ୍, ସାଧାରଣ ଜନତାକୁ ଗହନ ଅର୍ଥ ନକହି ସାଧାରଣ ଅର୍ଥରେ କୁହ।)

ଯେହେତୁ ଗହନ ଅର୍ଥ କେବଳ ତାନ୍ତ୍ରିକ ବୌଦ୍ଧ ସାଧକଙ୍କ ପାଇଁ ଉଦ୍ଦିଷ୍ଟ । ସେ ଯାହାହେଉ,କଥନଗୁଡ଼ିକ ଯେଉଁ କାଳର ହେଉନା କାହିଁକି ,ଜନସାଧାରଣଙ୍କ ପାଇଁ ଏଇ ପଦଗୁଡ଼ିକ ପ୍ରବାଦବାକ୍ୟରେ ପରିଣତ ହୋଇଛି।

ଏହାଛଡ଼ା ଚର୍ଯ୍ୟାପଦରେ ବହୁଳ ଭାବରେ ଉଚମାନର ପ୍ରବାଦ ରୂପକ ବଚନ,ପ୍ରବଚନ ଦୃଷ୍ଟିଗୋଚର ହୁଏ। ଏହି ବଚନ ,ପ୍ରବଚନଗୁଡ଼ିକର ମର୍ମ ଆଜିବି ବ୍ୟକ୍ତିବିଶେଷ ତଥା ମାନବସମାଜର କଲ୍ୟାଣ ପାଇଁ ଉପଯୋଗୀ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ। ତାର କେତୋଟି ଦୃଷ୍ଟାନ୍ତ ନିମ୍ନରେ ପ୍ରଦତ୍ତ ହେଲା -

(୧) ଛାଡ଼ିଅ ଭୟ ଘିଣ ଲୋଆଚାର ।
ଚାହନ୍ତେ ସୁଣ ବିଆର ।। ( ଆର୍ଯ୍ୟଦେବ ପାଦ)

ଅର୍ଥାତ୍ , ସମସ୍ତ ଘୃଣା,ଭୟ, ଲୋକାଚାର ଛାଡ଼ିଦେଲେ ,ଅର୍ଥାତ୍ ଦୂରହେଲେ ଶୂନ୍ୟ ସଂସାରର ଅସ୍ତିତ୍ୱ ନାହିଁ ବୋଲି ପ୍ରତୀୟମାନ ହୁଏ ।

(୨) ଜାମେ କାମ କି କାମେ ଜାମ ।
ସରହ ଭଣତି ଅଚିନ୍ତ ସୋ ଧାମ ।। ( ସରହ ପାଦ)

ଅର୍ଥାତ୍ , କର୍ମରୁ ଜନ୍ମ, ଜନ୍ମରୁ କର୍ମ ହୋଇଥାଏ । ତେଣୁ ଜନ୍ମରୁ କର୍ମ ସୃଷ୍ଟି କିମ୍ବା କର୍ମରୁ ଜନ୍ମ ସୃଷ୍ଟି ଏସବୁ ବିଚାର କରିବା ନିରର୍ଥକ । ଲୋକେ ପ୍ରକୃତରେ ବୁଝିନପାରି ଆପେ ଆପେ ସ୍ୱର୍ଗ,ନର୍କ,ସଂସାର ,ନିର୍ବାଣ ପ୍ରଭୃତି କଳ୍ପନା କରନ୍ତି ।

(୩) ମୂଢ଼ା ଅଛନ୍ତେ ଲୋଅ ନ ପେଖଇ ।
ଦୁଧ ମାଝେଁ ଲଡ଼ ଅଛନ୍ତେ ନ ଦେଖଇ ।। (କାହ୍ନୁ ପାଦ)

ଅର୍ଥାତ୍ , ଦୁଧରେ ଲହୁଣୀ ରହିଯାଏ । କିନ୍ତୁ ବହୁଲୋକ ତାହା ଦେଖିପାରନ୍ତି ନାହିଁ । ସେହିପରି ମୃତ୍ୟୁ ପରେ ମନୁଷ୍ୟ ଅଦୃଶ୍ୟଭାବରେ ରହିଥାଏ । ସଂସାରରେ ଜନ୍ମନାହିଁ ,ମରଣ ନାହିଁ ।

(୪) ମୂଢ଼ା ଦିନ ନାଠ ଦେଖି କାଅର ।
ଭାଙ୍ଗ(ଭଗ) ତରଙ୍ଗ କି ସୋଷଇ ସାଅର ।।(କାହ୍ନୁ ପାଦ)

ଅର୍ଥାତ୍ ,ସାଗରର ତରଙ୍ଗ ଉଠି ଭାଙ୍ଗିଯାଏ । କିନ୍ତୁ ସାଗର ଶୁଖେ ନାହିଁ । ପ୍ରକୃତରେ ଜଳ ତରଙ୍ଗ ରୂପରେ ଦେଖାଦେଇ ସମୁଦ୍ର ଜଳରେ ମିଶିଯାଏ । ଦେଖିଲା ପଦାର୍ଥ ନଷ୍ଟ ହେବାର ଦେଖି କାତର ହେଉଥିବା ଲୋକ ମୂର୍ଖ , କାରଣ ସଂସାରରେ କାହାରି ବିନାଶ ନାହିଁ । ଯେଉଁ ପଦାର୍ଥମାନ ନଷ୍ଟ ହେବାର ଦେଖାଯାଉଛି ,ସେସବୁ ଅନନ୍ତ ସତ୍ତାରେ ମିଶିଯାଉଛି ।

(୫) ପାର ଉଆରେ ସୋଇ ଗଜିଇ (ମଜିଇ) ।
ଦୁଜ୍ଜଣ ସଙ୍ଗେ (ସାଙ୍ଗେ) ଅବସରି ଯାଇ ।।(ସରହ ପାଦ)

ଅର୍ଥାତ୍ , ସଂସାରର ଏହି ପାରରେ କାମ,କ୍ରୋଧ ପ୍ରଭୃତି ଦୁର୍ଜନ ସାଙ୍ଗ ହେଲେ ତତ୍ତ୍ୱଜ୍ଞାନ ଦୂରକୁ ଅପସରିଯାଏ ।

(୬) ଛିମଇଳେ ପାଣିଆ ଟଳିଆ ରେ ଭନ ଯାଅ ।
ତିମ ମଣରଅଣା ସମରସେ ଗଅଣ ସମାଅ ।।(ଭୁସୁକୁ ପାଦ)

ଅର୍ଥାତ୍ , ଯେମିତି ପାଣିରେ ପାଣି ପଡ଼ିଲେ ଏକ ହୋଇଯାଏ ,କିଛି ଭେଦ ରହେ ନାହିଁ ,ସେହିପରି ଯାହାର ମନ ଶୂନ୍ୟ ସହିତ ମିଶିଯାଏ ,ତାହାର ନିଜ ଓ ପର ଭିତରେ କିଛି ଭେଦ ରହେ ନାହିଁ ।

(୭) କିନ୍ତୋ ମନ୍ତେ କିନ୍ତୋ ତନ୍ତେ କିନ୍ତୋରେ ଝାଣ ବଖାଣେ ।
ଅପଇଠାଣ ମହାସୁହଲୀନେ ଦୁଲକ୍‌ଖ (ଦୁଲଖ) ପରମ ନିବାଣେ ।।

ଅର୍ଥାତ୍ , ତନ୍ତ୍ରମନ୍ତ୍ର ,ଧ୍ୟାନଧାରଣା (ଅବର୍ଣ୍ଣନୀୟ) ମହାସୁଖ ଦେଇପାରନ୍ତି ନାହିଁ। ତେଣୁ ମନ୍ତ୍ରତନ୍ତ୍ର ,ଧ୍ୟାନଧାରଣା ନିଷ୍ପ୍ରୟୋଜନ । ଚିତ୍ତ ଅଚିତ୍ତରେ ଲୀନ ନହେଲେ ପରମ ସୁଖ ବା ନିର୍ବାଣ ମିଳେ ନାହିଁ ।

(୮) ଅମିଆ ଅଚ୍ଛନ୍ତେ ବିସ ଗିଲେସିରେ ଚିଅ ପରବସ ଅପା ।। (ସରହ ପାଦ)
ଅର୍ଥାତ୍ ,ମୋର ଆତ୍ମା ଅଜ୍ଞାନର ବଶ ହୋଇ ଅମୃତ ଥାଉଁ ଥାଉଁ ବି ଷ (ବିଷୟ ସୁଖ) ଖାଉଅଛ ।

(୯) ଏ ଜଗ ଜଳ ବିମ୍ୱାକାରେ ସହଜେଁ ସୁଣ ଆପଣା ।।(ସରହ ପାଦ)
ଅର୍ଥାତ୍ , ଜଳରେ ପ୍ରତିବିମ୍ବିତ ଚନ୍ଦ୍ରପରି ଏହି ସଂସାର ଅସାର । ସହଜ ଶୂନ୍ୟରେ ସମସ୍ତ ସଂସାର ଲୀନ ହୋଇଯାଏ ।

ଚର୍ଯ୍ୟାପଦର ରଚୟିତାମାନେ ହେଲେ ବସ୍ତୁତତ୍ତ୍ୱ ଏବଂ ଆଧ୍ୟାତ୍ମିକ ଧୀମାନ ସିଦ୍ଧ ଓଡ଼ିଆ କବି । ଏ ସମ୍ପର୍କରେ ଆଲୋଚନା କରିବା ଆମ ହତାର ବାହାରେ । ତାହାହେଲେ ବି ଏହା ଆମ ଇଲାକା ମଧ୍ୟରେ ଥିବାରୁ ଯଦ୍ କିଞ୍ଚିତ ସଂଗୃହୀତ ସୂଚନା ପ୍ରଦତ୍ତ ହେଲା --

ପୂର୍ବକାଳରେ ଓଡ଼ିଶାର ପ୍ରାଚୀତଟ ସିଦ୍ଧସାଧକମାନଙ୍କର ପ୍ରଧାନ ପୀଠସ୍ଥଳୀ ଥିଲା । ମହାପୁରୁଷ ଭକ୍ତକବି ଅଚ୍ୟୁତାନନ୍ଦ ଦାସ ଶୂନ୍ୟ ସଂହିତାରେ ଏହି ପ୍ରାଚୀ ନଦୀ ତୀରରେ ''ଲୁଇ ଦାସ''ଙ୍କ (ଚର୍ଯ୍ୟାପଦ ପ୍ରଣେତା) ମଠ ଥିବାର ଉଲ୍ଲେଖ କରିଛନ୍ତି। ''ଲୁହି'' ବା ''ଲୁଇ ଦାସ''ଙ୍କ ମଠ ଥିବାର କିମ୍ବଦନ୍ତୀ ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ଲୋକମୁଖରେ ପ୍ରବାଦ ବାକ୍ୟରେ ପରିଣତ ହୋଇ ରକ୍ଷିତ ହୋଇଥିଲା । ସେଇ ପ୍ରବାଦଟି ହେଲା -

'ଋଷି ତପି ସନ୍ୟାସୀ ନାମକ ବୀରସିଂହ
ଲୁହି ଦାସ ବାଉଳି କପିଳ ଯେତେ ସଙ୍ଗ ।।'

ମହାପୁରୁଷ ଶିଶୁ ଅନନ୍ତଙ୍କ ପ୍ରଣୀତ 'ଗୁପ୍ତଗୀତା'ରେ ଯେଉଁ ପଦଟି ପ୍ରବାଦର ରୂପ ନେଇଛି ତାହା ହେଲା-

'କହ୍ନୁପା ହାଡ଼ୀପା ବିରୂପା ଲୋଇ
ସର୍ବା ଋଷି ବଶିଷ୍ଠ ଛାବାଳି କହି ।।'

ଏହି ଉକ୍ତିଟି ଅଚ୍ୟୁତାନନ୍ଦଙ୍କ ପୂର୍ବୋକ୍ତ ପ୍ରବାଦ ବାକ୍ୟର ସୂଚନାକୁ ଆହୁରି ସୁଦୃଢ଼ କରୁଛି। ପୁଣି ଜଣେ ଚର୍ଯ୍ୟାପଦ ରଚୟିତା ସିଦ୍ଧାଚାର୍ଯ୍ୟ କବି 'ଗୁଣ୍ଡୁରି ପାଦ' ତାଙ୍କର ଚର୍ଯ୍ୟାପଦରେ'ଓଡ଼ିଆଣେ' (ଅର୍ଥାତ୍ -ଓଡ଼ିଆଣୀ) ଶବ୍ଦଟି ଏହିପରି ଭାବରେ ବ୍ୟବହାର କରିଛନ୍ତି ।

'ମଣିକୁଳେ ବହିଆ ଓଡ଼ିଆଣେ ସମାହ ।।'

ଅର୍ଥାତ୍- ରତ୍ନ ଦେହି ବା ରତ୍ନକୁଳର ଓଡ଼ିଆଣୀ ପାଖକୁ ଯାଇ ସଂଘାଉଅଛି ବା ରମଣ କରୁଅଛି ।

ଅଧିକନ୍ତୁ କବିଙ୍କ ନାମ 'ଗୁଣ୍ଡୂରି '। 'ଗୁଣ୍ଡୁରି' ଶବ୍ଦଟି ଖାଣ୍ଟି ଓଡ଼ିଆ । କୃଷିପ୍ରଧାନ ଦେଶ ଓଡ଼ିଶାରେ ଏହି ଶବ୍ଦଟି ପ୍ରବାଦ ମାଧମରେ ଅନନ୍ତକାଳରୁ ପ୍ରଚଳିତ ।ଯଥା-

'ଗୁଣ୍ଡୁରି ନାଚଇ ଆଶୁଧାନ ପାଚଇ ।।'

ଅର୍ଥାତ୍- ଗୁଣ୍ଡୁରି ବା ଡୁଙ୍ଗେଇ ,ପକ୍ଷାଥିବା କ୍ଷୁଦ୍ର ପୋକ ବିଶେଷ । ଏମାନେ ଶୁଖିଲା ହାଲୁକା ବାଲିଆ ମାଟିରେ ଗାତ କରି ରହନ୍ତି । ଗାତଗୁଡ଼ିକର ଆକାର ଓଲଟା ପିରାମିଡ଼ ପରି । ଆଶୁ ଧାନ ବା ବିଆଳି ଧାନ ଅମଳ ହେଲା ସମୟରେ ( ଭାଦ୍ରମାସରେ ) କେବଳ ଏମାନଙ୍କୁ ଦେଖାଯାଏ । ଏହି ସମୟରେ ଶିଶୁମାନେ ଏହି ପ୍ରବାଦବାକ୍ୟଟି ବୋଲି ଗୁଣ୍ଡୁରିମାନଙ୍କ ସହିତ ଖେଳିବା ଏକ ଉପଭୋଗ୍ୟ ଦୃଶ୍ୟ ।

ଏଥିରୁ ନିଛକ ଭାବରେ ପ୍ରତିପାଦିତ ହେଉଛି ଯେ ଉଭୟ କବି ରତ୍ନଗର୍ଭା ଓଡ଼ିଶାର ଜଣେ ଜଣେ ସିଦ୍ଧ ପୁରୁଷ ଥିଲେ । ତେଣୁ ଚର୍ଯ୍ୟାପଦର ରଚୟିତା ସିଦ୍ଧାଚାର୍ଯ୍ୟଗଣ ଓଡ଼ିଶାର । ତିବ୍ବତୀୟ ବା ବଙ୍ଗବାସୀ ବା ଅସମୀୟା ନୁହଁନ୍ତି । ଏ ସମ୍ପର୍କରେ ଆହୁରି ଆହୁରି ଗବେଷଣା କରିବାକୁ ଓଡ଼ିଆ ସାହିତ୍ୟାନୁରାଗୀମାନଙ୍କୁ ଆବେଦନ ଜଣାଉଛି ।

ସାହିତ୍ୟିକ ରଚନାରେ ବ୍ୟବହୃତ ପ୍ରବାଦମାନଙ୍କରେ ରୂପର ସ୍ଥିରତା ନାହିଁ । କାରଣ ଲେଖକମାନେ ସ୍ୱମତ ଉପସ୍ଥାପିତ କରିବାକୁ ଯାଇ ପ୍ରବାଦଗୁଡ଼ିକୁ ରୂପାନ୍ତରିତ କରିବା ଅସ୍ୱାଭାବିକ ନୁହେଁ । ଏପରିକି କେଉଁଗୁଡ଼ିକ ପ୍ରକୃତରେ ପ୍ରବାଦ ଏବଂ କେଉଁଗୁଡ଼ିକ ଲେଖକଙ୍କର ସ୍ୱରଚିତ, ତାହା ମଧ୍ୟ ସବୁକ୍ଷେତ୍ରରେ ସଠିକ୍‌ଭାବରେ କୁହାଯାଇ ପାରେ ନାହିଁ । କିନ୍ତୁ ଉପର ଉଦ୍ଧୃତ

ବାକ୍ୟଗୁଡ଼ିକର ଅନୁରୂପ ପ୍ରବଚନ ବର୍ତ୍ତମାନ କାଳରେ ମଧ ପ୍ରଚଳିତ ଏବଂ ଏଗୁଡ଼ିକ ଯେ ମୁଖ୍ୟତଃ ଜନଶ୍ରୁତିରୁ ଗୃହୀତ ,ସେଥିରେ ସନ୍ଦେହର ଅବକାଶ ନାହିଁ ।

ପ୍ରାଚୀନ ସାହିତ୍ୟରେ ପ୍ରବାଦର ଯେ ଯଥେଷ୍ଟ ପ୍ରୟୋଗ ରହିଅଛି ,ତାର ସବିଶେଷ ଆଲୋଚନା ନହେଲେ ,ଏଗୁଡ଼ିକର ଲୋକପ୍ରିୟତା ତଥା ପାରମ୍ପରିକ ବ୍ୟବହାର ଓ ପ୍ରାଚୀନ ରୂପ ନିର୍ଣ୍ଣୟ କରିହେବ ନାହିଁ । Oxford Dictionary of English Proverbs ନାମକ ଇଂରାଜୀ ପ୍ରବାଦର ଅଭିଧାନରେ ପ୍ରାୟ ଦଶ ହଜାର ଇଂରାଜୀ ପ୍ରବାଦ ସଂଗୃହୀତ ହୋଇଅଛି ଏବଂ ଇଂରାଜୀ ସାହିତ୍ୟର ଆଦିକାଳଠାରୁ ଆଧୁନିକ ସମୟ ପର୍ଯ୍ୟନ୍ତ ପ୍ରତ୍ୟେକ ପ୍ରବାଦ ବାକ୍ୟ ପ୍ରୟୋଗର ଉଦାହରଣ ଦିଆଯାଇଛି । ସାହିତ୍ୟ ଦୃଷ୍ଟିରୁ ବିଚାର କଲେ ଓଡ଼ିଆ ପ୍ରବାଦର ମଧ ଏହି ଧରଣର ଅଭିଧାନ ସଂକଳିତ ହେବା ଏକାନ୍ତ ପ୍ରୟୋଜନୀୟ । ଏହି ପରିପ୍ରେକ୍ଷୀରେ 'ସାରଳା ରତ୍ନ ଭଣ୍ଡାର ରସସାଗର'' ସଂକଳନଟି କେତେଦୂର ଏହି ପ୍ରୟୋଜନୀୟତାକୁ ପୂରଣ କରି ପାରିବ. ତାହା ବିଜ୍ଞ ପାଠକ ,ଗବେଷକ ଓ ସମାଲୋଚକମାନେ ବିଚାର କରିବେ ।

ପ୍ରାଚୀନ ଓଡ଼ିଆ ସାହିତ୍ୟର କୌଣସି ଯୁଗରେ ପ୍ରବାଦ ବାକ୍ୟର ପ୍ରୟୋଗ ଉପେକ୍ଷିତ ହୋଇ ନାହିଁ। ଏହି ସାହିତ୍ୟର ରଚନା ମୋଟାମୋଟି ଗମ୍ଭୀର ପ୍ରକୃତିର ଥିଲା । ଦେବଦେବୀମାନଙ୍କର ଉପାଖ୍ୟାନ ,କିମ୍ବଦନ୍ତୀ ଓ ଶକ୍ତି ବର୍ଣ୍ଣନା ଅଥବା ବାତ୍ସଲ୍ୟ ,ଭକ୍ତି ଓ ପ୍ରୀତିର ସଙ୍ଗୀତ ମାଧୁର୍ଯ୍ୟରେ ପର୍ଯ୍ୟବସିତ ଥିଲା । ଜନସାଧାରଣଙ୍କର ସାହିତ୍ୟ କହିଲେ ଯାହା ବୁଝାଏ ,ତାହା ମଧରେ ପ୍ରବାଦ ବାକ୍ୟର ଟୁକୁରା ଟୁକୁରା ଖଣ୍ଡଗୁଡ଼ିକ ଇତସ୍ତତଃ ଓ ବିକ୍ଷିପ୍ତ ହୋଇ ଥିବାର ପରିଲକ୍ଷିତ ହୁଏ । କିନ୍ତୁ ପ୍ରାଚୀନ ସାହିତ୍ୟର ଗତି ଓ ପ୍ରକୃତି ଲୌକିକ ପ୍ରବାଦ ଓ କୌତୁକଗୁଡ଼ିକର ଠିକ୍ ଅନୁରୂପ ନଥିଲା । ( ଏହା ସଙ୍କଳୟିତାଙ୍କର ନିର୍ଦ୍ଦେଶିତ ମତ )

ଲୌକିକ ସାହିତ୍ୟର ବାସ୍ତବ ପ୍ରେରଣା,ଆମୋଦ ଓ ରସିକତା ପାଇଁ ପ୍ରବାଦ -ବାକ୍ୟ ଗୁଡ଼ିକ ଅଧିକତର ଆତ୍ମପ୍ରକାଶ କରିଥିଲା । ବାକ୍ୟ-ରୀତିକୁ ସରସ ,ସହଜ ଓ ସତେଜ କରିବା ପାଇଁ ଲୌକିକ ପ୍ରବାଦ ବା ପ୍ରବାଦମୂଳକ ବାକ୍ୟାଂଶ ଆପଣାଛାଏଁ ଆସିବା ସ୍ୱାଭାବିକ ବିସ୍ମୟକର ନୁହେଁ ।

ଅତୀତ ଦିନମାନଙ୍କରେ ନିତାନ୍ତ ଅଚଳ ଚଳନ୍ତି-ଭାଷାର ସପକ୍ଷରେ ଓ ନିତାନ୍ତ ଅସାଧୁ ସାଧୁ -ଭାଷାର ବିପକ୍ଷରେ ଯେଉଁ ସ୍ୱର ଉତ୍ତୋଳନ ତଥା ଆନ୍ଦୋଳନ ଆରମ୍ଭ ହୋଇଥିଲା, ତାହାଦ୍ୱାରା ପ୍ରବାଦ-ବାକ୍ୟର ପ୍ରବେଶ ଦ୍ୱାର ଅବାରିତ ହୋଇଥିଲା । ତତ୍‌ପରବର୍ତ୍ତୀ କାଳରେ ଓଡ଼ିଆ ରସ ସାହିତ୍ୟର ଅଭ୍ୟୁଦୟ ହେଲା । ଯେଉଁଥିରେକି ନିଜସ୍ୱଭାବ ଓ ଭଙ୍ଗୀର ସ୍ୱାଭାବିକ

ସୌନ୍ଦର୍ଯ୍ୟ ଓ ଉପଯୋଗିତାର ପ୍ରଥମ ଉପଲବ୍ଧି ହୋଇଥିଲା । ଏହି ସମୟରେହିଁ ପ୍ରବାଦର ବହୁଳ ପ୍ରଚଳନ ପୁନରାୟ ଆରମ୍ଭ ହେଲା ବୋଲି କୁହାଯାଇ ପାରିବ । ଏହିସବୁ ରଚନାରୁ ଦେଖାଯାଏ ଯେ ଏକାଳ ଠାରୁ ସେକାଳରେ ପ୍ରବାଦଗୁଡ଼ିକର ବହୁଳ ପ୍ରଚଳନ ଥିଲା । କେବଳ ଦୈନନ୍ଦିନ ଜୀବନରେ ନୁହେଁ ସାହିତ୍ୟିକ ନିବନ୍ଧରେ ମଧ୍ୟ ପ୍ରବାଦ ବା ପ୍ରବାଦମୂଳକ ବାକ୍ୟାଂଶ ଓଡ଼ିଆଙ୍କର ଭାବ ଓ ଭାଷାର ଭିତ୍ତିରୂପେ ବିଦ୍ୟମାନ ଥିଲା ।(ଏ ସମ୍ପର୍କରେ ଆଲୋଚନା ପର ଖଣ୍ଡରେ ହେବ ।)

ଓଡ଼ିଆ ସାହିତ୍ୟରେ ଯେଉଁ ଲେଖକମାନେ ନିଜ ରଚନା ମଧ୍ୟରେ ପ୍ରଚୁର ପରିମାଣରେ ପ୍ରବାଦ ବାକ୍ୟ ବା ପ୍ରବାଦମୂଳକ ବାକ୍ୟର ବ୍ୟବହାର କରିଯାଇଛନ୍ତି , ସେମାନେ ନିଛକ କଳ୍ପନାବିଳାସୀ ବା ତତ୍ତ୍ୱଜ୍ଞାନୀ ନଥିଲେ ; ସେମାନେ ଥିଲେ ସଂସାରାଭିଜ୍ଞ, ବାସ୍ତବ-ସଚେତନ,ରସଜ୍ଞଶିଳ୍ପୀ । ବିଦେଶୀଭାବ ଓ ଭଙ୍ଗୀର ଆମଦାନୀ ସତ୍ତ୍ୱେ ଓଡ଼ିଆଙ୍କର ରସସିକ୍ତ ଜୀବନ ଯେ ଓଡ଼ିଆର ଭାବ ଓ ଭାଷା ଠାରୁ ଦୂରରେ ରହିପାରେ ନା , ତାହା ସେମାନେ ବେଶ ଭଲ ଭାବରେ ବୁଝି ପାରିଥିଲେ । ସେମାନେ ଯେଉଁ ଚିତ୍ର ଆଙ୍କୁଥିଲେ, ତାହା ସମ୍ପୂର୍ଣ୍ଣ ଓ ନିଖୁଣ । ସେମାନଙ୍କର ନିଷ୍ଠାପରତା ଏହାକୁ କୃତ୍ରିମ ଓ ଅସ୍ୱାଭାବିକ କରିପାରୁ ନଥିଲା । ତେଣୁ ସେମାନଙ୍କର ଚିତ୍ରପଟରେ ସାଧାରଣ ମନୁଷ୍ୟ,ତାର କଥାଭାଷା, ଭାବଭଙ୍ଗୀ,ଆଚାର ବ୍ୟବହାର ,ଚାଲିଚଳଣ, ଏସବୁ ସହଜ ଓ ସମୂହଭାବେ ପରିସ୍ଫୁଟ ହୋଇଛି । ଏପରିକି ,ସେମାନଙ୍କର ଯଥେଷ୍ଟ ପ୍ରଯୁକ୍ତ ପ୍ରବାଦ-ବାକ୍ୟ ଓ ଚଳନ୍ତି କଥା ମାଧ୍ୟମରେ ସେମାନେ ଯେପରି ଜୀବନ୍ତ ହୋଇ ଉଠିଛନ୍ତି । ଅନେକ ପ୍ରବଚନ ବର୍ତ୍ତମାନର ପରିବର୍ତ୍ତିତ ସମାଜରେ ବହୁଳ ବ୍ୟବହାର ଦ୍ୱାରା ଜୀର୍ଣ୍ଣ ହୋଇଅଛି ସତ, ,ମାତ୍ର ସେତେବେଳେ ସେଗୁଡ଼ିକର ନୂତନତ୍ୱ ଓ ସାର୍ଥକତା ଥିଲା । ଦୃଷ୍ଟାନ୍ତ ସ୍ୱରୂପ ନିମ୍ନୋକ୍ତ ପ୍ରବାଦଗୁଡ଼ିକରୁ ତାର ଯଥାର୍ଥତା ପ୍ରତିପାଦିତ ହୁଏ - **ସଧବାର ଏକାଦଶୀ ,କୃପଣର ଧନ, ଯେମିତି କର୍ମକୁ ସେମିତି ଫଳ ,ହିତେ ବିପରୀତ , ଯେମିତି ରୋଗକୁ ସେମିତି ପଥ୍ୟ , ବୁଢୀ ଶାଳୀର ବୋକରେ ଭ୍ରମ(ବୋକ) ।**

କେବଳ ଦୈନନ୍ଦିନ ଜୀବନରେ ନୁହେଁ ସାହିତ୍ୟିକ ନିବନ୍ଧରେ ମଧ୍ୟ ପ୍ରବାଦ ବା ପ୍ରବାଦମୂଳକ ବାକ୍ୟାଂଶ ଓଡ଼ିଆଙ୍କର ଭାବ ଓ ଭାଷାର ଭିତ୍ତିରୂପେ ବିଦ୍ୟମାନ ଥିଲା ।

(ଏ ସମ୍ପର୍କରେ ଆଲୋଚନା ପର ଖଣ୍ଡରେ ହେବ ।)

ପ୍ରବାଦର ଲୋକପ୍ରିୟତା ପାଇଁ ପ୍ରବାଦବାକ୍ୟ ପ୍ରୟୋଗର ସାର୍ଥକତା ଅନ୍ୟ ଏକ କାରଣ । କିନ୍ତୁ ଆଉ ଗୋଟିଏ ସାଧାରଣ ଓ ବିସ୍ତୃତ କାରଣ ହେଉଛି - ଗତାନୁ

ଗତିକତା । ଯାହା ସହଜରେ ସିଦ୍ଧ ହୁଏ ,ସେଥିପାଇଁ କଷ୍ଟ ସ୍ୱୀକାର କରିବା ମନୁଷ୍ୟର ସ୍ୱଭାବବିରୁଦ୍ଧ । ଜଣେ ଯାହା କହି ଯାଇଛି ଓ ପାଞ୍ଚଜଣଙ୍କ ତୁଣ୍ଡରେ ଯାହା ପ୍ରଚଳିତ ହୋଇ ଆସିଅଛି ,ତାହା ଆପ୍ତବଚନ ବା ଆପ୍ତବାକ୍ୟ (ପ୍ରବଚନ)ରେ ଅନ୍ତର୍ଭୁକ୍ତ ହେଲା । ତାକୁ କାର୍ଯ୍ୟ କ୍ଷେତ୍ରରେ ପ୍ରୟୋଗ କଲେ ତାହା ନିରର୍ଥକ ପୁନରୁକ୍ତି ନୁହେଁ । ତୁଣ୍ଡ କଥା ହେଲେବି ,ଚଳନ୍ତି କଥାର କଦର ବୃଦ୍ଧିପାଏ, ରସ ନିଶ୍ଚିତଭାବରେ ବଢେ ଏବଂ ସେଥିରେ ଅନେକ ସୁବିଧା ପରିଲକ୍ଷିତ ହୁଏ । ପୁରୁଣା କଥା ଆଉଥରେ ନୂଆକରି ଚିନ୍ତା କରିବା ପାଇଁ ଓ ନୂତନ ଭଙ୍ଗୀରେ ପ୍ରକାଶ କରିବା କ୍ଲେଶରୁ ଅବ୍ୟାହତି ମିଳିଥାଏ । ଏପରି ଅନେକ ବିଷୟ ଅଛି, ଯାହା ଭଲ ଭାବରେ ବୁଝାଇବା କଠିନ, ଅଥବା ବୁଝାଇବାକୁ ହେଲେ ଅନେକ ବାକ୍ୟ ବ୍ୟୟ କରିବାକୁ ହୁଏ । ଏପରି କ୍ଷେତ୍ରରେ ଯଦି ହାତମୁଠାରେ ତିଆରି ଦୁଇ ଚାରୋଟି ପ୍ରବାଦ ବ୍ୟାଖ୍ୟା ଥାଏ ଓ ତାହାର ସମର୍ଥ ଓ ସଂକ୍ଷିପ୍ତ ବ୍ୟଞ୍ଜନା କାର୍ଯ୍ୟକାରୀ ହୁଏ, ତେବେ ବହୁ ପରିମାଣରେ ମୁଣ୍ଡ ଖେଳାଇବା ବା ତୁଣ୍ଡ ହଲେଇବାର ପ୍ରୟୋଜନ କ'ଣ ?

ପ୍ରବାଦ ଗଠନର ଭଙ୍ଗୀରେ ଚିନ୍ତା ବା ପ୍ରକାଶ-ପ୍ରୟାସର ବାହୁଲ୍ୟ ନାହିଁ ; ବରଂ ଲୋକମାନ୍ୟାତା ଏହାର ପ୍ରମାଣ । ରୂପକ, ଦୃଷ୍ଟାନ୍ତ ବା ନଜିର ହିସାବରେ ପ୍ରବାଦର ସ୍ୱଦ୍ୟ ଓ ଶକ୍ତିଶାଳୀ ଗୁରୁତ୍ୱ ଏବଂ ହୃଦୟଗ୍ରହୀତା ଲୋକ ପ୍ରତ୍ୟୟର କ୍ଷିପ୍ର ଅସ୍ତ୍ର ହୋଇ ଦଣ୍ଡାୟମାନ ।

ପ୍ରବାଦ ଲୋକପ୍ରିୟତା ଓ ଉପଯୋଗିତା ସତ୍ତ୍ୱେ ଏକଥା ବୁଝିବାକୁ ହେବ ଯେ, ସାହିତ୍ୟରେ ବା ଦୈନନ୍ଦିନ ଜୀବନରେ ପ୍ରବାଦ ଅତ୍ୟଧିକ ଅଥବା ଅବିଚାରିତ ପ୍ରୟୋଗ ସବୁ ସମୟରେ ବାଞ୍ଛନୀୟ ନୁହେଁ । ନିତ୍ୟଦୃଷ୍ଟ ବସ୍ତୁପରି ଯାହା ଚିରାଚରିତ ଜନସ୍ମୃତିରେ ଅତି ପରିଚିତ, ଅଥବା ଭଡ଼ା ଗାଡ଼ିପରି ଯାହା ସାଧାରଣ ଲୋକଙ୍କର କାର୍ଯ୍ୟରେ ନିତାନ୍ତ ଜୀର୍ଣ୍ଣ ଓ ଅବସର୍ଣ୍ଣ, ତାହାର ଚମତ୍କାରିତା କମିଯାଏ । ସଚରାଚର ବ୍ୟବହୃତ ପ୍ରବାଦ ବାକ୍ୟ କାଳକ୍ରମେ ଅକିଞ୍ଚିତ, ତୁଚ୍ଛ ଓ ନିଷ୍ଫଳ ହୋଇଯାଏ ଏବଂ ତାହାର ପ୍ରୟୋଗ ବୁଦ୍ଧିର ନୁହେଁ, ବୁଦ୍ଧିହୀନତାର ପରିଚୟ ଦିଏ । Wisemen make proverbes and fools repeat them ; ଇଂରାଜୀରେ ଏହି ପଦଟି ପ୍ରବାଦ ବାକ୍ୟ ହୋଇଯାଇଛି । ଅଭ୍ୟସ୍ତ ପ୍ରବାଦରେ ଯଥା ତଥା ବ୍ୟବହାରର ମୌଳିକ ଚିନ୍ତା ବା ଭାବ - ପ୍ରକାଶର ପରିଚୟ ଦିଏ ନାହିଁ । ଅକ୍ଷମ ଓ ଅଳସ ମନର ସୁଲଭ ଉପାୟ ବା ଆବରଣ ହୋଇ ଠିଆହୁଏ । ସାହିତ୍ୟ ବା ଶିକ୍ଷା-ବିସ୍ତାରର ଯେଉଁ ଯୁଗରେ ବିଚାର-ବୁଦ୍ଧି, ଚିନ୍ତା-ଶକ୍ତି, ଭାବ-ବହୁଳତା ଅଥବା ସୃଷ୍ଟିର ବୈଚିତ୍ର୍ୟ ଓ ପ୍ରଚୁର୍ଯ୍ୟ ଦେଖାଯାଏ, ସେ ଯୁଗରେ ବାକ୍ୟାଳଂକାର ହିସାବରେ ପ୍ରବାଦର ନିତ୍ୟ-ନୈମିତ୍ତିକ ବା ସାହିତ୍ୟିକ ମୂଲ୍ୟ ଅନେକ ପରିମାଣରେ କମିଯାଏ । ବିଗତ ଶତାବ୍ଦୀ ଯେତେବେଳେ ନୂତନ ଯୁଗର ନୂଆ ଶିକ୍ଷାଦୀକ୍ଷାର ପ୍ରବର୍ତ୍ତନ ହେଲା ଏବଂ ସାହିତ୍ୟିକ ଆଦର୍ଶ ଓ ଶିକ୍ଷିତ ଜୀବନର ମୋଡ଼ ବଦଳି ଗଲା, ସେତେବେଳେ ଓଡ଼ିଆ ସାହିତ୍ୟରେ ଭାବ

ଭଙ୍ଗୀ ନୂଆ ହୋଇ ଗଢ଼ିଉଠିଲା । ବ୍ୟକ୍ତିଗତ ଭାବୁକତା ଓ କଳ୍ପନା ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ଓ ଲୋକସାହିତ୍ୟ ଓ ଲୋକର ବୃହତ୍ତର ଦୈନନ୍ଦିନ ଜୀବନର ପ୍ରଭାବର ଆଉ ସେପରି ଶକ୍ତିଶାଳୀ ହୋଇ ରହିଲା ନାହିଁ । ନିତ୍ୟ ନୂତନ ପ୍ରେରଣାରେ ଅଧିକତର ପ୍ରତିଭାଶାଳୀ ଲେଖକ ବୃନ୍ଦଙ୍କର ନିଜସ୍ୱ ସୃଜନ ଶକ୍ତି ନିତ୍ୟ ନୂତନ ବାକ୍ୟ-ରୀତି ସୃଷ୍ଟି କରିବାକୁ ଲାଗିଲେ । ସେତେବେଳେ ଆଉ ପ୍ରବାଦ ସମୁହର ମାମୁଲି ଭାବ ଓ ଭାଷାର ଅବକାଶ ରହିଲା ନାହିଁ । କଳ୍ପନାର ପ୍ରାଚୁର୍ଯ୍ୟ, ଭାବର ସମୃଦ୍ଧି, ଭଙ୍ଗୀର ନୂତନତ୍ୱ ଓ ଭାଷାର ଯେତେବେଳେ ଉତ୍କର୍ଷତା ଘଟିଲା, ସେତେବେଳେ ପ୍ରଚଳିତ ପ୍ରବାଦ-ବାକ୍ୟର ପୁରାତନ ପ୍ରୟୋଜନ ଲୁପ୍ତ ହେବାକୁ ବସିଲା । ବ୍ୟକ୍ତିର ସ୍ୱତନ୍ତ୍ର୍ୟ ବୋଧ ଫଳରେ ପ୍ରାତ୍ୟହିକ ଜୀବନରେ ମଧ ମନୁଷ୍ୟ ନିଜର ଅଭିଜ୍ଞତା ନିଜେ ହିଁ ଅର୍ଜନ କରିବାକୁ ଚାହେଁ ; ନିଜର ଭାବ, ନିଜ ଭାଷାରେ ବ୍ୟକ୍ତ କରିବା ଶ୍ରେୟସ୍କର ମନେ କରେ । କିନ୍ତୁ ପ୍ରବାଦ ଗୁଡ଼ିକ ଅଚଳ ହୋଇ ଆସିଲେବି ପ୍ରବାଦ ମୂଳକ ବାକ୍ୟାଂଶ ଗୁଡ଼ିକର ସ୍ଥାୟିତ୍ୱ ରହିଯାଏ । ଏବଂ ଭାଷାର ଅସ୍ଥିମଜ୍ଜାଗତ ହୋଇ ତାହାର ସରସ ବାକ୍ୟ-ରୀତିର ଅପରିହାର୍ଯ୍ୟ ଅଙ୍ଗ ହୋଇ ରହିଯାଏ ।

ଏଥିରୁ ଏହାହିଁ ବୁଝାଯିବ ଯେ ପ୍ରତ୍ୟେକ ଯୁଗରେ ଗୋଟିଏ ବିଶିଷ୍ଟ ମନୋଧର୍ମ ଥିଲେ ମଧ ଯେତେବେଳେ ମନୁଷ୍ୟର ମନ ବସ୍ତୁବିଶେଷ ଠାରୁ ଭାବଗତ ସାଦୃଶ୍ୟ ପର୍ଯ୍ୟନ୍ତ ଯାଇ ପହୁଁଚେ ସେତେବେଳେ ତାହା ପ୍ରବାଦର ବ୍ୟବହାରଠାରୁ ଦୂରେଇ ଯାଏ । ଅନ୍ୟ ସାହିତ୍ୟର ଇତିହାସରେ ମଧ ଏହିପରି ଉଦାହରଣ ମିଳିଥାଏ ।

ମଧ୍ୟଯୁଗୀୟ ଇଂରାଜୀ ସାହିତ୍ୟରେ ପ୍ରବାଦ ସମୂହର ପ୍ରବର୍ତ୍ତକ ଥିଲେ ଚସାର ଓ ଏଲିଜାବେଥୀୟ ସାହିତ୍ୟିକ ଗଣ ; କିନ୍ତୁ ସେକ୍ସପିୟର ଓ ମିଲ୍‌ଟନଙ୍କର ଆବିର୍ଭାବ ପରେ ପ୍ରବାଦ ପ୍ରୟୋଗ ଏତେ ଜୀର୍ଣ୍ଣ ଓ ବିସ୍ୱାଦ ହୋଇଯାଇଥିଲା ଯେ ଲର୍ଡ଼ ଚେଷ୍ଟାରଫିଲଡ୍ ତାଙ୍କର ପୁତ୍ରକୁ ଶିଷ୍ଟାଚାର ସର୍ମକରେ ଉପଦେଶ ଦେଇ ଲେଖିଥିଲେ. A man of fashion never has recourse to proverbs and vulgar aphorisms. ସେହିପରି ଆଧୁନିକ କାଳରେ କୌଣସି ଔପନ୍ୟାସିକ ଲେଖିଛନ୍ତି What is all wisdom save a collection of platitudes ? Take fifty of our curent proverbial saying-they are so trite, so threadbare, that we can hardly bring our lips to utter them.

ଆମ ଦେଶରେ ସାହିତ୍ୟର ଆଦର୍ଶ ଓ ରୁଚିର ପରିବର୍ତ୍ତନ ଫଳରେ ଆଧୁନିକ କାଳର ଭାବ-ବିଳାସ ସାହିତ୍ୟରେ ଏପରିକି ରସଚେତନାରେ ମଧ, ପ୍ରବାଦର ବ୍ୟବହାର ବିରଳ ହୋଇଯାଇଛି । କିନ୍ତୁ ବିଗତ ଶତାବ୍ଦୀରେ କେବଳ ସାହିତ୍ୟରେ ନୁହେଁ, ଦୈନନ୍ଦିନ ଜୀବନରେ ମଧ ପ୍ରବାଦର ବହୁଳ ପ୍ରଚଳନ ଥିଲା । ଏପରି ଦିନ ଥିଲା ଯେତେବେଳେ ଆମ ଦେଶର ଝିଅ,

ବୋହୂମାନେ କଥାକଥାକେ ପ୍ରବାଦ-ବାକ୍ୟ ତଥା ଢ଼ଗ-ଢ଼ମାଳି ପ୍ରୟୋଗ କରୁଥିଲେ । କଥାରେ କଥାରେ ପ୍ରବାଦର ଅବତାରଣା ପୁରୁଷ ମାନଙ୍କର ରସିକତାର ଅଙ୍ଗଥିଲା । ବର୍ତ୍ତମାନ ମଧ ବିଗତ ଦିନର କେତେକ ରସିକ ପୁରୁଷ ଅଛନ୍ତି, ଯେଉଁମାନେ ପ୍ରବାଦକୁ ଜୀବନ୍ତ ରଖିଛନ୍ତି । ବର୍ଷୀୟସୀ ମହିଳାଙ୍କ ଛଡ଼ା ଆଜିକାଲି ଯୁବକ ଯୁବତୀ ମାନଙ୍କ ଠାରୁ ଏହା ଶୁଣିବାକୁ ପ୍ରତ୍ୟାଶା କରିବା ବୃଥା । ଏମାନେ ଏସବୁ ପ୍ରବାଦ ପଦମାନ ଜାଣନ୍ତି ନାହିଁ, କିମ୍ୱା ଜାଣିବାର କୌତୁହଳ ମଧ ନାହିଁ ।

ସାଧାରଣତଃ ଜାତୀୟ ଚିନ୍ତନ ଓ ସାହିତ୍ୟର ମୌଳିକତାର ସମ୍ପର୍କରେ ଯାହା କୁହାଯାଇଥିଲେବି ଓଡ଼ିଆ ପ୍ରବାଦ ବଚନ, ଢ଼ଗ-ଢ଼ମାଳି ପ୍ରତି ଓଡ଼ିଆ ମାନଙ୍କର ଅଶ୍ରଦ୍ଧା ବା ଉଦାସୀନତାର କେତୋଟି ବିଶେଷ କାରଣ ରହିଛି । ଅସଂଖ୍ୟ ଓଡ଼ିଆ ପ୍ରବାଦ, ବଚନ, ଢ଼ଗ-ଢ଼ମାଳି ମଧରେ ଓଡ଼ିଆ ମାନଙ୍କର ତୀକ୍ଷ୍ଣ ରସ ବୁଦ୍ଧିର ପରିଚୟ ଯେ ନିହିତ, ତାହା ଆମ୍ଭେମାନେ ଏପର୍ଯ୍ୟନ୍ତ ଜାଣୁନାହୁଁ ବା ବୁଝିପାରୁ ନାହୁଁ ; କାରଣ ଶିକ୍ଷାରେ, ଭାବନା ଓ ଚିନ୍ତାରେ ଆମେ ଓଡ଼ିଆ ହୋଇ ମଧ ଅଣଓଡ଼ିଆ ହେବାକୁ ବସିଲୁଣି । ଆମ୍ଭେମାନେ ନୂଆ ନୂଆ ଆଦବ କାଇଦାରେ ଅଭ୍ୟସ୍ତ ହୋଇଅଛୁ । ନୂତନ ଧରଣର ଭଦ୍ରତା ଶିକ୍ଷା କରିଛୁ । ଚାପା ହସ ଓ ମପା କଥାର କୃତ୍ରିମ ସୌଜନ୍ୟ ଭଙ୍ଗୀ ଆମର ସୁସ୍ଥ ଭାବ ଓ ସବଳ ଭାଷାର ସ୍ୱାଭାବିକ ସ୍ୱଚ୍ଛତାକୁ ସ୍ୱୀକାର କରେ ନାହିଁ । ନିଛକ ମନୋବିଳାସର ମୋହରେ ପଡ଼ି ପ୍ରାଣର ସହଜ ଅନୁଭୂତି ଓ ଆନନ୍ଦ ଟିକକ ପ୍ରାୟ ଭୁଲିଯାଇଛୁ । ସେଥିପାଇଁ ଦିନେ ବିଦେଶୀଶାସନ ବିରୁଦ୍ଧରେ ସ୍ୱଦେଶୀ ଆନ୍ଦୋଳନ କରି ଜାତୀୟ ଭାବ ପ୍ରକାଶ କରି ସ୍ୱଜାତିକୁ ଭଲ ପାଇବାର ଛଳନା କରାଯାଇଛି । ଏହାଫଳରେ ଯେଉଁ ସୂକ୍ଷ୍ମ ସୌଖୀନ ଦେଶ-କାଳ-ନୀରପେକ୍ଷ କଳୋପଯୋଗୀ ବିଳାସୀ ମନୋଭାବ ଆବିର୍ଭାବ ହୋଇଛି, ତାହା ନବଶିକ୍ଷିତ ଓଡ଼ିଆ ମାନଙ୍କର ରସ ଓ ରୁଚିର ଅନୁଭବକୁ ଜନସାଧାରଣଙ୍କର ଜୀବନ ଠାରୁ ଅନେକ ଦୂରକୁ ଠେଲି ଦେଇଛି । ସେ ଜୀବନ ଯେତେ ସତ୍ୟ, ଯେତେ ସ୍ୱାଭାବିକ, ଯେତେ ଆନ୍ତରିକ ହେଉନା କାହିଁକି, ଆଧୁନିକ ସଭ୍ୟତା ଭଦ୍ରସମାଜରେ ତାହାର ଗ୍ରମ୍ୟତା ଓ ଅର୍ଦ୍ଧନଗ୍ନତାର ସ୍ଥାନ ନାହିଁ ।

ବିଗତ ଯୁଗରେ ଓଡ଼ିଆମାନଙ୍କର ଦେହ ଓ ମନର ସ୍ୱାସ୍ଥ୍ୟ ଅତୁଟ ଥିଲା । ତେଣୁ ସେମାନଙ୍କର ବଳିଷ୍ଠ ଉପଲବ୍ଧିରୁ ସହଜ ଜୀବନର ସ୍ୱାଭାବିକ ଗ୍ରାମ୍ୟତାର ଆବିଷ୍କାର ଭୟ ଓ ଲଜ୍ଜାର କାରଣ ନଥିଲା । ପ୍ରାଣ ଥିଲା ବୋଲି ସେମାନେ ପ୍ରାଣ ଖୋଲି ହସି ପାରୁଥିଲେ ଏବଂ ସେମାନଙ୍କର ସ୍ୱତଃସ୍ଫୁର୍ତ୍ତ ପ୍ରାଣର ଆନନ୍ଦ ସୂକ୍ଷ୍ମ ବା କୃତ୍ରିମ ରୁଚିପୂର୍ଣ୍ଣ ଥିଲା ।

ଥେଣ୍ଡାମି, ନୁଙ୍ଗୁରାମୀ ବା ଭଣ୍ଡାମୀ ରସିକତା ନୁହେଁ ; କିନ୍ତୁ ଯାହା ଓଡ଼ିଆର ଜୀବନରେ ସ୍ୱତଃସିଦ୍ଧ ଓ ନିଜସ୍ୱ ବୈଶିଷ୍ଟ୍ୟ, ଯାହା ତାହାର ଚିରନ୍ତନ ଭାବଭଙ୍ଗୀ, ଚାଲିଚଳଣ, ରୀତିନୀତିରେ

ସ୍ୱାଭାବତଃ ଅନୁକୂଳ ଓ ଉପଯୋଗୀ, ଓଡ଼ିଆଙ୍କର ସେଇ ପ୍ରାଣଖୋଲା କଥାବାର୍ତ୍ତା ଓ ଜୀବନଯାତ୍ରାର ଅନାଡ଼ମ୍ବର ପ୍ରଣାଳୀ ଆଜିକାଲି ବିଜାତୀୟ ଶିଷ୍ଟାଚାରର କୃତ୍ରିମ ଓ ପ୍ରାଣଶୂନ୍ୟ ଆବରଣରେ ଚାପିହୋଇ ଯାଇଛି । ଚିରସ୍ଥାୟୀ ବ୍ୟଙ୍ଗ, ଛଟା ବା କଟାକ୍ଷ ଦେହ ଓ ମନର ସଂଯୋଗ ରଖୁଥିଲା, କିନ୍ତୁ ତାହା ବର୍ତ୍ତମାନ ବୁଦ୍ଧିହୀନ, ନିର୍ଜ୍ଜୀବ ଓ ଅସାର ହେବାକୁ ବସିଛି । ପୂର୍ବକାଳରେ ଭାବଭଙ୍ଗୀ, ହାସ୍ୟ, କୌତୁକ ସବୁ ଯେ ଉତ୍ତମ ଥିଲା ତାହା କହିବା ଠିକ୍ ନୁହେଁ । କିନ୍ତୁ ସେ କାଳର ଥଟ୍ଟା ତାମସା, ରଙ୍ଗ, ଶ୍ଳେଷ, ଗାଳିଗୁଲଜ, ଏପରିକି ଆଦିରସାତ୍ମକ ଉକ୍ତି ମଧ୍ୟରେ ବି ଗୋଟାଏ ସ୍ୱାଭାବିକ ସରଳ ଓ ନିଛକ ଓଡ଼ିଆ ସ୍ୱର ଥିଲା, ଯାହା ଆଧୁନିକ ଭାବ ଗଦ୍‌ଗଦ ବିଲାତି-ଓଡ଼ିଆ ସ୍ୱର ମଧ୍ୟରେ ଆତ୍ମପ୍ରକାଶ କରିପାରୁ ନାହିଁ । ସେଇ ଟିକକ ଥିଲା ଓଡ଼ିଆ ପ୍ରାଣର ବାସ୍ତବତା । ବର୍ତ୍ତମାନ କାଳରେ ଏହି ସୁସ୍ଥ ପ୍ରାଣ ଧର୍ମର ସହଜ ରସ ଜ୍ଞାନ ପରିବର୍ତ୍ତେ ଆମ୍ଭେମାନେ ମାର୍ଜିତ ରୁଚିର ଶୁଚି-ବାଇ ଗ୍ରସ୍ତ ହୋଇ ପଡ଼ିଛୁ । ପରତୁଣ୍ଡରେ ଖାଇଲା ଭଳି, ପୂର୍ବକାଳର ପୋଥିପଢ଼ା ସଂସ୍କୃତି ଓ ଚର୍ଚ୍ଚାର ଉତ୍ତାପରେ ଆମ୍ଭେମାନେ ଆଜି ଅତୀନ୍ଦ୍ରିୟ ରସର ରସିକ ହୋଇଛୁ, ମାତ୍ର ବାସ୍ତବ ରସିକତାର ଅର୍ଥ ଯେ କ'ଣ ତାହା ବୁଝାଇ ଦେବାକୁ ପଡୁଛି । ଭାବ ସର୍ବସ୍ୱ ସାହିତ୍ୟ ମଧ୍ୟ ଦେଇ ଯେଉଁ ନୂତନ ଯୁଗ ମାର୍ଜିତ ରୁଚିର ପ୍ରବର୍ତ୍ତନ କରିଛି, ତାହା ଉତ୍କଟ ରୁଚିର୍ବାଗୀଶତାରେ ଆସି ପହଞ୍ଚିଥିବାରୁ ଅନେକ ଏହାକୁ ବ୍ରାହ୍ମମନୋଭାବର ଯୁଗ ବୋଲି ଆଖ୍ୟାୟିତ କରନ୍ତି କାରଣ ଏହି ଯୁଗର ଆଧିପତ୍ୟ ବିସ୍ତାର କାଳରୁ ଯେ ଆମ୍ଭ ମାନଙ୍କର ରୁଚିକେତନ ଯେ ଶୀର୍ଷରେ ଉଡୁଛି ତାହା ଅସ୍ୱୀକାର କରାଯାଇ ପାରିବନାହିଁ ।

ଏହି ପରି ମନୋଭାବଜନିତ ଉଦ୍‌ଭୁତ ପରିସ୍ଥିତି ମଧ୍ୟରେ ଓଡ଼ିଶାର ନିଜସ୍ୱ ପ୍ରବାଦ, ବଚନ ଗୁଡ଼ିକ ଯେ ଲୁପ୍ତ ପ୍ରାୟ ହୋଇଯିବ, ଏହା ସହଜରେ ଅନୁମାନ କରାଯାଏ । ଏ ଗୁଡ଼ିକ ଦିନେ ସମ୍ପୃକ୍ତ ସମାଜର ଓ ସବୁଶ୍ରେଣୀର ସମ୍ପଦ ଭାବେ ପରିଗଣିତ ହେଉଥିଲା । ପୁରାତନ ହେଲେବି ଅପରିବର୍ତ୍ତନୀୟ - ପୁରାତନ । ଯେଉଁମାନେ ଏ ଗୁଡ଼ିକରେ ବାସ୍ତବ ଜୀବନର ଅନୁଭବ କରିଥିଲେ, ସେମାନେ ଏ କାଳର ନୁହଁନ୍ତି, ସେ କାଳର ବି ନୁହଁନ୍ତି, ସର୍ବକାଳର ଓଡ଼ିଆ । ଯେପରି ସଙ୍ଗୀତରେ, ଉପାଖ୍ୟାନରେ ଓ କାବ୍ୟକବିତାରେ, ସେହିପରି ପ୍ରବାଦ ଗୁଡ଼ିକ ମଧ୍ୟରେ ଓଡ଼ିଆର ମୌଳିକତା ନାନା ରୂପରେ ,ନାନାଭଙ୍ଗୀରେ ଫୁଟି ଉଠିଅଛି । ଏହାର ମର୍ମ ଗ୍ରହଣ କରିବାକୁ ହେଲେ ଓଡ଼ିଆ ହୋଇ ଓଡ଼ିଆକୁ ବୁଝିବାକୁ ହେବ । ଏହାର ରସ-ପ୍ରେରଣାରୁ ଆସିଛି ଦେଶର ପାଣି ,ପବନ ଏବଂ ଜାତିର ଜୀବିତ ଚେତନା ମାଧ୍ୟମରେ, ଉଚ୍ଚ ଭାବୁକତା ଓ କଳ୍ପନା ବ୍ୟତିରେକରେ ମଧ୍ୟ ଏଗୁଡ଼ିକ ରସ୍-ସଂଯୁକ୍ତ । କାରଣ ଯାହା ଅସ୍ଫୁଟ ଓ ଅତୀନ୍ଦ୍ରିୟ ତାହା ନୁହେଁ ; ଯାହା ପ୍ରକୃତ ଓ ପ୍ରତ୍ୟକ୍ଷ ଓଡ଼ିଆର ସେଇ ରସ-ଜୀବନହିଁ ଏଗୁଡ଼ିକରେ ରୂପାନ୍ତରିତ ହୋଇଛି ।

କିନ୍ତୁ ଓଡ଼ିଆ ଜୀବନରେ ଏଇ ସନାତନ ସଂସ୍କାର ଓ ସଂସ୍କୃତି ସହିତ ସମ୍ପର୍କ ହରାଇ ବର୍ତ୍ତମାନ ଶିକ୍ଷିତ ଓଡ଼ିଆ ସଂପ୍ରଦାୟ ତାହାର ମୌଳିକତା ଟିକକକୁ ମଧ ହରାଇଛି । ଶସ୍ତାରେ ପରର ଧନରେ ବଡ଼ଲୋକି କରିବାକୁ ଯାଇ ନିଜର ଘର ପୁଞ୍ଜି କଥା ଭୁଲି ଯାଇଛି । ସୁତରାଂ ଓଡ଼ିଆର ଚିରନ୍ତନ ପ୍ରବାଦ ,ବଚନ ଗୁଡ଼ିକ ମଧ ଯେ ଲୁପ୍ତପ୍ରାୟ ,ସେଥିରେ ବିସ୍ମିତ ହେବାର କିଛି ନାହିଁ ; ଦୁଃଖିତ ହେବାରେ ଯଥେଷ୍ଟ କାରଣ ଅଛି ।

ଏପରି ମନୋଭାବର ଆଉ ଗୋଟିଏ ଆନୁଷଙ୍ଗିକ କାରଣ ଅଛି ।- ପ୍ରବାଦ-ବାକ୍ୟଗୁଡ଼ିକ ଯେଉଁ ଜୀବନ୍ତ ଭାଷାରେ ରଚିତ , ସେ ଭାଷା ଆମ୍ଭେମାନେ ପ୍ରାୟ ଭୁଲିଯାଇଛୁ । ସେ ଭାଷାରେ ରସ ଓ ରହସ୍ୟ ବର୍ତ୍ତମାନ ଆଉ ସେପରି ଆସ୍ୱାଦନ କରି ହେଉ ନାହିଁ । ଆଧୁନିକ ଅଭିଜାତ ସାହିତ୍ୟର ବା ଜୀବନର ଯେଉଁ ଭାଷା, ତାହା ଯାହା ହେଉନା କାହିଁକି , ଓଡ଼ିଆଙ୍କର ସନାତନ ଓଡ଼ିଆ ନୁହେଁ । ଯେଉଁମାନେ ଏହି ଅଧୁନାତନ ଭାଷାର ଅଧିକାରୀ ,ସେମାନେ ସ୍ପର୍ଦ୍ଧା କରିଥାଆନ୍ତି ବିଶ୍ୱସାହିତ୍ୟର ଛାୟାରେ ସୃଷ୍ଟ ସେମାନଙ୍କ ର ଅତୀନ୍ଦ୍ରିୟ -ରସଗ୍ରାହୀ ଯେଉଁ ବିଶ୍ୱଭାଷା, ତାହାର କୌଣସି ଭୌଗୋଳିକ ପର୍ଦା ନାହିଁ ,ଜାତିଗତ ସଂସ୍କୃତିର ସଂସ୍କାର ନାହିଁ , ରୀତି ବିଶୁଦ୍ଧିର ବଡ଼ିମା ନାହିଁ । ସୁତରାଂ ଓଡ଼ିଆ ଭାଷାର ନିଜସ୍ୱ ବାଣୀଭଙ୍ଗୀ ଅଥଚ ଏହାର ବହୁ ସାଧନାଲବ୍ଧ ଚିରାଗତ ରୂପ ଓ ରସର କୌଣସି ଖବର ରଖିବା ବା ଆୟତ୍ତ କରିବାର ପ୍ରୟୋଜନୀୟତା, ସେମାନେ ସ୍ୱୀକାର କରନ୍ତି ନାହିଁ । ଏହା ସତ୍ୟ ଯେ ଲେଖକ ବିଶେଷର ବ୍ୟକ୍ତିଗତ ଭାଷାର ରୀତି ତାହାର ବିଶିଷ୍ଟ ପରିକଳ୍ପନା ବା ଅନ୍ତର୍ଗତ ଭାବ-ପ୍ରବାହ ଉପରେ ନିର୍ଭରଶୀଳ ; କିନ୍ତୁ ଏକଥା ବି ଅସ୍ୱୀକାର କରିହେବ ନାହିଁ ଯେ ଭାଷାର ସାଧାରଣ ଭାବ - ପ୍ରକାଶର ଯେଉଁ ପଦ୍ଧତି ,ବାକ୍ୟରୀତିର ଯେଉଁ ଚିରନ୍ତନ ଭଙ୍ଗୀ ,ତାହାର ଗୁପ୍ତମୂଲ୍ୟ କେବଳ ବ୍ୟକ୍ତିର ମନୋଭୂମିରେ ନୁହେଁ ,ଜାତିର ରସଚେତନା ମଧରେ ବି ବିସୃତ ।

ପ୍ରତ୍ୟେକ ଭାଷାର ଗୋଟିଏ ସନାତନ ଓ ସାର୍ବଜନୀନ ବୈଶିଷ୍ଟ୍ୟ ଅଛି , ଇଂରାଜୀରେ ଯାହାକୁ genius ବା ଭାବ- ପ୍ରକୃତି କହନ୍ତି । ଭାଷାର ଏହି ସ୍ୱଭାବଧର୍ମର ନିଖୁଣ ଲକ୍ଷଣ ନିର୍ଦ୍ଦେଶ କରି ହୁଏ ନାହିଁ। କାରଣ ଏହା ଯୁଗେ ଯୁଗେ ବହୁ ମନୀଷୀଙ୍କ ସାଧନାର ବୈଚିତ୍ର୍ୟରେ ପରିପୁଷ୍ଟ । ଏହା କେବଳ ବ୍ୟାକରଣ ,ଅଭିଧାନ ବା ଅଳଙ୍କାର ହିସାବରେ ଶବ୍ଦବିନ୍ୟାସରେ ପର୍ଯ୍ୟବସିତ ନୁହେଁ। ଏହା ଜାତିର ଆତ୍ମଚୈତନ୍ୟ ଉପରେ ପ୍ରତିଷ୍ଠିତ ,ତାହାର ସ୍ୱକୀୟ ଚିନ୍ତାଧାରା, ରୀତି -ନୀତି ,ଚାଲିଚଳନ ,ଭାବ -କଳ୍ପନାର ସ୍ୱତଃସିଦ୍ଧ ପ୍ରକାଶ-ପଦ୍ଧତି ।

ଓଡ଼ିଆ ଭାଷାର ମଧ ଏହିପରି ଗୋଟିଏ ବିଶିଷ୍ଟ ଭଙ୍ଗୀ ଅଛି । ଯାହାଦ୍ୱାରା କେବଳ

ବ୍ୟକ୍ତିଗତ ଭାବନା ନୁହେଁ ,ସମଷ୍ଟିଗତ ପ୍ରାଣର ଚେତନା ବି ନିଜ ସ୍ୱରୂପ ଧାରଣ କରିଥାଏ । ସାଧୁ ବା କଥିତ ଭାଷାର ପ୍ରଶ୍ନ ନିରର୍ଥକ ,କାରଣ ଯାହା ଓଡ଼ିଆର ପ୍ରାକୃତ ଭାଷା, ତାହା ସାଧୁଭାଷା କିମ୍ବା କଥିତ ଭାଷା ନୁହେଁ ; ତାହାହିଁ ଏହାର ଏକମାତ୍ର ସୁସ୍ଥ-ସୁନ୍ଦର-ଜୀବନ୍ତ ଭାଷା । ଏହାର ସ୍ୱାଭାବିକ ପ୍ରକାଶଧର୍ମର ଓ ଐତିହାସିକ ପରିଣତିର ସହଜ ବିକାଶ ।

ଓଡ଼ିଆ ଜାତିର ରସଚେତନା ଉପରେ ଓଡ଼ିଆ ଭାଷାର ଏକ ଅଧୁନା -ବିରଳ ପ୍ରକାଶ ପଦ୍ଧତି ପ୍ରତିଷ୍ଠିତ । ତାହାର ଏକ ବିଶିଷ୍ଟ ରୂପ ଆମ୍ଭେମାନେ ମାଳମାଳ ଓଡ଼ିଆ ପ୍ରବାଦ ,ବଚନ ମଧ୍ୟରେ ଦେଖିବାକୁ ପାଇଥାଉଁ । ଏହା ଏତେ ସହଜ ଓ ସ୍ୱଭାବସିଦ୍ଧ ଯେ ଅସଂଖ୍ୟ ପ୍ରବାଦ ବା ପ୍ରବାଦର ଛୋଟିଆ ଛୋଟିଆ ଓଡ଼ିଆ idiom ବା ବାକ୍ୟରୀତିରେ ଅବାଧରେ ମିଶିଯାଇ ଭାଷାର ଭିତ୍ତିଭୂମି ଗଠିତ କରିଅଛି । ସେଥିପାଇଁ ଭାଷା ଦିଗରୁ ବିଚାର କଲେ ଏହି ପ୍ରବାଦ,ବଚନ ସମୂହର ଯଥେଷ୍ଟ ମୂଲ୍ୟ ରହିଛି । ବିଗତ କାଳରେ ଯେଉଁମାନେ ଓଡ଼ିଆ ସାଧୁଭାଷାର ସ୍ୱର ଉତ୍ତୋଳନ କରିଥିଲେ ,ସେମାନେ ସଂସ୍କୃତର ମୋହରେ ପଡ଼ି ଏହାଠାରୁ ଦୂରେଇ ଯାଇ ଗୋଟିଏ ଅଶ୍ରଦ୍ଧେୟ ଓ ଅସାଧୁ ଭାଷା ସୃଷ୍ଟି କରିଥିଲେ ।

ଅଧିକ ଅଜ୍ଞତା ହେତୁ ଅଥବା ନୂତନ ଶିକ୍ଷାର ପ୍ରବଳ ମୋହରେ ଆଧୁନିକ ଶିକ୍ଷିତ ନାମଧେୟ ନାଗରିକମାନେ ପ୍ରବାଦ, ବଚନର ସନାତନ ଭାଷାକୁ ଗ୍ରାମ୍ୟତା ଦୋଷ-ଦୁଷ୍ଟ ବୋଲି ମନେ କରନ୍ତି ଏବଂ ଏହାର କୌଣସି ଆଭିଜାତ୍ୟ ନାହିଁ ବୋଲି କହନ୍ତି । ସେମାନଙ୍କର ଧାରଣା ଯେ ଓଡ଼ିଆ ପ୍ରବାଦ ବାକ୍ୟଗୁଡ଼ିକ ସମାଜର ନିମ୍ନସ୍ତରକୁ ଚାଲିଯାଇଛି , ଶିକ୍ଷିତ ଲୋକମାନଙ୍କ ମୁହଁରେ ସେ ସବୁ ଶୋଭା ପାଏ ନାହିଁ କିନ୍ତୁ ସେମାନେ ଏକଥା ଜାଣନ୍ତି ନାହିଁ ବା ମାନନ୍ତି ନାହିଁ ଯେ ଜାତିର ଭାଷା ଓ ଜୀବନ ପରସ୍ପର ବିଚ୍ଛିନ୍ନ ହୋଇ ରହିପାରେ ନାହିଁ । ଆଧୁନିକ ତଥାକଥିତ ସଂଭ୍ରାନ୍ତ ସାହିତ୍ୟର ଭାଷାରେ ମନର ସୌଖିନତା ଅଛି ,କିନ୍ତୁ ଜୀବନର ସ୍ପନ୍ଦନ ନାହିଁ । ଓଡ଼ିଆ ପ୍ରବାଦର ଭାଷା ସେଇ ସ୍ପନ୍ଦନରେ ସ୍ପନ୍ଦିତ , ଯାହା ଓଡ଼ିଆଙ୍କର ବାସ୍ତବ ଜୀବନର ନିଜସ୍ୱ । ଏହାର ଆଭିଜାତ୍ୟ ପରମୁଖାପେକ୍ଷୀ ଭଦ୍ରତାନୁକରଣ ନୁହେଁ ,ଜାତି-ପ୍ରାଣର ପରମ୍ପରାଗତ ସମ୍ପଦ୍ ଉପରେ ପ୍ରତିଷ୍ଠିତ । ବିଜାତୀୟ ଭାବ ଓ ଭଙ୍ଗୀର ପାଗରେ ପ୍ରସ୍ତୁତ ଅଥବା ଇଂରାଜୀ ତର୍ଜମା କରାଯାଇଥିବା ଅତି ଆଧୁନିକ ଭାଷାରେ ଯେଉଁମାନେ ଅଭ୍ୟସ୍ତ, ସେମାନେ ଏହାର ମର୍ମ ଗ୍ରହଣ କରି ପାରନ୍ତି ନାହିଁ । ତତ୍ ସଙ୍ଗେସଙ୍ଗେ ଏହାର ମର୍ଯ୍ୟାଦା ମଧ୍ୟ ବୁଝନ୍ତି ନାହିଁ ।

ବିଦେଶୀ ଓ ପ୍ରତିବେଶୀ ସଂସ୍କୃତିର ଧାସ ଆଧୁନିକ ଶିକ୍ଷିତ ଓଡ଼ିଆମାନଙ୍କର ଏପରି ମଜ୍ଜାଗତ ହୋଇଗଲାଣି ଯେ ,ସେମାନେ ଏକ ଗୌଣ ଏବଂ ସଂକୀର୍ଣ୍ଣ ମନୋବୃତ୍ତିର ଶିକାର ହୋଇ ନିଜ ସଂସ୍କୃତି ଓ ସାହିତ୍ୟର ସ୍ଥିତିକୁ ସ୍ୱୀକାର କଲେ ନାହିଁ ; ଅଧିକନ୍ତୁ ସେମାନଙ୍କ ତୁଣ୍ଡରେ

ଆଧୁନିକତା ନାମରେ ଓଡ଼ିଶାର ସଂସ୍କୃତି ହେୟ, ଅପରିପକ୍ୱ ଓ ଅବାଞ୍ଛିତ ହୋଇଗଲା ।

ତେଣୁ ବ୍ୟାସକବି ଫକୀରମୋହନ ଇଂରେଜୀ ପଢୁଆ ଓଡ଼ିଆ ବାବୁମାନଙ୍କୁ ବ୍ୟଙ୍ଗ ବିଦ୍ରୂପ କରି ଲେଖିଥିଲେ -

''କେତେ ବାବୁମାନଙ୍କର ଦେଖିଛି ଦୁର୍ଦ୍ଦଶା,
ଲାଜମାଡ଼େ କହିବାକୁ ନିଜ ମାତୃଭାଷା ।
ଓଡ଼ିଆ ଏଗାର ପଣି ବାକି ଇଙ୍ଗରେଜୀ
ଅଦ୍ଭୁତ ଖେଚୁଡ଼ି ଏକ ହୁଏ ମିଶି ସାଜି ।
ଭଲ ଗୋଟେ ମାତୃଭାଷା କିସ ହେବ ଭାଇ
ଚଳିଯାଉଅଛି   କାମ ଲୁଣ୍ଡାଇ ପୁଣ୍ଡାଇ
କୁକୁର କିପାଇଁ ଗୋଟେ ବନାଇବ ଘର
ଚାଟିବୁଲେ ବାରମିଶା ଅଇଣ୍ଠା ପତର ।''

ଏଇଥିପାଇଁ  କବି ବିଛନ୍ଦ ଚରଣ ପଟ୍ଟନାୟକ ବ୍ୟଥିତ କଣ୍ଠରେ ଗାଇଥିଲେ ;-

ଗାଉଛି ଉତ୍କଳୀ ପର ସଙ୍ଗୀତ
ନ ଜାଣୁଛି ନିଜେ ନିଜର ବିତ୍ତ ।

ପ୍ରବାଦ ,ବଚନଗୁଡ଼ିକର ଭାଷା ମାର୍ଜିତ ଓ ଭଦ୍ର ସମାଜର ଉପଯୋଗୀ ନୁହେଁ ବୋଲି ଯେଉଁ ଉପେକ୍ଷାର ପ୍ରବୃତ୍ତି ଦେଖାଯାଇଥାଏ ,ତାର ମୂଳରେ ରହିଛି ଏଇ ବିକୃତ,ବିଜାତୀୟ - ଭାବାପନ୍ନ ଭଦ୍ରତାନୁକାରୀ ମନୋଭାବ । ଏହି ଭାଷାର ସ୍ଥାନ-କାଳୋପଯୋଗୀ ସରସତା ଓ ସ୍ୱତଃସ୍ଫୂର୍ତ୍ତ ସରଳତାକୁ ଯେଉଁ ସବୁ ଉତ୍କର୍ଷ-ପନ୍ଥୀ  ବାଗୀଶଗଣ ଗ୍ରାମ୍ୟତାର ନାମାନ୍ତର ବୋଲି ମନେ କରନ୍ତି ,ସେମାନେ ସମ୍ପୂର୍ଣ୍ଣଭାବେ ଭୁଲିଯାଆନ୍ତି ଯେ  ବାସ୍ତବ ପରାୟଣତା ଏହାର ଗୁଣ - ଦୋଷ ନୁହେଁ । ଭାଷାର ଅସଂଯମ ଭାବର ପ୍ରାବଲ୍ୟହିଁ ଏହା ସୂଚିତ କରିଥାଏ ,କାରଣ ଏହି ବଳିଷ୍ଠ ଓ ରସାଳ ଭାଷାର ଜନ୍ମ ହୋଇଛି ଜାତିର ଅତି-ଜାଗ୍ରତ ଓ ବାସ୍ତବ -ଅନୁଭୂତିର ସ୍ୱାଭାବିକ ରସ ପ୍ରେରଣା ମାଧ୍ୟମରେ ବା ମଧ୍ୟରେ । ହୁଏତ ବଚନ ତଥା ପ୍ରବାଦର ପଦାବଳୀ ସ୍ୱରୂପ  ଆହୁରି ସୂକ୍ଷ୍ମ ଓ ମାର୍ଜିତ କରି କୁହାଯାଇ ପାରିଥିଲେ ସେଗୁଡ଼ିକ ଏତେଟା ଖାଣ୍ଟି ହୁଅନ୍ତା ନାହିଁ । ''ଖାଣ୍ଟି' ଶବ୍ଦର ଅର୍ଥ ବୋଇଲେ ଆମେ ଏଇୟା ବୁଝୁ ଯେ- ଏହି ଭାଷା ଓଡ଼ିଆର ଅନ୍ତଃପୁର, ହାଟ-ବଜାର,ବାଟ-ଘାଟର ଭାଷା ; ଏହାର ପ୍ରକାଶଭଙ୍ଗୀ ଓଡ଼ିଆର ନିଜସ୍ୱ ସଂସ୍କାର ଓ ସଂସ୍କୃତିର ସ୍ୱାଭାବିକ ପଦ୍ଧତି । ଭେଜାଲ ତଥା ଜାଲିଆତି ଯୁଗରେ ଖାଣ୍ଟି କିମ୍ବା ସତ୍ୟର ଆଦର ନାହିଁ । ଭାବ-ଭଙ୍ଗୀରେ ,ବର୍ଣ୍ଣନାରେ ସର୍ବତ୍ର କୃତ୍ରିମତାର ଏକାନ୍ତ ଅଭାବ ହେଉଛି ଆମ ଭାଷାର

ଗୋଟିଏ ପ୍ରଧାନ ଗୁଣ । ଏହା ମଧ୍ୟରେ ଅଯଥା ଘୃଣା ,କୁତ୍ସା ,ଅବଜ୍ଞା ବା କୃତ୍ରିମଭାବ-କଳ୍ପନାର ସୂକ୍ଷ୍ମ ଶିଷ୍ଟାଚାର ନାହିଁ । ଆଧୁନିକ ମାପକାଠିରେ ଅଶିଷ୍ଟ ଓ ଅମାର୍ଜିତ ହେଲେ ମଧ୍ୟ , ଏହା ପ୍ରତ୍ୟକ୍ଷ ଅନୁଭୂତିର ଫଳ ଏବଂ ଭାଷାର ପ୍ରକୃତିଗତ ସହଜ ସାମର୍ଥ୍ୟରେ ସ୍ୱଚ୍ଛ ଓ ସ୍ୱଚ୍ଛନ୍ଦ ।

ଆଜିକାଲି ଆମ୍ଭେମାନେ ସଭ୍ୟ ବୋଲାଉଛୁ ବୋଲି ସହଜ କଥା ସହଜ କରି କହି ପାରୁ ନାହୁଁ । କୃତ୍ରିମ ସଭ୍ୟତାର ଗୋଟିଏ ଅଙ୍ଗ ହେଉଛି ବାହାରର ଚାକଚକ୍ୟ । ଭିତରେ ହାଣ୍ଡି ମାଙ୍କଡ଼ ଚିତ୍ ମାରିଲାଣି ଅଥଚ ବାହାରେ ଲମ୍ୱାକୁଞ୍ଚ ଝୁଲୁଥିଲେ ହେଲା । ଭାଷାଗତ କୁରୁଚିରେ ଆମ୍ଭେମାନେ ଶିହରି ଉଠୁ ,କିନ୍ତୁ ଭାବଗତ କୁରୁଚି ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ , ଆକାର ଓ ଇଙ୍ଗିତରେ ଗୋପନ ବିଷବିସର୍ପ ପରି ଓତଃପ୍ରୋତ ଭାବେ ଜଡ଼ିତ ରହିଲେ ଆମ୍ଭମାନଙ୍କର ରୁଚିରେ ବ୍ୟାଘାତ ସୃଷ୍ଟି ହୁଏ ନାହିଁ ।

ସେକାଳର ରସିକତା ,ଓଡ଼ିଆଙ୍କର ଭାଗବତ ଟୁଙ୍ଗୀ ,ମେଳନ ପଡ଼ିଆ,ଦୋଳିଖେଳ ତୋଟା, ଅନ୍ୟ ରସ ମଧ୍ୟରେ ବା ପଛରେ , ଅନେକ ସମୟରେ ଉଲଗ୍ନତା ପ୍ରକାଶ ପାଉଥିଲା, ଅଥବା ସମାରୋହରେ ନାଚୁ ନାଚୁ ଉଲଗ୍ନ ହେଉଥିଲେ । କିନ୍ତୁ ଆଜିକାଲିର ରୁଚିସମ୍ମତ ରସିକତା,ବିନୟାଭିମାନୀ ସୂକ୍ଷ୍ମାଚାର -ନିଷ୍ଠତାର ଆବରଣରେ ଡ୍ରଇଂରୁମର ଆଦବ କାଏଦାର ଗୂଢତାରେ, ଅର୍ଦ୍ଧନଗ୍ନତାର ଭଙ୍ଗୀ ଓ ଇଙ୍ଗିତରେ ଲୋଭୟିତ୍ରୀ ବିଷକନ୍ୟାର ମୋହିନୀ ମୂର୍ତ୍ତିଧାରଣ କରିଅଛି । ପ୍ରବାଦରେ ପରିହାସ କରି ଯାହା କୁହାଯାଇଛି ତାହା ହେଲା-

**ସଭିଙ୍କୁ ଜଣା ସବୁ ତତ୍ତ୍ୱ, ବସନ ଖଣ୍ଡିକ ମଧ୍ୟସ୍ଥ ।**

କିନ୍ତୁ ଆଧୁନିକ ସଭ୍ୟତା ବସନ ଖଣ୍ଡିକ ନୁହେଁ ,ବସନର ଭଗ୍ନାଂଶ ଟିକକ କିପରି ଭାବରେ ମଧ୍ୟସ୍ଥି କରେ, ତାହା ସର୍ବଜନବିଦିତ ।

ଆଧୁନିକ ଭଦ୍ରସମାଜରେ ଓ ଭଦ୍ରସାହିତ୍ୟରେ ଓଡ଼ିଆ ପ୍ରବାଦ,ବଚନଗୁଡ଼ିକ ପ୍ରତ୍ୟକ୍ଷଭାବରେ ନିନ୍ଦିତ ନହେଲେ ମଧ୍ୟ ପରୋକ୍ଷ ଭାବରେ ଉପେକ୍ଷିତ ହୋଇଅଛି । କିନ୍ତୁ ପ୍ରବାଦର ଯାହା ସାର ଓ ବୈଚିତ୍ର୍ୟ ,ତାହା ରସବୋଧହୀନ କାଳଧର୍ମରେ ବିସ୍ୱାଦ ବା ବିତାଡ଼ିତ ହେଲେ ମଧ୍ୟ କେବେ ବି ସମ୍ପୂର୍ଣ୍ଣ ରୂପେ କ୍ଷୁଣ୍ଣ ହେବାର ନୁହେଁ । ପ୍ରବାଦଗୁଡ଼ିକ ବର୍ଜିତ ହେଲେ ମଧ୍ୟ, ପ୍ରବାଦମୂଳକ ବାକ୍ୟାଂଶଗୁଡ଼ିକ ଓଡ଼ିଆ ଭାଷାର ସନାତନ ଉକ୍ତି ବା ସରସ ବାକ୍ୟ-ରୀତି ମଧ୍ୟରେ ଏପରି ନିମଜ୍ଜିତ ହୋଇ ଯାଇଛି ଯେ ତାହା ପରିତ୍ୟାଗ କଲେ ଭାଷାର ଅଙ୍ଗହାନି ଘଟେ । ଏପର୍ଯ୍ୟନ୍ତ ଓଡ଼ିଆ ଭାଷାର Dictionary of Phrases and Idioms ଅର୍ଥାତ୍ ବାକ୍ୟ ପଦ୍ଧତି ଓ ବାକ୍ୟାଂଶର ଅଭିଧାନ( ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଦ୍ୱାରା ସଙ୍କଳିତ ଓ ପ୍ରଣୀତ ''ପୂର୍ଣ୍ଣଚନ୍ଦ୍ର ଓଡ଼ିଆ

ଭାଷାକୋଷ'' ବ୍ୟତୀତ ) ସଙ୍କଳିତ ହେବାର ଦୃଷ୍ଟିଗୋଚର ହୁଏ ନାହିଁ କିମ୍ବା ଓଡ଼ିଶାରେ ଏ ସମ୍ପର୍କରେ ଏଯାବତ୍ କୌଣସି ପଦକ୍ଷେପ ନିଆଯାଇଥିବାର ନଜିର ସଙ୍କଳୟିତାଙ୍କ ପାଖରେ ନାହିଁ ।

ଖାଣ୍ଟି ଓଡ଼ିଆର ବାକ୍ୟ ପଦ୍ଧତି ( Idioms) ଗୁଡ଼ିକ ଆମ୍ଭେମାନେ ପ୍ରାୟ ଭୁଲିଯିବାକୁ ବସିଲୁଣି । ତେଣୁ ଏହାର ସଂରକ୍ଷଣ ପାଇଁ ପ୍ରବାଦ ବାକ୍ୟ ବା ବାକ୍ୟାଂଶର ସଂଗ୍ରହ ନିତାନ୍ତ ପ୍ରୟୋଜନ । ଏହାଛଡ଼ା ତରକାରିରେ ଲୁଣ ପକାଇଲା ପରି , ସାହିତ୍ୟରେ ମଧ୍ୟ ପ୍ରବାଦର ସୁବିଚାରିତ ,ସାର୍ଥକ ଓ ଅନତିରିକ୍ତ ପ୍ରୟୋଗ ଚିରଦିନ ବାକ୍ୟାଳଙ୍କାର ହିସାବରେ ସ୍ଥାନ ପାଇଛି ଓ ପାଇବ ;ଯଦିବା ଭାବବିହ୍ୱଳତାର ମଧୁରତାଲୋଲୁପ ଆଧୁନିକ ସୌଖୀନ ପାଠକ ତାହାର ଆସ୍ୱାଦ ବରଦାସ୍ତ କରି ପାରିବେ ନାହିଁ । ଆର୍ଟ -ସର୍ବସ୍ୱ ଭଦ୍ର ସାହିତ୍ୟ ଓ ରୁଚି -ସର୍ବସ୍ୱ ଭଦ୍ର ସମାଜ ଯେତେ ପରିମାଣରେ ଭ୍ରୂକୁଟି ବା ନାସିକା କୁଞ୍ଚନ କରନ୍ତୁନା କାହିଁକି , ଓଡ଼ିଆ ପ୍ରବାଦଗୁଡ଼ିକ ଓଡ଼ିଆ ଜନସାଧାରଣଙ୍କର ଏକାନ୍ତ ନିଜସ୍ୱ ଓ ଚିରନ୍ତନ ସମ୍ପଦ, ଯାହା ସେମାନଙ୍କର ଭାଷାରେ ସ୍ଥୂଳଭଙ୍ଗୀ ଓ ସହଜ ରସିକତାର ଉପାଦାନ ହିସାବରେ ଅନ୍ତର୍ଭୁକ୍ତ ହୋଇଅଛି । ସାଧାରଣ ପ୍ରବାଦଗୁଡ଼ିକ ଅଧିକାଂଶ ଓଡ଼ିଶା ଗ୍ରାମାଞ୍ଚଳର ଚିତ୍ର ଓ ଗ୍ରାମ୍ୟ ସ୍ମୃତିକୁ ପ୍ରତୀକ୍ଷା କରେ ,କିନ୍ତୁ ଆଧୁନିକ କାଳରେ ଗ୍ରାମ୍ୟଜୀବନର ପରିବର୍ତ୍ତନ ଦେଖାଦେଇଛି ;ନୂତନ ସଭ୍ୟତାର ଦ୍ରବ୍ୟ ସାମଗ୍ରୀ, ଚାଲି ଚଳଣି ,ଭାବଭାଷାକୁ ନେଇ କୃତ୍ରିମ ନାଗରିକ ମନୋବୃତ୍ତି ଗ୍ରାମେ ଗ୍ରାମେ ପରିବ୍ୟାପ୍ତ ହୋଇଛି । ସଂପ୍ରତି ଓଡ଼ିଆ ସାହିତ୍ୟରେ ଗ୍ରାମ୍ୟ ଜୀବନ ଓ ଜନସାଧାରଣଙ୍କ ମଧ୍ୟରେ ଘନିଷ୍ଠ ପରିଚୟ ସ୍ଥାପନ କରିବାର ଚେଷ୍ଟା ଦୃଷ୍ଟିଗୋଚର ହୁଏ । ଏହା ଉଲ୍ଲେଖଯୋଗ୍ୟ ଯେ ସମସ୍ତ ଆଧୁନିକ ଶକ୍ତିଶାଳୀ ଲେଖକମାନଙ୍କର ଏ ବିଷୟରେ ପ୍ରତ୍ୟକ୍ଷ ଜ୍ଞାନ ଓ ଅନୁଭୂତି ଅଛି । ସେମାନଙ୍କର ଉପନ୍ୟାସ, ଗଳ୍ପ ଓ ଲେଖା ମଧ୍ୟରେ ଯଥେଷ୍ଟ ପ୍ରବାଦ-ବାକ୍ୟର ପ୍ରୟୋଗ ଦେଖାଯାଏ, ଯାହା ଅପ୍ରାସଙ୍ଗିକ ବା ନିରର୍ଥକ ନୁହେଁ ।

ଯେଉଁମାନେ ଓଡ଼ିଆ ପ୍ରବାଦ ,ବଚନଗୁଡ଼ିକ ନେଇ ଆଲୋଚନା ବା ପର୍ଯ୍ୟାଲୋଚନା କରିବେ ,ସେମାନେ ନିଶ୍ଚିତଭାବେ ଜାଣିବେ ଯେ ଓଡ଼ିଆ ପ୍ରବାଦ ବଚନଗୁଡ଼ିକର ଗୋଟିଏ ବିଶିଷ୍ଟ ରୂପ ଅଛି ଏବଂ ଓଡ଼ିଆମାନଙ୍କ ପାଇଁ ଏହା ଅତୀବ ରସସିକ୍ତ, ଯାହା ଗଭୀର ଓ ଅକ୍ଷୟ । କିନ୍ତୁ ସଙ୍ଗୀତର ରୂପ ଓ ରସ ଯେପରି ତାହାର ସ୍ୱରର ଅଭିବ୍ୟକ୍ତିରେ ନଶୁଣିଲେ ତାହାର ମାଧୁର୍ଯ୍ୟ ଉପଲବ୍ଧ ହୁଏ ନାହିଁ ,ସେହିପରି ପ୍ରବାଦର ରୂପ ଓ ରସ ତାହାର କହିବା ଭଙ୍ଗୀରୁ ,ଚାକ୍ଷୁଷ ନଦେଖିଲେ ବା କାନରେ ନ ଶୁଣିଲେ ତାହାର ସମ୍ପୂର୍ଣ୍ଣ ସ୍ୱାଦ ମିଳେ ନାହିଁ । ଯେଉଁମାନେ ସେକାଳର ଲୋକମୁଖରୁ ସରସ ପ୍ରବାଦ -ବାକ୍ୟଗୁଡ଼ିକ ଅନୁରୂପ ମୁଖ,ସ୍ୱର ଓ ଅଙ୍ଗଭଙ୍ଗୀ ସହିତ ଶୁଣିଛନ୍ତି ,ସେମାନେହିଁ ସେଗୁଡ଼ିକର ରସବ୍ୟଞ୍ଜନା ସ୍ପଷ୍ଟଭାବରେ ଅନୁଭବ କରିପାରିବେ । ଲେଖକ କେବଳ ପ୍ରବନ୍ଧ ଲେଖି

ସେଗୁଡ଼ିକୁ ବୁଝାଇ ପାରିବେ ନାହିଁ।

ପୁଣି ନାରୀସୁଲଭ ଟିପ୍ପଣୀ ପ୍ରବାଦ ,ବଚନ ମଧ୍ୟରେ ଅନେକ ପରିଲକ୍ଷିତ ହୋଇଥାଏ, ମାତ୍ର ଏଗୁଡ଼ିକୁ ଆବୃତ୍ତି ବା କହିଲା ବେଳେ ଅନୁରୂପ ମୁଖ, ସ୍ୱର ଓ ଅଙ୍ଗଭଙ୍ଗୀ ସହିତ ଯେଉଁମାନେ ଶୁଣିଥିବେ, ସେମାନେ ଏହାର ରସ ବ୍ୟଞ୍ଜନା ସ୍ପଷ୍ଟ ଅନୁଭବ କରିପାରିବେ। ଏହାର ଚମତ୍କାରିତାକୁ ଲେଖାରେ ପ୍ରକାଶ କରି ବୁଝାଇବା ଏକ ବିଡ଼ମ୍ବନା।

ଓଡ଼ିଆ ପ୍ରବାଦ ,ବଚନର ଗୋଟିଏ ବୈଶିଷ୍ଟ୍ୟ ବା ନିଜସ୍ୱ ରୂପ ହେଉଛି , ଆମର ଅଧିକାଂଶ ପ୍ରବାଦ ବା ଚଳନ୍ତି କଥାର ଭାଷା ସ୍ତ୍ରୀ ତଥା ନାରୀମାନଙ୍କ ଭାଷା ,ଯାହା ପୁରୁଷମାନଙ୍କର ଭାଷାରେ ମଧ୍ୟ ନିର୍ବିବାଦରେ ମିଶିଯାଇଛି। ଉଦାହରଣ ସ୍ୱରୂପ - **ମାଛ ତେଲରେ ମାଛ ଭାଜିବା, ଶତ୍ରୁ ମୁହଁରେ ପାଉଁଶ ଦେବା ,ଢେଙ୍କି ସ୍ୱର୍ଗକୁ ଗଲେବି ଧାନ କୁଟେ ,ମୁହଁ ଗାଲୁ (ଗଲୁ) ଭାଙ୍ଗିବା (ଭାଙ୍ଗିଦେବା),ଅଲଣା ସୁଆଗ ,ଫେଣ କାଢ଼ିବା, ଫେଣେଇ ହେବା** ପ୍ରଭୃତି ନିତାନ୍ତ ଘରୁଆ କଥା ମଧ୍ୟରେ ରହିଛି - ରୋଷେଇ ଘର,ହାଣ୍ଡିଶାଳ ,ସରଘର,ଅଥବା ଢିଙ୍କିଶାଳର ମାଇପିଙ୍କର ନାନା ନାରୀସୁଲଭ ଅଭିଜ୍ଞତାର ସରସ ପ୍ରକାଶ।

କିନ୍ତୁ ନାରୀସୁଲଭ ଭାଷାର ଗୋଟିଏ ସାଧାରଣ ଲକ୍ଷଣ ଏହି ଯେ ଏହା ରକ୍ଷଣଶୀଳ । ଘର ଭିତର ଭାଷା ବୋଲି ବାହାର ସମ୍ପର୍କରେ ନୂତନତ୍ୱର ଆକର୍ଷଣରେ ଏହା ଖୁବ୍ କମ ରୂପାନ୍ତରିତ ହୋଇଅଛି। ଏଇ ପରିପ୍ରେକ୍ଷୀରେ ପ୍ରବାଦ, ବଚନ ,ଢଗ-ଢମାଳିଗୁଡ଼ିକ ହେଉଛି ସନାତନ ବାକ୍ୟ-ରୀତି ,ଓଡ଼ିଆ ଚଳନ୍ତି ଭାଷାର ମେରୁଦଣ୍ଡ ଏବଂ ଗତାନୁଗତିକତା ପାଇଁ ହୁଏତ ଏଥିରେ ଏପରି ଅନେକ ଶବ୍ଦ ଓ ବାକ୍ୟ ପଦ୍ଧତି ଦୃଷ୍ଟିଗୋଚର ହୁଏ , ଯାହା ପ୍ରାଚୀନ କାଳରୁ ଆଜି ପର୍ଯ୍ୟନ୍ତ ଓଡ଼ିଆ ଭାଷାକୁ ରସ ସମୃଦ୍ଧ କରିଛି। ଏହିସବୁ ନାରୀସୁଲଭ ପ୍ରବାଦ, ବଚନ, ଢଗ-ଢମାଳିରେ ଓଡ଼ିଆ ମାଇପିମାନଙ୍କର ଚିରନ୍ତନ ମନସ୍ତତ୍ୱର ଏପରି ଗୋଟିଏ ଆଭାସ ମିଳେ , ଯାହା ଅନ୍ୟତ୍ର ଦୁର୍ଲଭ।( ଏ ସମ୍ପର୍କରେ ଦୃଷ୍ଟାନ୍ତ ଏହି ଗ୍ରନ୍ଥର ପରବର୍ତ୍ତୀ ଖଣ୍ଡରେ, ଆଲୋଚିତ ହେବ )।

ପ୍ରବାଦ ,ବଚନ ,ଢଗ-ଢମାଳିଗୁଡ଼ିକ ସ୍ୱଭାବତଃ କବିତା ପରି ପରିଦୃଷ୍ଟ ହେଲେ ମଧ୍ୟ . ଏହା କବିତାର ଚରଣ ନୁହେଁ। ତେବେ ପଦର ମେଳ,ଶବ୍ଦର ଅନୁପ୍ରାସ, ନିତ୍ୟଦୃଷ୍ଟ ଓ ଅତି ପରିଚିତ ସାମଗ୍ରୀର ତୁଳନା ,ସହଜ ପ୍ରକାଶଭଙ୍ଗୀ ଓ ସଂକ୍ଷିପ୍ତ ବ୍ୟଞ୍ଜନାର ସରସତା ଏଗୁଡ଼ିକୁ ଲୋକପ୍ରିୟ କରି ଏମାନଙ୍କର ଭାଷାକୁ ଅନ୍ତଃପୁରର ସଂକୀର୍ଣ୍ଣ ଗଣ୍ଡି ମଧ୍ୟରୁ ବାହାର କରି ବୃହତ୍ ଜନସମାଜରେ ବ୍ୟାପ୍ତ କରି ଦେଇଛି। ସେଥିପାଇଁ ପ୍ରବାଦ ଶବ୍ଦଗୁଡ଼ିକ ବେଶ ବଳିଷ୍ଠ ତଥା

ଶକ୍ତିଶାଳୀ,ବିଶେଷଣଗୁଡ଼ିକ ମଧ୍ୟ ଆକର୍ଷଣୀୟ । ନିଜ ପାଇଁ ଲଜ୍ଜାଜନକ ବା ଅକୁହା କଥା ହେଲେ ମଧ୍ୟ ,ଏହି ଭାଷାର ପ୍ରବକ୍ତାଙ୍କ ତୁଣ୍ଡରେ ଏସବୁ ବୋଲି ଅଟକି ଯାଏ ନାହିଁ କିମ୍ବା ଏହି ଭାଷା କହିବାରେ ମଧ୍ୟ କିଛି ପ୍ରତିବନ୍ଧକ ବା ଗୋପନୀୟତା ନ ଥାଏ ।

ଓଡ଼ିଆମାନଙ୍କର ସ୍ନେହ -ସୁକୋମଳ ମର୍ମଗ୍ରାହୀ ଅନ୍ତରର କଥା ଯେ ଏସବୁ ପ୍ରବାଦଗୁଡ଼ିକରେ ନାହିଁ ,ଏପରି ନୁହେଁ । ଦୃଷ୍ଟାନ୍ତ ସ୍ୱରୂପ ନିମ୍ନରେ କେତେକ ପ୍ରଦତ୍ତ ହେଲା -

(୧) ଚୁଡ଼ା କହ ,ମୁଢ଼ି କହ ,ଭାତଠାରୁ ବଡ଼ ନୁହେଁ ,
ମାଉସୀ କହ ,ପିଉସୀ କହ, ମା' ଠାରୁ ବଡ଼ ନୁହେଁ ।
(୨) କାହା ମାଉସୀ ,କିଏ ପିଉସୀ ,କେଉଁଠି ବୃନ୍ଦାବନ,
ଥୁଣ୍ଟା ଗଛରେ ଫୁଲ ଫୁଟିଛି ,ମାଆ ବଡ଼ ଧନ ।
(୩) ମା' ନାହିଁ ଯାହାର ,ନାଁ ନାହିଁ ତାହାର ।
(୪) ମା' ନାହିଁ ଯାହାର .ସାହା ନାହିଁ ତାର ।
(୫) ବାଟ ଘାଟରେ ବୁଲି ଅଇଲି , ଘାଟରେ ନାହିଁ ନାଆ ,
ରଣ ବଣରୁ ଫେରି ଅଇଲି ,ଘରେ ନାହିଁ ମାଆ ।
(୬) ଓସ୍ତର ଛାୟାହିଁ ଛାୟା, ମା'ର ମାୟାହିଁ ମାୟା ।
(୭) ମତେ କହୁଛି କନା ବଲ ବଲ ,ଯାହାର ଛୁଆ ତାର ମା 'କୁ ଭଲ ।

ମା' ପୁଅର କଳି ତକରାଳ ଅଥବା ସ୍ତ୍ରୈଣ ପୁତ୍ରର ସ୍ତ୍ରୀ ପ୍ରତି ଅତ୍ୟନ୍ତ ଅନୁରକ୍ତି , ମା' ପ୍ରତି ଅବହେଳା ସଂସାରର ଏକ ସାଧାରଣ ଚିତ୍ର । ନିମ୍ନଲିଖିତ କେତୋଟି ପ୍ରବାଦରେ ତାହା ପ୍ରତିଫଳିତ ହେବାର ଦୃଷ୍ଟାନ୍ତ ମିଳେ । ଯଥା;-

(୧) ମା' ବେକରେ ଦଉଡ଼ି, ମାଇପ ପିନ୍ଧୁଛି ମାଠ (ମଠା) ଶାଢ଼ୀ ।
(୨) ମା' କୁ ନମିଳେ (ପାଣିଖାର) ଚର (=କଉଡ଼ୀ) ମାଇପ ଗଳାରେ ଚନ୍ଦ୍ରହାର ।
(୩) ମା' ପାଇଁକି ଫଟା ଶାଢ଼ୀ ,ମାଇପ କାନରେ ମଲକଡ଼ି ।
(୪) ବୁକୁରେ ଖାଇ ,ମୁହଁରେ ମାରେ ।
(୫) ଯେତେକ୍ଷଣ ଦୁଧ,ସେତେକ୍ଷଣ ପୁତ ।
(୬) ମା'ର ପୁଅ ନୁହେଁ ,ଶାଶୁର ଜ୍ୱଆଁଇ ।
(୭) ମା ବାପକୁ ବୋଲ ବୋଲଣା , ଶଳା ଶାଳୀ ଘର କରଣା ।

(୮) ଘରେ ଅଛନ୍ତି ସିଦ୍ଧେଶ୍ୱରୀ ,ତାଙ୍କ କଥାରେ କର୍ମ କରି ।

(୯) ପୁଅ ବାହା କରି ବୋହୂକୁ ଦେଲି ,ଝିଅ ବାହା କରି ଜୋଇଁକୁ ଦେଲି ।

ନବବଧୂ ଉଦ୍ଦେଶ୍ୟରେ କଥିତ କେତେକ ପ୍ରବାଦ -

(୧୦) ମା' ଚାହେଁ ପେଟକୁ ,ମାଇପ ଚାହେଁ ପେଡ଼ିକୁ

ସୁନ୍ଦରୀ ବଧୂ ( ସ୍ତ୍ରୀ ) ନ କରିବା ଭଲ ତେଣୁ କୁହାଯାଇଛି

(୧୧) ଘରେ ନ ଖୋଳ ଗାତ,ଗୋରୁ କିଣିବ ଛୋଟ ,

ବାହା ହବ କଳା ,ନହେଲେ ଗିରସ୍ତ ପଳା ।

ହିନ୍ଦୁମାନଙ୍କ ପରି , ମୁସଲମାନ ସମ୍ପ୍ରଦାୟ ମଧ କାଳକ୍ରମେ ଓଡ଼ିଆ ପ୍ରବାଦ ସାହିତ୍ୟକୁ ପରିପୁଷ୍ଟ କରି ଆସିଛନ୍ତି । ଅନ୍ୟାନ୍ୟ ପ୍ରବାଦ ପରି ମୁସଲମାନ ସମ୍ପ୍ରଦାୟ ଏବଂ ତାହାର ପୀର,ମୌଲ୍ଲା ମଧ ବ୍ୟଙ୍ଗ, ବିଦ୍ରୂପର ଉପଲକ୍ଷ ହୋଇ ପ୍ରବାଦ ମଧକୁ ଆସିଛନ୍ତି । ଉଦାହରଣ ସ୍ୱରୂପ -

(୧) ବୁଡ଼ି ବୁଡ଼ି ପାଣି ଖାଏ , ଦିନସାରା ରୋଜା ଥାଏ ।

(୨) ଯେତେ ହାଜୀ ,ସେତେ ପାଜୀ ।

(୩) ପହିଲେ କାଜୀ, ପରେ ହାଜୀ ,ଶେଷରେ ପାଜୀ ।

(୪) ଦାଢୀ ନ ଗଜୁରିଲେ କାଜୀ ।

(୫) ପିର ,ନା,ପୟଗମ୍ବର ।

(୬) ପହିଲେ ଥାଏ ଆଲ୍ଲା ଉଲ୍ଲା ,ପରେ ହୁଏ ଉଦ୍ଦିନ୍,

ତଳିଆ ମହମ୍ମଦ ,ଉଞ୍ଚକୁ ଉଠେ ,କପାଳେ ଥାଏ ଯେଦିନ ।

(୭) ପାଞ୍ଚଜଣ ପୂଜିଲେ ପଥର ,ସିଏ ପିର ହୁଏ ସତର (=ସତରେ ) ।

(୮) ମୁଲ୍ଲାର ଦାଢୀ ଓଷଦରେ(=ଔଷଧରେ )ଲାଗେ ।

(୯) ପିର ପାଖରେ ମାମ୍‌ଦି (=ପଠାଣ ଭୂତ)କାଜୀ ।

(୧୦) କଳିକାଳରେ ମୁନ୍‌ସି,ମୁଲ୍ଲା ନାଆଁରେ ହେବେ ଦଢ (=ଦୃଢ/ଶକ୍ତ ) ।

ନ ମାନିବେ କୋରାନ୍ କିତାବ ,ହୁଡଧ କରିବେ ବଡ଼ ।

(୧୧) କୁକୁଡ଼ା ଗାଣ୍ଡିରେ ତେଲ ହେଲେ ,ମୁଲ୍ଲା ଦୋରୁଅ ଦେଇ ରାନ୍ଧେ ।

(୧୨) ମୋଗଲ ପଠାଣ ହଦ୍ ହେଲେ ,ଫାରସା ପଢେ ତନ୍ତୀ ।

(୧୩) ସକାଳେ ଖାଇ ଫକୀର (=ମୁସଲମାନ ସାଧୁ) ନାଚେ ,

ସଞ୍ଜବେଳକୁ ଖୋଦା (=ଈଶ୍ୱର ) ଯାଚେ ।

ଫକୀର ଗୃହତ୍ୟାଗୀ ସ୍ୱାଭାବିକ ଜୀବନଯାପନ କରେ ନାହିଁ । ତଥାପି ସେ ସମାଜରେ ବାସ କରେ । ତାର ଭରଣ ପୋଷଣର ଭାର ବହନ କରିଥାଏ ସମାଜ । ସୂକ୍ଷ୍ମବିଚାରରେ ଫକୀର ସାମାଜିକ ବ୍ୟକ୍ତିବିଶେଷ ନୁହେଁ । ମାତ୍ର ଏହି ମର୍ମରେ ଫକୀର ଏକ ସାମାଜିକ ଜୀବ ଅଟେ ଯଦିଓ ତାକୁ କୌଣସି ପ୍ରକାରର ଦାୟିତ୍ୱ ପାଳନ କରିବାକୁ ପଡ଼େ ନାହିଁ । ଫକୀର ସବୁ ପ୍ରକାର ଦୁଶ୍ଚିନ୍ତା ଓ ଦୁର୍ଭାବନାରୁ ମୁକ୍ତ କାରଣ ସେ ସମ୍ପୂର୍ଣ୍ଣ ଭାବେ ଈଶ୍ୱର ନିର୍ଭରଶୀଳ ।

(୧୪) 'ରାମ' ଭଜିବା ନା 'ରହିମ' ଭଜିବା ?

'ରାମ' 'ରହିମ' ଉଭୟ ହିଁ ଶ୍ରେଷ୍ଠତର । ତେଣୁ କାହାକୁ ପ୍ରାର୍ଥନା କରିବ, ସେଥିପାଇଁ ମନୁଷ୍ୟ ସିଦ୍ଧାନ୍ତ ନେଇ ନପାରି ଇତସ୍ତତଃ ହେବା ପରିପ୍ରେକ୍ଷୀରେ ।

(୧୫) ହିନ୍ଦୁର 'ନାରାୟଣ' ମୁସଲମାନର 'ତୋବା'(= ହାୟ)

(୧୬) ଇଲାହୀ ତୋବା । ଖୁଦା ଅର୍ଥାତ୍ ,ଈଶ୍ୱର ମଙ୍ଗଳ କରନ୍ତୁ ।

(୧୭) ରାମ ,ରହିମ, କାଳୀ, ଅଲଗା କଲେ ମଲି ।

(୧୮) ମୁଲ୍ଲାର(=ମୁସଲମାନ ଧର୍ମଯାଜକ) ଦଉଡ଼ ମସଜିଦ ତକ (=ପର୍ଯ୍ୟନ୍ତ) ।

(୧୯) ଅଦ୍‌ଭୂତ ପୀରର ମାୟା,

କାହାକୁ ମୁଁ ବରି !

ମୁସଲମାନ କହେ ପୀର

ହିନ୍ଦୁ କହେ ହରି ।

ଭଲ ପାଇବାର ବିଚିତ୍ର ପଦ୍ଧତି ଓ ନାରୀ ଜାତିର ଭଲ ମନ୍ଦ ସମ୍ପର୍କରେ ପ୍ରବାଦର ଅଭାବ ନାହିଁ । ବର୍ତ୍ତମାନ ପ୍ରେମ ସମ୍ବନ୍ଧରେ ସାଧାରଣ କେତୋଟି ପ୍ରବାଦ ନିମ୍ନରେ ଉପସ୍ଥାପନ କରାଗଲା ,ଯଥା-

(୧) ଭଲପାଇବାର ଏମିତି ଗୁଣ ,ପାନ ସହିତ ଯେମିତି ଚୂନ ,

ବେଶି ହେଲେ ପୋଡ଼େ ଗାଲ, କମ୍ ହେଲେ ଲାଗେ ଝାଳ(=ରାଗୁଆ) ।

(୨) ମନକୁ ପଥର କରେ ଯେ ,ପୀରତି ପଥର ପଥିକ ସେ ।

(୩) ଯାହା ସଙ୍ଗେ ମିଳେ ମନ ,ସେଇ ମୋ ଆପଣା ଜନ ।

(୪) ମୁହଁରେ ଲାଜ ପେଟରେ ଭୋକ ,ସେ ପୀରତିର କି ବା ଭେକ ।

(୫) ଯାହା ସଙ୍ଗେ ମଜେ ମନ ,କିବା ହାଡ଼ି କିବା ଡ଼ମ ।

(୬) ପୀରତିର ଡ଼ଙ୍ଗା ପାହାଡ଼ରେ ଚାଲେ ।
(୭) ଭଲ ପାଇବା କେମିତି ? ଭଲପାଇବା ଯେମିତି ।
(୮) ଯାବତ୍ ଜୀୟତି ,ତାବତ ପୀରତି ।
(୯) ନୂଆ ପୀରତିର ବଡ଼ ଅଠା ।
(୧୦) ଚେତନାରେ ଅଚେତନ , ପୀରତିରେ ଯାର ଟାଣେ ମନ ।
(୧୧) ପୀରତି ,ନିଆଁ ,କାଶ ନରୁହେ ଅପ୍ରକାଶ ।

ଯେଉଁମାନେ ପୁରୁଷମାନଙ୍କୁ ବ୍ୟଙ୍ଗୋକ୍ତିରେ ବ୍ୟାଖ୍ୟା କରି ପ୍ରବାଦ ମାଧ୍ୟମରେ କହନ୍ତି - **ପୁରୁଷର ଭଲବାସା ,ମୁଲ୍ଲାର ମୁରଗୀ ପୋଷା** । ସେହି ସ୍ତ୍ରୀ ଲୋକ ବା ମାଇପୀମାନଙ୍କର ସ୍ୱରୂପ ଓ ଗୁଣ କୀର୍ତ୍ତନ ଅନେକ ସମୟରେ ସେହିମାନଙ୍କ ମୁହଁରେ ଯେପରି କରାଯାଏ ,ତାହା କିଛି କମ୍ ନୁହେଁ ,ବରଂ ସମୟ ସମୟରେ ଭବ୍ୟତାର ବାହାରକୁ ଚାଲିଯାଏ । ଉଦାହରଣ ସ୍ୱରୂପ

(୧) ନାରୀର ବଳ ,ଚକ୍ଷୁର ଜଳ ।
(୨) ଟିପ ବୁଝେନା ,ଟାପ ବୁଝେନା ,ସିଏବା କିପରି କନ୍ୟା (ଝିଅ) ।
ଖାର ବୁଝେନା ,ଚର ବୁଝେନା ,ସିଏବା କିପରି କନ୍ୟା (ଝିଅ) ।
(୩) ତିନି ମାଇପେ ଯେଉଁଠି ,କାଜୀର ବିଚାର ସେଇଠି ।
(୪) ନଦୀ,ନାରୀ,ଶୃଙ୍ଗଧାରୀ ,ଏ ତିନିଙ୍କୁ ବିଶ୍ୱାସ ନକରି ।
(୫) ରାଗ ,ଖଟା, ଆଉ କଡ଼ା ଘଇତା ।
(୬) ଘୋଡ଼ା,ନାରୀ ,ତରୀ ଯେ ଚଢେ ତାଆରି (=ତାହାରି) ।
(୭) ସାତ କଥାରେ ସତୀ ଭୁଲେ ।
(୮) ଝିଅ ଚିହ୍ନ ହସରୁ ,ପୁରୁଷ ଚିହ୍ନ କାଶରୁ ।
(୯) ଭାତ ଖାଉଁ ଘଇତାର ,ଗୁଣ ଗାଉଁ ନାଗରର ।
(୧୦) ଘଇତାର ଖାଇ ପିନ୍ଧି ,ଘଇତାକୁ କାଣ୍ଡ ବିନ୍ଧି ।
(୧୧) ଘଇତାର ଖାଏ ଯିଏ , ଘଇତାକୁ ଦଣ୍ଡା ଦିଏ ।
(୧୨) ବାର କଲି ,ବ୍ରତ କଲି ,ଦେଲି ସଞ୍ଜବତୀ ।
ଯୁବା କାଳେ ରଙ୍ଗ କଲି ,ବୃଦ୍ଧ କାଳେ ସତୀ ।
(୧୩) ମରଦ ଜିଦିରେ ବାଦଶା ,ମାଇପେ ଜିଦିରେ ବେଶ୍ୟା ।
(୧୪) ସାତ ଘଇତାରେ ସାବିତ୍ରୀ,ବାର ଘଇତାରେ ଅହିୟ ।

ଏକ ଘଇତାର ପୋଡ଼ାକପାଳ ,ଦୁଆର ନ ମାରି (ଦେଇ) ଯାଅ ।

ସଉତୁଣୀ ଯାତନା ସବୁଠୁଁ ବଳି । ବୈଦିକ ଯୁଗଠାରୁ ସଉତୁଣୀ ସହ ଘର କରିବା ଆମ ଦେଶ ମାଇପିମାନଙ୍କର ଦୁର୍ଭାଗ୍ୟ ଓ ଅଭିଶାପ । ସଉତୁଣୀ ପ୍ରତି ସ୍ୱାମୀର ପକ୍ଷପାତ ଏବଂ ଆନୁଷଙ୍ଗିକ ସଉତୁଣୀ ବିଦ୍ୱେଷର ମର୍ମନ୍ତୁଦ ବେଦନା ଓ ଘରୋଇ ଅଶାନ୍ତି ବହୁ ପ୍ରବାଦ ବାକ୍ୟରେ ଚିରନ୍ତନ ହୋଇ ରହିଅଛି । ସୁତରାଂ ସଉତୁଣୀ ବିଦ୍ୱେଷ ଯେ ଚରମରେ ପହଞ୍ଚିଛି , ତାହା ନିମ୍ନ ଉଦାହରଣରୁ ବୁଝାଯାଏ --

(୧) ଘଇତା ପଛେ ମରୁ ସଉତୁଣୀ ରାଣ୍ଡ ହେଉ ।

(୨) ସଉତୁଣୀ ଥାଉ ,ସଉତୁଣୀର କଣ୍ଟା ନ ଥାଉ ।

(୩) ଦୁଇ ସଉତୁଣୀ ଯାହାର ଘରେ ,ନିତି କଳି ତାର ଘରେ ।

ସଉତୁଣୀ ହଜାରେ ଭଲ ହେଲେବି ତାକୁ କେବେହେଁ ବିଶ୍ୱାସ ିବ ନାହିଁ । ଉଦାହରଣ ସ୍ୱରୂପ -

(୧) ସଉତୁଣୀ ହାତ ସାପର ଚୋଟ ,
ଗୁଡ଼ ଦେଲେବି ଉଠେଇ ଛାଟ ।

(୨) ସଉତୁଣୀ ଡ଼ାକ ନିଶି କୁହାଟ ,
ତିନି ଡ଼ାକରେ ନ କର ଉ'ଅ ।

ସଉତୁଣୀ ବିନାଶ ଜନିତ ଉତ୍କଟ ଆନନ୍ଦ ର ତୁ ଳନା ନାହିଁ । ଯଥା-

(୧) ଓଶତ (=ଅଶ୍ୱତ୍ଥ) କାଟି ବାସ ବନାଅ ।
ସଉତୁଣୀ କାଟି ଅଳତା ନାଅ ।

ଓଡ଼ିଆ ଘରେ ସଉତୁଣୀ ,ଶାଶୁ ,ନଣନ୍ଦମାନଙ୍କର ଗଞ୍ଜଣାଜନିତ ଦୁଃଖମୟ ଜୀବନର ଚିତ୍ର ସମାଜରେ ଓ ସାହିତ୍ୟରେ ବିରଳ ନୁହେଁ ।

ସୁତରାଂ କୁହାଯାଇଛି -

(୧) ସଉତୁଣୀ ବାଘୁଣୀ ,ଶାଶୁ ରାଗିଣୀ,
ନଣନ୍ଦ ନାଗିନୀ,ସଭିଏ ଏ ବିଷରେ ଗୁଣୀ (ଗୁଣି) ।

କଥାଟି ଆଦୌ ଅତିରଞ୍ଜିତ ବା ନିରର୍ଥକ ନୁହେଁ । ସାବତ ମା'ର ବ୍ୟବହାରକୁ ଉପଲକ୍ଷ

କରି ଯେଉଁସବୁ ପ୍ରବାଦ ପ୍ରଚଳିତ ରହିଛି ,ତାହା ମଧ ଉଲ୍ଲେଖଯୋଗ୍ୟ ,ଯେପରିକି-

ବାପ ଉପରୋଧରେ
ସାବତମା ଗୋଡ଼ତଳେ ପଡ଼ିଲେ ବି, 'ବିମାତା ବିଷର ଘର '।

ଦୋବେଇ ବର ବା ଦୋବେଇର ଦ୍ୱିତୀୟ ପକ୍ଷ ସ୍ତ୍ରୀ ପ୍ରତି ନିର୍ବୋଧ ଆସକ୍ତି ହେତୁ ତାଙ୍କ ଉଦ୍ଦେଶ୍ୟରେ କେତେକ କଉତୁକିଆ ପ୍ରବାଦ-

(୧) ଆଗ ମାଇପକୁ ଭାତ ନିଅଣ୍ଡ,
ଆଉ (ପଛ) ମାଇପକୁ କରୁଛି କଣ୍ଡ ।

(୨) ଦୋବେଇ ଘଇତାର ମାଇପକୁ ଛାଣ,
ଚତୁର୍ଦ୍ଦଶୀରେ ଗିଳେ ଚଉଦ ତିଅଣ ।

(୩) ଏକବର ମାଇପ ,ହେଳା ହେଳି ,
ଦୁଇ୍‌ବର (=ଦୁବେଇ ବର) ମାଇପ ଗଳାର ମାଳି ।

(୪) ଦୁଇ୍‌ବର ମାଇପ ଗଳରା ହାତୀ,
ଘଇତାକୁ ମାରେ ତିନି ଲାଥି (=ନାତ) ।

(୫) ଦୁଇ୍‌ବର ମାଇପ,ଚହଟାବଣର ବାଘ ।

(୬) ଏକବର ମାଇପ ମାଡ଼ ଛାରେ ,
ଦୁଇ୍‌ବର ମାଇପ ପୋଡ଼ି ମାରେ ।

ଯେଉଁମାନେ ତୃତୀୟ ବା ଚତୁର୍ଥଥର ବିବାହ କରନ୍ତି, ସେମାନଙ୍କ ପ୍ରସଙ୍ଗରେ ଶୁଣାଯିବା ପ୍ରବାଦ ବାକ୍ୟ--

(୭) ଏକବର ଘଇତାର ମାଇପ ,ଚୁଙ୍ଗୁଡ଼ି ମାଛର ଖୋସା ।
ଦୁଇ୍‌ବର ଘଇତାର ମାଇପ ,ନିତି କରେ ଘୋଷା (=ରାଗ)।
ତେଇ୍‌ବର ଘଇତାର ମାଇପ ,ସାଙ୍ଗରେ (ସଙ୍ଗେ) ବସି ଖାଏ ।
ଚାରିବର ଘଇତାର ମାଇପ, କାନ୍ଧରେ ବସି ଯାଏ ।

ବୁଢାକାଳେ ତରୁଣୀ ଭାର୍ଯ୍ୟା ବିଷ ତୁଲ୍ୟ । ତେଣୁ ପ୍ରବାଦରେ କୁହାଯାଏ --

(୧) ବୁଢା ବୟସେ ଯୁବା ନାରୀ,ଜର ବିକାରେ ବିଲ ବାରି ।

(୨) ବୁଢା ବୟସ ବାହା, ପୁରୁଣା ଲୁଗା ସିଆଁ ।

(୩) ସଞ୍ଜ ଗଡ଼ିଲେ ଦୀୟା (=ଦୀପ) ,ବୟସ ଗଲେ ବାହା ।

(୪) ଦରମରା ହୁଏ ନୟନ ବାଣେ , ଦେଖି ପାରେନା ଆଖି କାନେ ।

ପ୍ରବାଦର ଅନ୍ୟ ଏକ ଚିରନ୍ତନ କୌତୁକର ବିଷୟ ହେଉଛି ପୋଷ୍ୟପୁତ୍ର ଏବଂ ପୋଷ୍ୟପୁତ୍ର ତୁଲ୍ୟ ମେରୁଦଣ୍ଡହୀନ ହତଭାଗ୍ୟ ଘର ଜ୍ୱାଇଁ ଏବଂ ମାମୁଁ ,ଭଣଜା ଓ ଶଳା ପ୍ରଭୃତି ଅବାଞ୍ଛିତମାନଙ୍କ ସମ୍ପର୍କରେ । --

(୧) ପିହିଲା କୁତା କୁତା ବୋଲେ
ଦୋସରା କୁତା ଘର ଘର ବୁଲେ
ତିସରା କୁତା ଜୋରୁ (=ଭାର୍ଯ୍ୟା) କା ଭାଇ
ଚଉଥା କୁତା ଘର ଜ୍ୱାଁଇ ।

(୨) ଘର ଜ୍ୱାଁଇର ନାଁ ନାହିଁ ,
(ଲୋକେ) କହନ୍ତି ଅମୁକର ଜ୍ୱାଁଇ ।

(୩) ଦୂର ଜ୍ୱାଁଇ ମଧୁସୂଦନ
ଘର ଜ୍ୱାଁଇ ମେଧ (= ଯଜ୍ଞ ପଶୁ)
ଭାତ ଖାଅ ହେ ମଧୁସୂଦନ
ଭାତ ଗିଳରେ ମେଧ ।

(୪) ରାଜାର ଯୁବରାଜ,ମହନ୍ତର ଚେଲା ,
ଅମୁକର ଜ୍ୱାଁଇ , ଏମାନେ ନୁହଁଇ ଭାଲା ।

(୫) ଦୂର ଜ୍ୱାଁଇର କାନ୍ଧରେ ଛାଡ଼ି (=ଆଲିଙ୍ଗନ)
ଘର ଜ୍ୱାଁଇର ମୁହଁରେ ଲାଥି (=ନାତ)।

(୬) ଯାହାଥିଲା ବାସୀ ପଖାଳ ମା ଝିଅ ଖାଇ ,
ଘର ଜ୍ୱାଁଇ ମାଧିଆ ପାଇଁ ଧାନ ଶୁଖେଇ ଦେଇ ।

(୭) ଶଶୁର ଘର ସୁଖ ବଡ଼
ଘର ଜ୍ୱାଁଇର କିଳା ଦନ୍ତ (=ଦୃଢ,ଶକ୍ତ) ।

(୮) ମାମୁଁ ,ଭଣଜା,ଜ୍ୱାଇଁ ,ଶଳା,ଆଉ ପୋଷ୍ୟ ପୁତ୍ର
ଘରେ ଘରେ ବିରାଜମାନଏଇ ପାଞ୍ଚୋଟି ଭୁତ ।।

ନିଜ ମର୍ଯ୍ୟାଦା ନିଜେ ନ ରଖିଲେ ଅନ୍ୟ କେହି ତାହା ରଖେ ନାହିଁ ଯେପରି-

(୧) ଶଶୁର ଘର ମଧୁର ହାଣ୍ଡି ,
ଦିଦିନ ପରେ ଠେଙ୍ଗୁଣି ବାଡ଼ି ।

(୨) ଶଶୁର ଘରେ ଜୁଆଁଇର ବସା

ଜଣକୁ ମାଇଲେ ତିନିଜଣ ଘୋଷା (=ରାଗ)

ପ୍ରତ୍ୟେକ ଢଗ-ଢମାଳିର ଟୁକୁରା ବା ଭଗ୍ନାଂଶରେ, ତୁଚ୍ଛ କଥାରେ ଓଡ଼ିଆ ଘରର ବହୁ ବିଚିତ୍ର ବିସ୍ମୃତ ସୁଖ ଦୁଃଖ ଓ ହାସ୍ୟ କୌତୁକର ମୂର୍ଚ୍ଛନା ଶତଧା ବିକ୍ଷିପ୍ତ ହୋଇ ପଡ଼ିଅଛି । ଏଥିରେ ଓଡ଼ିଶାର ପ୍ରାତ୍ୟହିକ ଘରୋଇ ଦ୍ୱନ୍ଦ ,କଳହ ,ହିଂସା-ଦ୍ୱେଷ ,ଉତ୍ତେଜନା-ଅବସାଦ, ଦୈନ୍ୟ-ସଙ୍କୀର୍ଣ୍ଣତା ,ଅକ୍ଷମା- ଅସହିଷ୍ଣୁତା ପୋଖରୀ ତୁଠରୁ ହାଟ-ବଜାର ପର୍ଯ୍ୟନ୍ତ କୌଣସିଠାରେ ବାଦ ପଡ଼େ ନାହିଁ । ଏଠାରେ ମନୁଷ୍ୟ ଦେବତା ନୁହେଁ । ଭଲ ଓ ମନ୍ଦକୁ ନେଇ ରକ୍ତ ମାଂସରେ ଗଢ଼ା ନିତାନ୍ତ କ୍ଷୁଦ୍ର, ଦୁର୍ବଳ ମନୁଷ୍ୟ ; ତେଣୁ ଓଡ଼ିଆଙ୍କର ପାରିବାରିକ ଓ ସାମାଜିକ ଜୀବନରେ ଏପରି ନିଖୁଣ ଘରୋଇ ଚିତ୍ର ଅନ୍ୟତ୍ର ଦୃଷ୍ଟିଗୋଚର ହୁଏ ନାହିଁ ।

ଏହି ବାସ୍ତବପରାୟଣତା ପାଇଁ ଓଡ଼ିଆ ପ୍ରବାଦର ପରିହାସ ଓ ବ୍ୟଙ୍ଗ ଅତିଶୟ କଟୁ ଓ ତିକ୍ତ ନୁହେଁ । ଭାଷା ମଧ ସେହିପରି ସ୍ୱଚ୍ଛ ଓ ତୀକ୍ଷ୍ଣ । ମନୁଷ୍ୟର ହିତ ପ୍ରତି ତାର ଦୃଷ୍ଟି ନିବିଷ୍ଟ । ଅଧିକାଂଶ ଓଡ଼ିଆ ପ୍ରବାଦର ବୈଶିଷ୍ଟ୍ୟ ହେଉଛି ଯେ ଏହା ଅତ୍ୟନ୍ତପରିହାସିକ ( cynical ) ମାତ୍ର ମାନବବିଦ୍ୱେଷୀ ନୁହେଁ । ଏହାର ମୂଳ କଥା ହେଉଛି, ମାନବ -ବିଦ୍ରୂପ ଅତିଜାଗ୍ରତ ଓ ବାସ୍ତବ ଚେତନାଠାରୁ ପ୍ରତିଦିନର ସଂକୀର୍ଣ୍ଣ ଜୀବନର ତୁଚ୍ଛତା ଓ କ୍ଷୁଦ୍ରତାର ସଂସ୍ପର୍ଶ ଠାରୁ ଯେଉଁ ତୀକ୍ଷ୍ଣ ସାଂସାରିକ ଜ୍ଞାନ, ତାହାହିଁ ଏହାର ତୀବ୍ର ରସିକତାରେ ଉତ୍ସରିତ ହୋଇଅଛି ।

ପ୍ରାୟ ସବୁ ଦେଶର ଜନ-ପ୍ରବାଦରେ ଏତାଦୃଶ ରୂପ ଓ ରଙ୍ଗ ଦେଖିବାକୁ ମିଳେ । କିନ୍ତୁ ମନେହୁଏ ଓଡ଼ିଆ ନାରୀସୁଲଭ ପ୍ରବାଦ, ବଚନ, ଢଗ-ଢମାଳିରେ ଏହା ଅତିମାତ୍ରାରେ ପ୍ରକାଶ ପାଇଛି । ତଥାପି ,ଶିଷ୍ଟତା, ସଦ୍‌ଭାବ ଓ କଲ୍ୟାଣ ମନୁଷ୍ୟର ଜୀବନ ଓ ଚରିତ୍ରର ମୌଳିକ ବିଧି । ତାହାପ୍ରତି ବିଶ୍ୱାସ ଅନ୍ତର୍ହିତ ହୁଏ ନାହିଁ। ଏହି ବିଶ୍ୱାସର ପ୍ରେରଣା ଯେତେ ପରିମାଣରେ ଗଭୀର ,ମନୁଷ୍ୟର ଭଢ଼ଙ୍ଗ ଓ ଭଣ୍ଡାମି ବିଦ୍ରୂପ ମାଧ୍ୟମରେ ସେତେ ପରିମାଣରେ ପ୍ରବଳ ହୋଇଥାଏ ।

କେବଳ ପାରିବାରିକ ସମ୍ବନ୍ଧ ନୁହେଁ ,ଓଡ଼ିଆ ଘରେ ଘରେ ଓ ସାମାଜିକ ଜୀବନରେ ଏପରି ଦିଗନାହିଁ , ଯାହାଠାରୁ ଓଡ଼ିଆ ପ୍ରବାଦ,ବଚନ,ଢଗ-ଢମାଳିର ଉପକରଣ ଆହୃତ ହୋଇନାହିଁ ଏବଂ ଘରମଧରେ ଏପରି କୌଣସିବସ୍ତୁ ନାହିଁ ,ଯାହା ଉପେକ୍ଷିତ

ହୋଇଅଛି । ଛିଣ୍ଡା ଲୁଗାକାନି, ଛିଣ୍ଡା ମସିଣା, ଭଙ୍ଗାକୁଲା , ଡାଳ , ତାଟିଆ , ହାଣ୍ଡି ,ସରା, ପଲମ , କଳସୀ , ଥାଳି,ଶିଳ,ଶିଳପୁଆ , ଢେଙ୍କି , ଛୁଞ୍ଚି ,ଚାଲୁଣି , ଧାନଚାଉଳ ,ଭାତ,ଲୁଗା, ତେଲ ,ଲୁଣ ,ଶାକସବଜି,ମାଛ,ଘିଅ , ବଡ଼ି,ପିଠାପଣା , ଖଇ,କଦଳୀ , ମୁଢି , ଚୁଡ଼ା , ଲାଉ, ବୋଇତାଳୁ ,ପଣସ ,ତେନ୍ତୁଳି , ତାଳ , ଆମ୍ବ , ଆମ୍ବଡ଼ା , ଅଦା , ଗୁଆ , କଉଡ଼ି , ସାମୁକା , ଦା' ,କଟୁରୀ ,କୋଦାଳି , ହାଟବଜାର , ଢାକଢମକ , ଦେବଦେବୀ , ତୋଟା, ପୁନିଅପରବ, ଓଷାବ୍ରତ, ଯାନିଯାତ୍ରା, ଚାଷବାସ,କାଟିବାବାଟିବା , ଘରଦ୍ୱାର , ଚାଲିଚଳଣ,ବାଟଘାଟ , ନଈନାଳ , ତୁଠ , ପୋଖରୀ ଏପରିକି ଗୃହପାଳିତ ଗୋରୁ ମଇଁଷି ,ମେଣ୍ଢା, ଛେଳି , ହାତୀ , ଘୋଡ଼ା , କୁକୁର, ବିଲେଇ ଠାରୁ କାଉ , କୋଇଲି,ବଗ ,ହଂସ,ଛୁଚୁନ୍ଦ୍ରା , ମୂଷା , ସାପ , ବେଙ୍ଗ, କେଞ୍ଚୁଆ ,ପର୍ଯ୍ୟନ୍ତ ନିଖୁଣ ଭାବରେ ପ୍ରତିବିମ୍ବିତ ହୋଇ ବାସ୍ତବ ଭାବ ଓ ଭାଷାରେ ଶ୍ଳେଷ ଓ କୌତୁକ ,ବ୍ୟଙ୍ଗ ଓ ବିଦ୍ରୂପ ,ଜ୍ଞାନ ଓ କଟାକ୍ଷ , ନିରବିଚ୍ଛିନ୍ନ ଖୋରାକ ଯୋଗାଇଛି । ଏଗୁଡ଼ିକର ବିସ୍ତୃତ ଉଦାହରଣ ଏଠାରେ ପୁଣିଥରେ ଦେବା ସମ୍ଭବପର ନୁହେଁ । ପର୍ଯ୍ୟାପ୍ତ ପରିମାଣରେ ସଗୃହୀତ ପ୍ରବାଦ,ବଚନ,ଓ ଢଗ-ଢମାଳି ପ୍ରଭୃତି ଅ ଠାରୁ କ୍ଷ ପର୍ଯ୍ୟନ୍ତ ଅକ୍ଷର କ୍ରମରେ ଏହି ଗ୍ରନ୍ଥର ବିଭିନ୍ନ ଖଣ୍ଡରୁ ଏ ସବୁର ଦୃଷ୍ଟାନ୍ତ ମିଳିପାରିବ ।



# ସାରଳା ରତ୍ନଭଣ୍ଡାର ରସସାଗର (୨ୟ ଖଣ୍ଡ)
## ଅବତରଣିକାର ପରିଶିଷ୍ଟାଂଶ

**ଓଡ଼ିଆ ପ୍ରବାଦ ସଂଗ୍ରହର କାଳ ନିରୂପଣ :-**

ଢଗ ସମ୍ରାଟ ଗୋପାଳଚନ୍ଦ୍ର ପ୍ରହରାଜଙ୍କର ଓଡ଼ିଆ ଲୌକିକ ପଦ ବା ଢଗଢମାଳି ବଚନ (୧ମ ଭାଗ) ଅବତାରଣା ତା ୧-୧-୧୯୨୬ ରିଖରେ ଲେଖିଛନ୍ତି:-

> ୧୮୭୬ ସାଲରେ ଓଡ଼ିଶାର ଭୂତପୂର୍ବ କମିଶନର ସ୍ୱର୍ଗୀୟ ରେଭେନ୍‌ସା ସାହେବଙ୍କ ଆନୁକୁଲ୍ୟରେ ସ୍ୱର୍ଗୀୟ ପଣ୍ଡିତ ଶ୍ରୀ କପିଳେଶ୍ୱର ବିଦ୍ୟାଭୂଷଣ ନନ୍ଦଶର୍ମା ଗୁଡ଼ିଏ ଢଗ ସଂଗ୍ରହ କରି ପୁସ୍ତିକକାରରେ ପ୍ରକାଶ କରିଥିଲେ ।

କୁଞ୍ଜ ବିହାରୀ ଗ୍ରନ୍ଥାବଳୀ(ଅଷ୍ଟମ ଭାଗ)ର ''ଲୋକ ବାଣୀ ସଞ୍ଚୟନ'' (ପ୍ରଥମ ଭାଗ) ର ଆଦ୍ୟ ଲେଖା ''ଓଡ଼ିଆ ଢଗଢମାଳି ଏକ ଅଧ୍ୟୟନ'' ତା ୧-୧୦-୧୯୭୩ ରିଖରେ ଲୋକରତ୍ନ ଡ଼ଃ କୁଞ୍ଜବିହାରୀ ଦାଶ''ସଂଗ୍ରହର ଇତିହାସ'' ଶୀର୍ଷକରେ ଲେଖିଛନ୍ତି :-

> ଆଦ୍ୟ ଉଦ୍ୟୋକ୍ତାର ଗୌରବ ପଣ୍ଡିତ କପିଳେଶ୍ୱର ବିଦ୍ୟାଭୂଷଣଙ୍କର ପ୍ରାପ୍ୟ । ୧୮୭୬ ଖ୍ରୀଷ୍ଟାବ୍ଦରେ ଓଡ଼ିଶାର ତତ୍କାଳୀନ କମିଶନର ରେଭେନ୍‌ସା ସହେବଙ୍କ ଆନୁକୂଲ୍ୟରେ ସେ କେତେକ ଢଗଢମାଳି ସଂଗ୍ରହ କରି ପ୍ରକାଶ କରିଥିଲେ ।

'' ସାରଳା ରତ୍ନଭଣ୍ଡାର ରସସାଗର''(୧ମ ଖଣ୍ଡ) ଗ୍ରନ୍ଥର ଅବତରଣିକାର ଦ୍ୱିତୀୟାର୍ଦ୍ଧ ୨୨ ପୃଷ୍ଠାରେ ଓଡ଼ିଆ ପ୍ରବାଦ ସଂଗ୍ରହ କାଳ ସମ୍ପର୍କରେ ଢଗ ସମ୍ରାଟ ଓ ଲୋକରତ୍ନଙ୍କର ନିର୍ଣ୍ଣୟକୁ ଭିତ୍ତିକରି ସମ୍ୟକ ସୂଚନା ଦିଆଯାଇଥିଲା । '' ସାରଳା ରତ୍ନ ଭଣ୍ଡାର ରସସାଗର'' (୨ୟ ଖଣ୍ଡ) ଗ୍ରନ୍ଥର ଅବତରଣିକାରେ ୨୭ ପୃଷ୍ଠାରୁ ୩୩ ପୃଷ୍ଠା ପର୍ଯ୍ୟନ୍ତ ଓଡ଼ିଆ ଓ ପ୍ରତିବେଶୀ ବଙ୍ଗଳା ପ୍ରବାଦ, ବଚନ ପ୍ରଭୃତିର ଐତିହ୍ୟ ସମ୍ପର୍କରେ

ସଂଗୃହୀତ ତଥ୍ୟ ଉପସ୍ଥାପିତ କରାଯାଇଅଛି । କାରଣ ଓଡ଼ିଆ ଭାଷା ପ୍ରତିବେଶୀ ବଙ୍ଗଳା ଭାଷା ଏବଂ ଅନ୍ୟ ପ୍ରାନ୍ତୀୟ ଭାଷାରୁ ପ୍ରାଚୀନ ବୋଲି ପରିଗଣିତ ହେଲେ ମଧ୍ୟ ପ୍ରବାଦ,ବଚନ ସମ୍ପର୍କୀୟ ଗବେଷଣାରେ ଓଡ଼ିଆ ଅନଗ୍ରସର । ଏହାର ପ୍ରଧାନ ପ୍ରତିବନ୍ଧକ ହେଉଛି ପର୍ଯ୍ୟାପ୍ତ ପରିମାଣରେ ଓଡ଼ିଆ ପ୍ରବାଦ,ବଚନ ପ୍ରଭୃତି ସଂଗୃହୀତ ହୋଇପାରିନାହିଁ । ଏ ସମ୍ପର୍କରେ ସମାନ୍ୟତମ ଚର୍ଚ୍ଚା ମଧ୍ୟ ହୋଇନାହିଁ ବୋଲି କହିଲେ ଚଳେ । ଦୁଇ ହଜାର ବର୍ଷ ପୂର୍ବର ବହୁ ଓଡ଼ିଆ ପ୍ରବାଦ ,ବଚନ ଏବେବି ଅନାବିଷ୍କୃତ । ପ୍ରତିବେଶୀ ରାଜ୍ୟମାନେ ଓଡ଼ିଆ ପ୍ରବାଦ .ବଚନକୁ ନିଜ ନିଜ ଭାଷାରେ ଭାଷାନ୍ତରିତ କରି ସେମାନଙ୍କର ସାରସ୍ୱତ ଭଣ୍ଡାରକୁ ସମୃଦ୍ଧ କରିଛନ୍ତି ଓ କରୁଛନ୍ତି । ଅବଶ୍ୟ ଏହା ଓଡ଼ିଆଙ୍କ ପାଇଁ ଆନନ୍ଦର କଥା । ଏଥିପାଇଁ ସେମାନେ ଅଭିନନ୍ଦନୀୟ । ତେବେ ଓଡ଼ିଆ ପ୍ରବାଦ, ବଚନଗୁଡ଼ିକ ଯେଉଁମାନଙ୍କ ଦ୍ୱାରା ଭାଷାନ୍ତରିତ ହୋଇଛି ବା ହେଉଛି ,ତାହା ସେମାନଙ୍କ ଦ୍ୱାରା ସ୍ୱୀକୃତ ହେବା ଆବଶ୍ୟକ । ଏ ସମ୍ବନ୍ଧରେ ଆମ୍ଭର ଅନୁସନ୍ଧାନ ଅବ୍ୟାହତ ରହିଛି । ଆମର ସଂଗ୍ରାହକ, ସମାଲୋଚକ, ଗବେଷକମାନେ ଏକ୍ଷେତ୍ରରେ ନୂଆ ନୂଆ ତଥ୍ୟ ସଂଗ୍ରହ କଲେ ଭାରତୀୟ ସାହିତ୍ୟରେ ଓଡ଼ିଆ ଲୋକସାହିତ୍ୟର ବୈଶିଷ୍ଟ୍ୟ ପ୍ରତିପାଦିତ ହୋଇପାରନ୍ତା ।

ବହୁ ଚର୍ଚ୍ଚିତ ଗୋରା ସାହେବ ପାଦ୍ରୀ ଜେମ୍‌ସ୍ ଲଙ୍ଗ (J.Long ) ଙ୍କ ସମ୍ପର୍କରେ (ସା.ର.ଭ. ର.ସା. ,୨ୟ ଖଣ୍ଡ )ଗ୍ରନ୍ଥରେ ବିଶଦ ବିବରଣୀ ଦିଆଯାଇଛି । ଜେମସ୍ ଲଙ୍ଗଙ୍କ ସଙ୍କଳିତ ପ୍ରବାଦମାଳା ୨ୟ ଖଣ୍ଡ ଗ୍ରନ୍ଥରେ 'ଏସିଆ' ଓ 'ଇଉରୋପ' ର ବିଭିନ୍ନ ପ୍ରଧାନ ଭାଷାମାନଙ୍କରୁ ସଂଗୃହୀତ ପ୍ରବାଦଗୁଡ଼ିକ ରଙ୍ଗଲାଲ ବନ୍ଦୋପାଧ୍ୟାୟଙ୍କ ଦ୍ୱାରା ବଙ୍ଗଳାରେ ଅନୁବାଦିତ ହୋଇଥିବାର ଦର୍ଶାଯାଇଛି ।

ମାତ୍ର ଏହି (ସା.ର.ଭ.ରସା. ,୨ୟଖଣ୍ଡ )ଗ୍ରନ୍ଥ ର ମୁଦ୍ରଣ ସମ୍ପୂର୍ଣ୍ଣ ହେଲାପରେ ଯେଉଁ ତଥ୍ୟମାନ ସଂଗୃହୀତ ହେଲା; ତହିଁରେ ଦେଶ ବିଦେଶରେ ଓଡ଼ିଆ ଭାଷା ଏସିଆ ମହାଦେଶର ଏକ ପ୍ରଧାନ ଭାଷା ଭାବରେ ପରିଗଣିତ ହେବାର ଅଧିକ ସୂଚନା ମିଳିଲା ଏବଂ ଓଡ଼ିଆ ପ୍ରବାଦ ସଙ୍କଳନର ଅୟମାରମ୍ଭ ସ୍ୱୟଂ ପାଦ୍ରୀ ଲଙ୍ଗ ସାହେବଙ୍କ ଦ୍ୱାରା ଖ୍ରୀ ୧୮୪୪-୪୫ ମସିହାରୁ ହୋଇଥିବାର ଦଲିଲ ମଧ୍ୟ ମିଳିଲା । ଏହିସବୁ ପ୍ରମାଣପତ୍ର ଗୁଡ଼ିକ ନିମ୍ନରେ ପ୍ରଦତ୍ତ ହେଲା ।

ଜ୍ଞାତବ୍ୟ ତଥ୍ୟଟି ହେଉଛି - ଧର୍ମଯାଜକ ଜେମସ୍ ଲଙ୍ଗ ଯଥାର୍ଥରେ ପ୍ରବାଦପ୍ରେମୀ ଥିଲେ । ତାଙ୍କ ଜୀବନର ଶେଷ ଦିନଗୁଡ଼ିକ ସାଂସ୍କୃତିକ କାର୍ଯ୍ୟକ୍ରମରେ ଅତିବାହିତ ହୋଇଥିଲା । ଲଣ୍ଡନର " ଟ୍ରୁବନାର ଓରିୟେଣ୍ଟାଲ ସିରିଜ" ( Trubner Oriental Series)ନାମକ ଗ୍ରନ୍ଥର ଗୋଟିଏ ଖଣ୍ଡରେ ତାଙ୍କ ଦ୍ୱାରା ଇଂରାଜୀରେ ଲିଖିତ ପ୍ରବାଦ ଓ ତତ୍‌ସମ୍ପର୍କୀୟ ପ୍ରବନ୍ଧ

ପ୍ରକାଶିତ ହୋଇଥିଲା । ଏହାହିଁ ତାଙ୍କର ସର୍ବଶେଷ ପ୍ରବାଦ ସଂଗ୍ରହ ଓ ତତ୍‌ସମ୍ପର୍କୀୟ ଲେଖାବୋଲି କୁହାଯାଏ । ଏହି ଗ୍ରନ୍ଥର ଆଖ୍ୟାପତ୍ର ରେ ନିମ୍ନ ଲିଖିତ ବିବରଣୀଟି ମୁଦ୍ରିତ ହୋଇଥିଲା ଯଥା:-

Eastern Proverbs and Emblems illustrating
old truths -by Rev. J.Long, Member of the
Bengal Asiatic Soceity,F.R.G.S., London,
Trubner & Co, Ludgate Hill, 1881
[All Rights Reserved]

'ଟ୍ରୁବନର ଓରିୟେଣ୍ଟାଲ ସିରିଜ' ଗ୍ରନ୍ଥର ଗୋଟିଏ ଭୂମିକା ଜେମସ୍ ଲଙ୍ଗ ନିଜେ ଲେଖିଥିଲେ । ତାଙ୍କର ରଚନାଟି ତଥ୍ୟପୂର୍ଣ୍ଣ । ତେଣୁ ସେହି ଭୂମିକାଟିକୁ ନିମ୍ନରେ ଯଥାସ୍ଥିତ ରୂପରେ ଉଦ୍ଧୃତ କରାଗଲା ।

## PREFACE

The materials which this title work has been compiled are scattered over more than 1000 volumes ,some very rare. and to be consulted only in libraries in India ,Russia and other parts of the Continents,or in the British Museum . The field has been so wide and the materials so immense ,that the work of the condensation has been almost as difficult as that of collecting ,many statements are ,therefore ,simply suggestive amplification would require several volumes .The Author has spared neither time nor labour in collecting and classifying the treasures drawn from the rich and new store house of Eastern Emblems and Proverbs ,with the view of helping those who have neither the means of collecting a large reference literary nor the time to spend in the search .

This work, begun a quarter of a century ago in the jungles of India for the instrucion of peasants and women ,is designed to afford some help to the following classes -

Orientalist,Lovers of Folk Lore .Teachers ,and Preachers . The former desire to open a visit in to the recesses of Eastern thought of moral and religious subjects, especially in relation to women and the masses ,the latter are anxious to fix in the school ,the pulpit ,or the press great spiritual truths by means of emblems and illustrations drawn from the depth of the popular mind . Those classes may ,in the pithy and pointed illustrations of Proverbs , find a quarry out of which to draw some of their materials.

Orientalists are at last recognising the truth that proverbs are as deserving of their research as coins and inscriptions ,and that whereas the latter refer chiefly to kings and the upper classes . Proverbs throw a light on the dark recesses of social life, on archaisms,old customs .history and ethnology Even the Zenana .barred to the stranger ,opens its portals to let man have a peep in and spy out the thoughts and feelings of women, who, in the East ,depicts her feelings and thoughts in Probverbs and racy sayings .

The Proverbs selected in this book, though limited to those seving to illustrate moral and religious subjects ,show how widely scattered nations under similar circumstances have come to similar conclusions, many of these resemblances arise from the identity of human nature ,or are a portion of the spiritual heritage which men brought away with them from the cradle of the human race and improved on by subsequent communication, by shewing the acute observation and sharp moral sensibility of the masses ,they prove God has not left himself without witness in the human breast ; they ,therefore form , a basis for those who are labouring to bridge over ,the gulf between Eastern and Wesern thought .

The nineteenth century is pre-eminently distinguished for the attention it gives to elevating the masses by knowledge conveyed to them through the acceptable medium of parable and illustration . On this one point East and West concur - that ,to tell on the minds of millions ,we must make full use of illustrations from Nature and picturing by words .Budhist preachers and Sufy teacers alike hoist the flag of Emblems,Parables and Proverbs . Even the Devine Founder of Christianity Himself adopted the same method ,of "withiout a parable spake He not to the people "

The modern missionary in the East, Spurgeon ,Trench and Ryle in England ,bear ,in their preaching and writings ,testimony equally with the Budhist and Biblical writing to the value of the Emblem, Parable and Proverb. The following statement of Scar- borough in his "Chinese Proverbs" echoes the same sentiment from far-off Kathay :

"Used as quotations ,the value of proverbs in China is immense . So used in conversation, they add a piquancy and a flavour which greatly delights the Chinese ,and makes mutual intercourse more easy and agreeable . But it is to the missionary that the value of an extensive acquiantance with Chinese probverbs is of the highest importance . Personal experience ,aswellas repeated testimony of others ,makes us bold to assert that even a limited knowledge of Chinese proverbs is to him of daily and inestimable value .

A proverb will often serve to rouse the flagging attention of a congregation ,or to arrest it at the commencement of a discourse . A Proverb will after serve to produce a smile of good nature in an apparently ill tempered audience,and so to call forth a kindly feeling which did not seem before to exist .

And very often a proverb aptly quoted will serve to convey truth in the most terse and striking manner .so obviating the necessity for detached and lengthy argument ,whilst they fix at a stroke the idea you are wishing to convey " .

The Proverbs in this book have been selected for the illustrations they contain . Proverbs are not the productions of the bookworm or midnight oil .Proverbs were before books - they come from the great books of Nature and common sense- from powers of observation,not blunted by books -cream ; hence among the Proverbs in this book ,though principally , Eastern; there are very few that are not intelligible to the European mind, like the Proverbs of Solomon ,the Psalm , Bunyan's, "Pilgrims Progres" and the "Arabian Nights", they speak in a language "understandable by common people"

Many Russian Proverbs are given ,which were colleced by the Author in Moscow ,but the Russians are a semi oriental people .and their proverbs have an Eastern ring about them .

While illiustrations by Emblems and Proverbs are indispensable as media for conveying instruction in the East .they are highly valued in Europe also. The following observations of Archbishop Trench will find a response with all those who have aimed at winning the attention of the working classes ,the peasantry ,and "the Arabs of Society" .

Any one who by after invesigation has sought to discover how much our rustic bearers carry away ,even from sermons to which they have attentively listened .will find that it is hardly ever the course or tenor of the argument supposing the discourse to have contained such ; but if anything has been uttered ,as it used oftern to be by the best Putritan preachers .tersely .pointedly, epigrammatically ,this will have stayed by

them ,while all rest has passed away . Great preachers to the people ,such as have found their way to the universal heart of their fellow have ever been great employers of proverbs . The Author will feel greatly obliged for any corrections or addition to this work forwarded for him to the Publishers .

ଏହି ମୁଖବନ୍ଧର ଅନ୍ୟାନ୍ୟ ବିଷୟବସ୍ତୁମାନଙ୍କ ମଧ୍ୟରୁ ୨ୟ ଅନୁଚ୍ଛେଦରେ ଜେମସ୍ ଲଙ୍ଗଙ୍କ ଦ୍ୱାରା ଭାରତୀୟ ପ୍ରବାଦ ସଂଗ୍ରହ ଆରମ୍ଭର ସମୟ "୨୫ ବର୍ଷରୁ ଉର୍ଦ୍ଧ୍ୱ" ବୋଲି ଦର୍ଶାଯାଇଛି । ଓଡ଼ିଆ ପ୍ରବାଦ ସଂଗ୍ରହ ସମ୍ପର୍କରେ ଏହା ଅତ୍ୟନ୍ତ ତାତ୍ପର୍ଯ୍ୟ ପୂର୍ଣ୍ଣ ,କାରଣ ଏଥିରୁ ଓଡ଼ିଆ ପ୍ରବାଦ ସଂଗ୍ରହର ସମୟ ୧୮୪୪-୪୫ ମସିହା ବୋଲି ନିର୍ଣ୍ଣିତ ହେଉଛି ।

ନଭେମ୍ବର ୧୫ , ୧୮୬୯ ରେ ପ୍ରକାଶିତ ରେଭେରେଣ୍ଡ ଜେମସ୍ ଲଙ୍ଗଙ୍କ ୨ୟ ଖଣ୍ଡ ପ୍ରବାଦମାଳାରେ ୧୭ଟି ଦେଶ ବିଦେଶର ବିଭିନ୍ନ ଭାଷାର ମୋଟ ୧୧୭୭ ଟି ପ୍ରବାଦ ସଙ୍କଳିତ୍ ହୋଇଛି । ସେଗୁଡ଼ିକ ହେଲା ଜର୍ମାନୀୟ, ଇଟାଲୀୟ, ସ୍ପେନୀୟ, ପର୍ତ୍ତୁଗୀଜ, ଓଲନ୍ଦାଜୀ, ଦିନାମାର, ଫରାସୀ, ଚୀନଦେଶୀୟ ,ସର୍ବିୟା ଦେଶୀୟ (ତୁର୍କୀଦେଶ ଅନ୍ତର୍ଗତ) ,ଋଷୀୟ ,ମାଲୟାଲମ୍ ତାମିଲ (ଅର୍ଥାତ୍ ଦ୍ରାବିଡ଼ଦେଶୀୟ), ପଞ୍ଜାବୀ, ମହାରାଷ୍ଟ୍ରୀୟ, ନୀଳଗିରିର (ଦାକ୍ଷିଣାତ୍ୟ)ଆଦିମ ଅଧିବାସୀ-ବାଦାଗା ଜାତୀୟ ,ହିନ୍ଦୀ ଓ ଉତ୍କଳୀୟ ଅର୍ଥାତ୍ ଓଡ଼ିଆ । ତନ୍ମଧ୍ୟରେ ଓଡ଼ିଆ ପ୍ରବାଦ ସଂଖ୍ୟା ହେଉଛି ୮୨ ଟି ।

ଓଡ଼ିଆ ଭାଷା ଓ ଅନ୍ୟାନ୍ୟ ଭାଷାର ପ୍ରବାଦଗୁଡ଼ିକ ରଙ୍ଗଲାଲ ବନ୍ଦୋପାଧ୍ୟାୟଙ୍କ ଦ୍ୱାରା ବଙ୍ଗଳା ଭାଷାରେ ଭାଷାନ୍ତରିତ ହୋଇଥିଲା । ଏକଥା ପାଦ୍ରୀ ସାହେବ ସ୍ୱହସ୍ତରେ ତାଙ୍କର ସଙ୍କଳିତ ପ୍ରବାଦମାଳା ୨ୟ ଖଣ୍ଡ ଗ୍ରନ୍ଥର ମୁଖବନ୍ଧରେ ( Preface) ଲେଖିଛନ୍ତି । ଏହାର ସୂଚନା (ସା. ର. ଭ.ର.ସା. ,୨ୟ ଖଣ୍ଡ )ଗ୍ରନ୍ଥର ୨୮ ପୃଷ୍ଠାରେ ଦର୍ଶାଯାଇଛି ।

ସେ ପୁଣି ଲେଖିଛନ୍ତି -ପୃଥିବୀର ଅନ୍ୟାନ୍ୟ ପ୍ରାନ୍ତର କୃଷକ, ଗାଉଁଲି ଲୋକ ଓ ନାରୀମାନଙ୍କର ଗଭୀର ଜ୍ଞାନଗର୍ଭକ ରସିକତାକୁ ବଙ୍ଗବାସୀମାନଙ୍କ ମଧ୍ୟରେ ପରିଚିତ ଓ ପ୍ରଚଳିତ କରାଇବା ପାଇଁ ବଙ୍ଗାଳୀମାନେ ମନଯୋଗ ସହକାରେ ଅନୁଧ୍ୟାନ କରନ୍ତୁ ,ଏହାହିଁ ଥିଲା ତାଙ୍କର ଉଦ୍ଦେଶ୍ୟ ।

ଏହି ପ୍ରବାଦ ସଂଗ୍ରହର ଉପରୋକ୍ତ କାଳକୁ ବିଚାରକୁ ନେଲେ ଓଡ଼ିଆ ପ୍ରବାଦ ତଥା ଓଡ଼ିଆ ଭାଷାର ଐତିହ୍ୟ ସମ୍ପର୍କରେ ଏହା ଯେ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ଏବଂ ଏକ ପ୍ରତ୍ୟକ୍ଷ ଦଲିଲ ଏଥିରେ ସନ୍ଦେହ ନାହିଁ ।ତେଣୁ ଜେମସ୍ ଲଙ୍ଗଙ୍କ ମୁଖବନ୍ଧଟିର ଅବିକଳ ନକଲ ପର ପୃଷ୍ଠାରେ ମୁଦ୍ରିତ ହେଲା --

## PREFACE

The following contain a free translation into Bengali by Babu Ranglal Banerjee of Proverbs selected by me from the German, Italian ,Spanish ,Poruguese ,Dutch, Danish. French,Badagar,Malayliam,Tamil,Chinese,Panjabi,Maharatta, Hindi,Orissa and Russian language .

The object is to introduce to the notice of the Bengali people the wit wisdom of Peasants and women in other parts of the world ,the Russian Proverbs 200 in member though last in the series will not be found the least in their wit and keen sarcasm .

**Calacutta** **J .Long**
**November 15,1869**

ପାଦ୍ରୀ ଜେମସ୍ ଲଙ୍ଗଙ୍କ ସଂଗୃହୀତ ୮୨ ଟି ଓଡ଼ିଆ ପ୍ରବାଦ ମଧ୍ୟରୁ ନମୁନା ସ୍ୱରୂପ ତୁଳନାତ୍ମକ ଭାବରେ ନିମ୍ନରେ କେତୋଟି ପ୍ରବାଦ ପ୍ରଦତ୍ତ ହେଲା -

| ଓଡ଼ିଆ ପ୍ରବାଦ | ବଙ୍ଗଳାର ଭାଷାନ୍ତର |
|---|---|
| * ଅକର୍ମା ଯେଣେ ଯାଏ ,<br>ଗମ୍ଭୀରାଲିଙ୍ଗ ଛାଡ଼ି ପଳାଏ ।<br>(ଯାହାର ଭାଗ୍ୟ ମନ୍ଦ ଅର୍ଥାତ୍ ଅକର୍ମା ତା' ପ୍ରତି ଦେବତା ପ୍ରସନ୍ନ ହୁଅନ୍ତି ନାହିଁ । କ୍ର:ନମ୍ବର ୪୦, ପୃଷ୍ଠା୫୫,ସା.ର.ଭ.ର.ସା ,୨ୟ) | *ଅକର୍ମା ମାନୁଷଯେଦିକେ ଯାୟ ।<br>ଦେବ ଦେବୀ ତଥା ହୈତେ ପାଲାୟ ॥ |
| * ଦଉବଦଉଡ଼ି ମଣିଷ ଗାଈ<br>ଯେଣିକି ଟାଣଇ ତେଣିକି ଯାଇ | * ଭଗବତ୍ ଇଚ୍ଛା ଡେରି ଗାଭୀନର ଚୟ ।<br>ଯେ ଦିଗେତେ ଟାନେ ସେଇଦିଗେ ଯେତେ ହୟ ॥ |
| * ମନକୁ ପଥର କରିବ ଯିଏ ,<br>ପୀରତି ପଥର ପଥିକ ସିଏ । | * ମନେରେ ପାଥର କରିବେଯେଇ ।<br>ପିରୀତି ପଥେର ପଥିକ ସେଇ ॥ |
| * ଯାହା ନ ଦେଖିବ ବେନି ନୟନେ,<br>ପତତେ ନଯିବ ଗୁରୁ ବଚନେ । | * ଯାହା ନାଇ ଦେଖିୟାଛ ଆପନାନୟନେ ।<br>ଗୁରୁ ବାକ୍ୟ ହଇଲେ ଓ ମେନୋନାକୋ ମନେ ॥ |

* ଯାହା ପୁଅକୁ ସାପ କାମୁଡ଼େ ,
ତା ମା ପାଳବିଣ୍ଡା ଦଉଡ଼ି ଦେଖିଲେ ଡ଼ରେ ।
* ଷୀରରେ ଧୋଇଲେ
ଖଣ୍ଡରେ ମୋହିଲେ ନିମ୍ବକି ମଧୁର ହୋଇବ ।

* ବାହାଘର ଦିନ ବାଇଗଣ ରୁଆ
* ନଣବତିକି ଦିଅଁଙ୍କ ରାଣ ।
( ଅର୍ଥାତ୍- ଦିଅଁଙ୍କ ଦ୍ୱାହିଦେଇ ଫଳ ନାହିଁ ।)
* ଶିକାର ବେଳେ କୁକୁର ହଗି ବସେ ।
* ପାଗ ବାନ୍ଧୁବାନ୍ଧୁ କଚେରୀ ବରଖାସ୍ତ ।
* ଘର ପଛେ ପୋଡୁ ମୂଷା ମରୁ ।
* ରାଣ୍ଡର କିଆଁ ଆଙ୍ଗିଷ ଚିନ୍ତା ।
* ଚାଲି ନଜାଣି ବାଟର ଦୋଷ ।
* ଔଷଧ ନ ପିଇ ତାଟିଆ କାମୁଡ଼ିବା ।
* ଛାଣର ପ୍ରସବ ଦେଖି ବଳଦ ଅସ୍ଥିର ।
* ଗାଁ କନିଆ ଶିଙ୍ଘାଣୀ ନାକୀ ।
* ଦୂର ପରବତ ସୁନ୍ଦର ,
ଦୂର ବନ୍ଧୁ ସୁନ୍ଦର ।
* ନାହିଁ ମାମୁଁ ଠାରୁ କଣା ମାମୁଁ ଭଲ ।
* ଆଲୋ ଗୋଦରୀ,
କଥା କହୁଥା ଗୋଦର ଗୋଡ଼କୁ ଅନେଇ ।
* ଘର ପୋଡ଼ିରୁ କୁଟାଖିଏ ମିଳିବା ।
* କାଣୀ ବିଲେଇକୁ କୁଜି ଅସରପା ।
* ବାଉରୀ ସାଉରେ କଟାସ ମହାବଳ ।
* ଅଳପ ଆୟୀ ବହୁତ ବ୍ୟୟୀ ,
ଛୋଟ ପଣତ ପରାଏ ସେହି ।
* ଅଳପ ଡେଣ୍ଡା ,ମାଇପ ଖେଣ୍ଡା
ମଠୁଆ ବଳଦ ଯା'ର ।

* ସାପେ ଦଂଶିଯାଛେ ନନ୍ଦନେ ଯାର ।
କୁପେର ଦଡ଼ିତେ ଆତଙ୍କ ତାର ॥
* ହା ବିଧାତ ! ଏମନ କି କଖନ ସମ୍ଭବେ ॥
ମଧୁରସ ଦିଯେ ,ନିତ୍ୟ ଘରଷିଯେ ,
ନିମ କି ମଧୁର ହବେ ॥
* ବିୟେର ବେଲା ବେଗୁନ ଆହ୍ୱାନ ॥
* ନଦୀ ବାଡ଼ିଲେ ଠାକୁରେର ଦିବ୍ୟ ।
(ଅର୍ଥାତ୍- ଦିବ୍ୟ ଦାନେ କୋନ ଫଲ ନାଇ ।)
* ଶିକାରେର ସମୟ କୁକୁର ବାହ୍ୟେ ବସିଲ ॥
* ପାଗଡ଼ୀ ବାନ୍ତେ ବାନ୍ତେ କାଛାରିବରଖାସ୍ତା
* ପୋଡ଼େ ଘର ପୁଡୁକ୍ । ଇନ୍ଦୁର ମାତ୍ର ମୁରୁକ୍ ॥
* ଗାଁଣ୍ଡେର କେନ ମାଛେର ଚିନ୍ତା ॥
* ଚଲ୍‌ତେ ନା ଜାନେ ପଥେର ଦୋଷ ॥
* ଔଷଧ ନା ଖେୟେ ଖଲେ କାମଡ଼ ॥
* ଗେୟେର ପ୍ରସବ ଦେଖେ ବଳଦ ଅସ୍ଥିର ॥
* ଗାଁ ଯେର ମେୟେ ଶିକ୍‌ନୀ ନାକୀ ॥
* ଦୂରସ୍ଥ ପର୍ବତ ସୁନ୍ଦର ।
ଦୂରସ୍ଥ ବନ୍ଧୁ ସୁନ୍ଦର ॥
* ନାଇ ମାମାର ଚେୟେ କାଣା ମାମା ଭାଲ ॥
* ଓଲୋ ଗୋଦୀ
ଗୋଦର ପାନେ ଚେୟେ କଥା କ ॥
* ଘରପୋଡ଼ାର ଜିନିସ ଯା ପାଓ ତାଇ ଭାଲ ॥
* ମେନୀ ବିଡ଼ାଲ ଆର୍ଶୋଲାର ଉପର ବୀର ॥
* ବାଉରୀ ପଡ଼ାୟେ କଟାସ ମହାବଳ ॥
* ଅଳ୍ପଆୟୀ,ବହୁବ୍ୟୟୀ,ହେନ ମାନବେର ।
ଖାଟୋ ଆଁଚଲେର ଦଶା,ନାର ଦିତେ ଫେର ॥
* ଅଳ୍ପ କଥାୟ ଯେ ହୟ ଠେଁଟା ।
ଛାୟାରେ ଯାତନା ଦେୟ ଯେ ବେଟା ।

ଯମଘରେ ଯାଇ କି ଫଳ ପାଇବ ?
ନିଉତି ମରଣ ତାର ।

କୁଢ଼େ ଗୋରୁ ଘରେ ଦ୍ୱାଗର ପେଟା ।
ଯମ ଘରେ କେନ ଯାଇବେ ସେଟା ।
ନିତି ନିତି ଘରେ ମରଣ ଲେଠା ।।

* ଥନ ଶୁଖିଲେ କି କରିବ ମାଆ ?
ନଈ ଶୁଖିଲେ କି କରିବ ନାଆ ।

* ଦୁଧ ଘଟିଲେ ମା ।
ନଦୀ ଘଟିଲେ ନା ।।

* ଖାଲ ବିଲ ଚାଷ ,ଖଣ୍ଡ ଖିରୀ ଗ୍ରାସ
ଖଟିଥିବ ଗୁଣଚିହ୍ନା ନରପତି ପାଶ
(ସଖୀ ଗୋ ! ଭଲ ଏ ।)

* ଖାଲ ଜମି ଚାସ । କ୍ଷୀର ଖଣ୍ଡ ଗ୍ରାସ ।
ଖାଟୋ ବାର ମାସ ।
ଖାତିର ଯେ କରେ ହେନ ଖାମିନ୍ଦେର ପାଶ ।।

* ମନୁଆ ମାତାଲ ମାତଙ୍ଗ ତିନିଙ୍କୁ
,ସର୍ବଦା ବାନ୍ଧି ରଖିବ ଏମାନଙ୍କୁ ।

* ମାନ ସ ମାତାଲ ମାତଙ୍ଗ ପ୍ରାୟ ।
ସତତ ବନ୍ଧନେ ରାଖିବେ ତାୟ ।।

* କାଳୀ (କାଣୀ) ଗାଈର ଭିନେ ଗୋଠ ।

* କାନା ଗେୟେର ଭିନ୍ନ ଗୋଠ ।।

ଜେମସ୍ ଲଙ୍ଗଙ୍କ ସଂଗୃହୀତ ବିଭିନ୍ନ ଦେଶ ବିଦେଶର ପ୍ରବାଦ ,ବଚନଗୁଡ଼ିକର ଓଡ଼ିଆ ଭାଷାନ୍ତର ଏହି ଗ୍ରନ୍ଥର ଅନ୍ୟ ଖଣ୍ଡ ମାନଙ୍କରେ ସନ୍ନିବେଶିତ ହେବ। ଅନ୍ୟ ଭାଷାଭାଷୀଙ୍କ ରସିକତାକୁ ଓଡ଼ିଆମାନେ ଗ୍ରହଣ କରନ୍ତୁ । ଓଡ଼ିଆ ସାରସ୍ୱତ ଭଣ୍ଡାର ଅସରନ୍ତି ରସ-ରତ୍ନରେ ପରିପୂର୍ଣ୍ଣ ହେଉ । ଉପରୋକ୍ତ ତଥ୍ୟ ଓ ପର୍ଯ୍ୟାଲୋଚନାରୁ ଆମ୍ଭେ ଏଇ ସିଦ୍ଧାନ୍ତରେ ଉପନୀତ ହେଲୁ ଯେ -

ଓଡ଼ିଆ ପ୍ରବାଦ ସଂଗ୍ରହ କାର୍ଯ୍ୟ ଧର୍ମଯାଜକ ଜେମସ୍ ଲଙ୍ଗଙ୍କ ଦ୍ୱାରା ଖ୍ରୀ ୧୮୪୪-୪୫ ରୁ ଆରମ୍ଭ ହୋଇଥିଲା ଏବଂ ତାଙ୍କ ଦ୍ୱାରା ସଂଗୃହୀତ ଓଡ଼ିଆ ପ୍ରବାଦ ବଙ୍ଗଳାରେ ଭାଷାନ୍ତର ହୋଇ ଖ୍ରୀ୧୮୬୯ ପ୍ରକାଶିତ ହୋଇଥିଲା ।

ଏହି ସିଦ୍ଧାନ୍ତ ଅନୁଯାୟୀ ଲୋକରତ୍ନ ଡ଼ଃ କୁଞ୍ଜବିହାରୀ ଦାଶଙ୍କର ପ୍ରବାଦ ସଂଗ୍ରହ ଇତିହାସରେ **ଆଦ୍ୟ ଉଦ୍ୟୋକ୍ତାର ଗୌରବ ପଣ୍ଡିତ କପିଳେଶ୍ୱରବିଦ୍ୟା ଭୂଷଣଙ୍କର ପ୍ରାପ୍ୟ** ମନ୍ତବ୍ୟକୁ ଆମ୍ଭେ ବିନମ୍ର ସହକାରେ ଖଣ୍ଡନ କରିବା ସଙ୍ଗେ ସଙ୍ଗେ ଧର୍ମଯାଜକ ଜେମସ୍ ଲଙ୍ଗଙ୍କୁ ସେଇ କୃତିତ୍ୱର ଗୌରବରେ ଅଧିଷ୍ଠିତ କରିବା ପାଇଁ ଓଡ଼ିଆ ସାରସ୍ୱତ ସମାଜକୁ ନିବେଦନ କରୁଛୁ ।

ସେହିପରି ଗୋପାଳଚନ୍ଦ୍ର ପ୍ରହରାଜଙ୍କର (ଓ .ଲୌ .ପଦ ବା ତଗଡମାଳି

ବଚନ , ୧ମ ଭାଗ) ଗ୍ରନ୍ଥ ଅବତାରଣା ଏବଂ ଆମ୍ଭ ଦ୍ୱାରା ସଙ୍କଳିତ (ସା.ର.ଭ.ର. ସା. , ୧ମ ଖଣ୍ଡ) ଗ୍ରନ୍ଥର ଦ୍ୱିତୀୟାର୍ଦ୍ଧ ଅବତରଣିକାରେ ପଣ୍ଡିତ କପିଳେଶ୍ୱର ବିଦ୍ୟାଭୂଷଣ ନନ୍ଦଶର୍ମାଙ୍କ ଦ୍ୱାରା ସଂଗୃହୀତ ପ୍ରବାଦ ୧୮୭୬ ମସିହାରେ ପ୍ରକାଶିତ ପୁସ୍ତକ ପାଇଁ ପରୋକ୍ଷ ଭାବରେ ତାଙ୍କୁ ସର୍ବପ୍ରଥମ ଓଡ଼ିଆ ପ୍ରବାଦ ସଂଗ୍ରାହକ ବୋଲି ଦର୍ଶାଯାଇ ମାନ୍ୟତା ଦିଆଯାଇଛି । ଏପରି ପରୋକ୍ଷ ସୂଚନା ମଧ୍ୟ ଗ୍ରହଣୀୟ ନୁହେଁ ବୋଲି ବିନମ୍ର ସହକାରେ ଘୋଷଣା କରୁଛି ।

ସେତେବେଳେ ପାଦ୍ରୀ ସାହେବ ଭାରତୀୟ ଭାଷାମାନଙ୍କ ମଧ୍ୟରେ ଉତ୍କଳୀୟ ଭାଷା ଓଡ଼ିଆ ଯେ ଏକ ଅଗ୍ରଣୀ ଭାଷା , ତାହା ତାଙ୍କର ହୃଦବୋଧ ହୋଇଥିବାରୁ ସେ ସମ୍ମାନର ସହିତ ଓଡ଼ିଆ ଭାଷାର ପ୍ରବାଦ , ବଚନ ମାନ ସଂଗ୍ରହ କରିଛନ୍ତି (ସା..ର.ଭ.ର.ସା. , ୨ୟ ଖଣ୍ଡ ଅବତରଣିକା ଦ୍ରଷ୍ଟବ୍ୟ)

ପୁଣି ଓଡ଼ିଆ ପ୍ରବାଦ , ବଚନ ବଙ୍ଗଳା ଭାଷାରେ ଭାଷାନ୍ତର କରାଯିବାର ସ୍ୱୀକୃତି ପ୍ରଦାନ କରି ସେ ଓଡ଼ିଆ ଭାଷାର ସମ୍ମାନ ଓ ମାନ ବୃଦ୍ଧି କରିଛନ୍ତି । ଓଡ଼ିଆ ପ୍ରବାଦ , ବଚନର ପ୍ରାଚୀନତା ସମ୍ପର୍କରେ ଜେମସ୍ ଲଙ୍ଗଙ୍କର ପ୍ରବାଦମାଳା ଏକ ମାଇଲ ସ୍ତମ୍ଭ ସ୍ୱରୂପ । ଓଡ଼ିଆ ପ୍ରବାଦ, ବଚନ ରୁ ବଙ୍ଗଳା ପ୍ରବାଦ , ବଚନ ଯେ ପରିପୁଷ୍ଟ , ତାହା ମଧ୍ୟ ଏଥିରୁ ପ୍ରମାଣିତ ହେଉଛି ।

ସେଥିପାଇଁ ଜେମସ୍ ଲଙ୍ଗ ଓଡ଼ିଆ ଭାଷା ଓ ଲୋକ ସାହିତ୍ୟର ଗର୍ବ ଓ ଗୌରବ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।



## ଇ-ଇ-ଇ

* ୨୫୮୧.

ଇଅଁଳା ,ପିଅଁଳା, ସୁଷୁମ୍ନା ତିନି
ଗଙ୍ଗା,ଯମୁନା,ସରସ୍ୱତୀ ଘେନି ।

ଇ ଅଁଳା (= ଇଡ଼ା ନାଡ଼ି) ,ପିଅଁଳା (=ପିଙ୍ଗଳା ନାଡ଼ି), ସୁଷୁମ୍ନା(=ସୁଷୁମ୍ନା ନାଡ଼ି) । ଗଙ୍ଗା , ଯମୁନା , ସରସ୍ୱତୀ ଘେନି ମେରୁଦଣ୍ଡର ବାମ ପାଖରେ 'ଇଡ଼ା ନାଡ଼ି ' ,ଦକ୍ଷିଣ ପାଖରେ 'ପିଙ୍ଗଳା' ନାଡ଼ି ଏବଂ ଏହି ଦୁଇ ନାଡ଼ି ମଧ୍ୟରେ 'ସୁଷୁମ୍ନା' ନାଡ଼ି ମନୁଷ୍ୟ ଦେହରେ ରହିଅଛ । ଏହି ସବୁ ନାଡ଼ି ମଧ୍ୟସ୍ଥ ବାୟୁ ନାକବାଟେ ଯିବାଆସିବା କରୁଅଛି । 'ଇଡ଼ା 'ନାଡ଼ି କୁ 'ଚନ୍ଦ୍ର' ନାଡ଼ି 'ପିଙ୍ଗଳା'କୁ 'ସୂର୍ଯ୍ୟ' ନାଡ଼ି କହନ୍ତି । ବାମ ନାକ ପୁଡ଼ା ବାଟେ ନିଶ୍ୱାସ ଯିବାଆସିବା କଲାବେଳେ 'ଇଡ଼ା ନାଡ଼ି' ଦକ୍ଷିଣ ନାକ ପୁଡ଼ା ବାଟେ ନିଶ୍ୱାସ ଯିବାଆସିବା କଲାବେଳେ 'ପିଙ୍ଗଳା ନାଡ଼ି' ଏବଂ ଦୁଇ ନାକ ପୁଡ଼ାରେ ନିଶ୍ୱାସ ଯିବା ଆସିବା ବେଳେ 'ସୁଷୁମ୍ନା ନାଡ଼ି' ର ପ୍ରାବଲ୍ୟ ଥାଏ । 'ଇଡ଼ା ନାଡ଼ି' ରେ ନିଶ୍ୱାସ ଯିବା ବେଳେ -ଶୋଇବ ,ପିସାବ କରିବ ,'ପିଙ୍ଗଳା ନାଡ଼ି'ରେ ନିଶ୍ୱାସ ଯିବାବେଳେ - ଖାଇବ, ଝାଡ଼ା ଫେରିବ , ଏବଂ ' ସୁଷୁମ୍ନା ନାଡ଼ି' ରେ ନିଶ୍ୱାସ ଯିବାବେଳେ - ଯୋଗ ସାଧନ କରିବ । ଏପରି କଲେ ଗଙ୍ଗା ,ଯମୁନା ଓ ସରସ୍ୱତୀର ସଙ୍ଗମ ସ୍ଥଳୀ ତ୍ରିବେଣୀରେ ସ୍ନାନ କଲାପରି ହେବ ।

୨୫୮୨. *ଏକାର୍ଥରେ-* ଗଙ୍ଗା ଯମୁନା ଆଉ ସରସ୍ୱତୀ ନଇ
ଏତିନି ଧାର ହଂସ(=ପ୍ରାଣବାୟୁ) ଚରଣୁ ଝରଇ ।

ଗଙ୍ଗା ,ଯମୁନା ମଝିରେ ଯେଉଁ ପବିତ୍ର ଭୂଇଁ ରହିଛି ସେଠାରେ ଜଣେ ରାଣ୍ଡୀ (ବାଳ ବିଧବା) ବାସକରେ । ସେ ରାଣ୍ଡୀକୁ ବଳାତ୍କାର ପୂର୍ବକ ଗ୍ରହଣକଲେ ବିଷ୍ଣୁଙ୍କର ପରମପଦ ଲାଭ ହୁଏ । ଅର୍ଥାତ୍ ଇଡ଼ା,ପିଙ୍ଗଳା ନାଡ଼ୀକୁ ଗଙ୍ଗା ଓ ଯମୁନା କହନ୍ତି । ଏହି ଦୁଇ ନାଡ଼ୀ ମଝିରେ ସୁଷୁମ୍ନା ନାଡ଼ୀ ରହିଅଛ । ତାହାକୁ ରାଣ୍ଡୀ କହନ୍ତି । ଏହି ରାଣ୍ଡୀକୁଣ୍ଡଳିନୀ ନାଡ଼ୀକୁ ଯୋରକରି ଉପରକୁ ଚଳାଇଲେ ମାନବର ପରମପଦ ଓ ଚରମଲକ୍ଷ୍ୟ ପ୍ରାପ୍ତ ହୁଏ । ( ଏ କଥା ଜ୍ଞାନ ଚୂଡ଼ାମଣିରେ କୁହାଯାଇଛି । )

---

* ଦ୍ୱିତୀୟ ଖଣ୍ଡ ଗ୍ରନ୍ଥର ଶେଷ କ୍ରମିକ ନମ୍ବର ୨୫୮୦ ପରେ, ତୃତୀୟ ଖଣ୍ଡ ଗ୍ରନ୍ଥର କ୍ରମିକ ନମ୍ବର ଆରମ୍ଭ ହୋଇଅଛି ।

ପୁଣି ଓଡ଼ିଆ ଚର୍ଯ୍ୟାପଦରେ ମଧ ଏହା ଦେଖିବାକୁ ମିଳେ । ଯଥା-

"ଗଙ୍ଗା ଜଉଁଣା ମାଝେଁରେ ବହଇ ନଈ
ତହିଁ ବୁଡ଼ିଲେ ମାଙ୍ଗେ୍ୟ ଜୋଗିଆ ପାରକରଇ ।"

୨୫୮୩. ଇଅଁର ପୋଖରୀ ଡ଼ିଅଁର ଗଣ୍ଡରେ
ଫୁଟିଅଛି ପଦ୍ମଫୁଲ
ଏବେତ କରୁଛୁ କେତେ ମଉଜ
କେ କାରଣେ ପୀରତି ମୂଲ ?

ପ୍ରୀତି ଅତି ଦୁର୍ଲ୍ଲଭ ଓ ଦୂରବର୍ତ୍ତୀ । ତାର ମୂଲ୍ୟ କଳନା କରାଯାଇ ପାରେନା । ଦୂର ପୋଖରୀ ଗଣ୍ଡରେ ଅର୍ଥାତ୍ ଗଭୀର ଜଳରେ ପଦ୍ମଫୁଲ ପରି ପ୍ରୀତି ଫୁଟେ । ମାପରେ ତାର ଓଜନ ହୁଏନା ପାର୍ଥିବ ଦ୍ରବ୍ୟ ସହିତ ତାର ଦଳବଦଳ ହୋଇ ପାରେନା ।

୨୫୮୪. ଇଆଡ଼େ (ୟାର) ଦେଖି ଭ୍ରୁକୁଟି , ଖାଇ ମାଗୁଛି ଦୁଧ ରୁଟି ।

୨୫୮୫. ଇଆର (ୟାର) ମୁଣ୍ଡ ତା କାନ୍ଧରେ ଦେବା ।

କିଛି ଇଆକୁ ଦିଅନ୍ତି, କିଛି ତାକୁ ଦିଅନ୍ତି, ତା ଉଭାରୁ ଇଆର ମୁଣ୍ଡ ତା କାନ୍ଧରେ ଦେଇ ହଟବର କରାନ୍ତି ।

୨୫୮୬. ଇଆଡ଼େ ଗଲି ସିଆଡ଼େ ଗଲି ,
ତାଳଗଛ ମୂଳେ ହାବୁଡ଼ି ଗଲି ;
ତାଳଗଛ ମୂଳେ ଢେମଣା
ତୁ ଯହିଁ ପାଇଁ ନହର ପହର (= ନସର ପସରହେବା)
ତୋତେ କିଏ ଦେବ ମାଗଣା ?

୨୫୮୭. ଇଆଡ଼େ ଗଲେ ଗୃହସ୍ଥଳୀ ,ତାନହେଲେ ଚୂନକାଳୀ ।

ସହୃଦୟ ଓ ସୁହାସ୍ୟ ବ୍ୟକ୍ତି ନିଶ୍ଚିନ୍ତରେ ଘର ସଂସାର କରିଥାଏ । ମାତ୍ର ବ୍ୟତିକ୍ରମ ହେଲେ ତାକୁ ଅପଦସ୍ତ ହେବାକୁ ପଡ଼େ ।

୨୫୮୮. ଇଆଡ଼େ ସିଆଡ଼େ ଦିଆଡ଼େ ହେବା ।

୨୫୮୯. *ଏକାର୍ଥରେ* - ଏକଡ଼ ସେକଡ଼ ଦିକଡ଼ ହେବା ।

୨୫୯୦. - *ଏଚନ* - ଇଆଡ଼େ ନାହିଁ ,ସିଆଡ଼େ ଅଛି ।

୨୫୯୧. - *ଏଚନ* - ଏ ଦିନ ନାହିଁ କି ସେ ଦିନ ନାହିଁ ।

୨୫୯୨. ଇଆଡ଼େ ଆଣ୍ଠୁକୁଡ଼ା ,ସିଆଡ଼େ କଳ୍ପବଟ ।

କଳ୍ପବଟ ମୂଳରେ ବସି କାମନାକଲେ ତାହା ଫଳବତୀ ହୋଇଥାଏ । ମାତ୍ର ଆଣ୍ଠୁକୁଡ଼ା (ଖୁଆପିଲା

ନଥିବା ବ୍ୟକ୍ତି) ସ୍ୱଭାବତଃ କୃପଣ ହେତୁ ଯେତେ ଐଶ୍ୱର୍ଯ୍ୟବାନ ହେଲେ ମଧ ତା' ଠାରୁ କିଛି ଆଶା କରିବା ବୃଥା ।

୨୫୯୩. ଇଏ ବି ଗୁଜର ଯାଏ ଗା ।

ଖରାପ ଅବସ୍ଥା ଦୀର୍ଘକାଳ ରହେନାହିଁ । ଏପରି ବିଶ୍ୱାସ ରଖିଲେ ଉପସ୍ଥିତ ବିପଦରେ ଲୋକ ଧୈଯ୍ୟରସହିତ ସମ୍ମୁଖୀନ ହୋଇପାରେ । କାରଣ ଭାଗ୍ୟର ପରିବର୍ତ୍ତନ ଅବଶ୍ୟ ଘଟିବ ।

୨୫୯୪. ଇଏବି ବିଶ୍ୱାସ ହୁଏ ,ହାଟରେ ଚକ୍ଷୁ ବିକାଯାଏ ।

## ୨୫୯୫. ଗର୍ଭବତୀର ସୁଆଦଖିଆ ଢମାଳି ପଦ

ଇଆଡ଼କୁ କାନ ଡେ଼ରି ଶୁଣ ଲୋ ଅପୂର୍ବ ରସ
ରଙ୍ଗବତୀ ବୋଲୁଛନ୍ତି ତାଙ୍କର ଗର୍ଭ ଆଳସ ।
ବହୁତ ସୁଆଦ ଖାଇବି ମୋର ହେଉଛି ମନ
ଯାହା ଯାହା ଖାଇବି ମୁହିଁ ଆଣି ଦିଅ ବହନ ।
ଶାହାଧାନୀ ଚାଉଳ ମୁଗ ନଡ଼ିଆ ପଡ଼ି
ଖରମରା ଘିଅ ଅଦା ଲୋ ପଡ଼ି ହେବ ଖେଚେଡ଼ି ।
ସୁନାକେରି ଧାନ ଚାଉଳ ଦିଶେ ବଡ଼ ଉଜଳ
ଟଭା ଉସ ମଲ୍ଲିଫୁଲରେ ବସାଦହି ପଖାଳ ।
ସାରୁ ,ଆଳୁ ,ବଡ଼ି,ବାଇଗଣ କଦଳୀରେ ମହୁର
ବୋଇତିକଖାରୁ ଆମ୍ବିଳ ଖଣ୍ଡଦିଆ ସାକର ।
କଷି ବାଇଗଣ ସନ୍ତୁଳା କିଛି ଭଜାହୁଅନ୍ତା
କାଠିଆ କଦଳୀ ପକାଇ କର ଶିମ୍ବ ରାଇତା ।
ସାତ ପତୁରିଆ ଜହ୍ନିର ଭଜା ଭେଣ୍ଡିଆମ୍ବିଳ
ମୂଳା କାଞ୍ଜି ସଙ୍ଗେ ମେଳ ସେ କନ୍ଦମୂଳ ସୁମେଳ ।
ସଜନା ମୁଗୁନା ଶାଗରେ ବଡ଼ କଖାରୁଫୁଲ
ଭଜାହେଲେ ତାର ସୁଆଦ ଦଶକାହାଣ ମୂଲ ।
ବନ୍ତଳ କଦଳୀ ମଞ୍ଜାକୁ କିଛିକରିବ ରାଇ
ଲେଉଟିଆ ଶାଗଭାଜିରେ ସଜପଖାଳ ଦହି ।
ଶୀତଳ ମସଲା ନବାତ ପରିଡ଼ପାଣି ପଣା
ଶୀତଳ ବେଳରୁ ଖାଇଲେ ତୃଷା ହୋଇବ ଊଣା ।

ଫେଣା ଚଣା ଖଜା ମିଠାଇ ସଙ୍ଗେ ପଖାଳ କଷି
ସାରି କୋରା ସାରି ଉଖୁଡ଼ା ଲଡ୍ଡୁ ହୋଇବ ରାଶି ।
ବିରି ମୁଗ ବରା ବରାଙ୍ଗି ମଣ୍ଡା ଲଡ୍ଡୁ ଜଳବି
ପେଡ଼ା ସରୁଚୁଡ଼ା ଉଖୁଡ଼ା ଦୁଗ୍ଧ ସଙ୍ଗେ ଖାଇବି ।
ଲେଉଟିଆ ଶାଗ ଭାଜିରେ ତହିଁ ନଥିବ ବାଲି
କଅଁଳ ଆମ୍ବୁଲ ପକାଇ କର ହରଡ଼ ଡ଼ାଲି ।
ସପୁରୀ ପଣସ ନଡ଼ିଆ ଗଜା ମୁଗରୁ କିଛି
କଦଳୀ ଚକଟା ସଙ୍ଗେ ଲୋ ଚୁଡ଼ା ଘଷାରୁ କିଛି ।
ତାଳମଣ୍ଡା ତାଳ ଚକୁଳି ବାସୀ ହେଲେ ସୁଆଦ
ବରକୋଳି ପିଠା କରିବ ପଡ଼ି ଅରୁଆ ଖୁଦ ।
ତୁଛା କାଞ୍ଜିପାଣି ଶିଝିବ ଘିଅ ପରଜା ହେବ
ତାହା ଖାଇଲେ ଲୋ ମାଉସୀ ମୋର ଅରୁଚି ଯିବ ।
ଘିଅ ପକା ମକା ଭଜାରେ ପଡ଼ି ମଟର ମଞ୍ଜି
କାନ୍ଧିଆ କମଳା ଟଭାଯେ କରମଙ୍ଗା କାଗେଜି ।
କାଣ୍ଡିଆ କୁଣ୍ଡାକୁ ଢାଡ଼ିବ ଢିଙ୍କି ମୁଣ୍ଡରେ ବସି
ବୁଢୀମାନେ ତାକୁ ଖାଇଲେ ହେବେ ଷୋଳ ବରଷି ।
ଏତେ ସ୍ୱାଦ ମୁହିଁ ଖାଇବି ମୋର ହେଉଛି ମନ
କଉଡ଼ି ବିନେ ଲୋ ମନ, ଧନ୍ୟ ନାରୀ ରତନ ।

୨୫୯୬. ଇଆଡ଼େ ମାଇଲେ ଗୋ' ହତ୍ୟା ,ସିଆଡ଼େ ମାଇଲେ ବ୍ରହ୍ମ ହତ୍ୟା ।

୨୫୯୭. ଇଆଡ଼େ ପାଣି ସିଆଡ଼େ ପାଣି ,କେମିତି ଯିବି ନପାରେ ଜାଣି ।

୨୫୯୮. B A ଝ କୌଣସି କୁଳର ହେବା ।

୨୫୯୯. ଇଆଡ଼କୁ ହେବ ନା ସିଆଡ଼କୁ ହେବ ।

ସଂଶୟରେ ପଡ଼ିବା ,ଉଭୟ ସଙ୍କଟରେ ପଡ଼ିବା ।

୨୬୦୦. *ଏକାର୍ଥରେ* - ଇଆଡ଼େ ଖାଇ (=ଗଡ଼ଖାଇ) ସିଆଡ଼େ ପର୍ବତ ।

୨୬୦୧. *ଏକାର୍ଥରେ*- ଇଆଡ଼େ ମୋହବ୍ବତ (=ପ୍ରେମ) ସିଆଡ଼େ ଜମାନା(=ସମୟ) ।

୨୬୦୨. *ଏକାର୍ଥରେ*- ଇଆଡ଼େ କୂଅ ,ସିଆଡ଼େ ଖାଇ ।

୨୬୦୩. *ଏକାର୍ଥରେ* - ଇଆଡ଼େ ନା ସିଆଡ଼େ ,କହ ଭଲା କୁଆଡ଼େ ।

୨୬୦୪. ଇଆ(ୟା) ପେଟରେ ଦାଢୀ ଅଛି । ଅଳ୍ପାୟୁ ହେଲେ ମଧ ବୁଦ୍ଧିମାନ ।

୨୬୦୫. ଇଆଡୁ ସିଆଡୁ ହାଙ୍କିବା । - ମିଛ କହିବା,କାରଣ ନଥାଇ ଗପ କରିବା ।

୨୬୦୬. ଇଆଡ଼େ ସିଆଡ଼େ କରିବା ।- ସ୍ଥାନ ବଦଳାଇବା ।

୨୬୦୭. ଇଏ କି ବିଧିର ଲୀଳା-ଖେଳା
କୁଆ ବେକରେ ତୁଳସୀମାଳା !

କୁଆର ଅଭ୍ୟାସ ଚୋରିକରି ଖାଇବା । ସେ ଯଦି ପରମବୈଷ୍ଣବ ସାଜି ବେକରେ ତୁଳସୀମାଳ ପକାଇ ପରମ ଭକ୍ତ ହୁଏ, ତାହାହେଲେ ଏହା ଅତି ବିସ୍ମୟକର କାରଣ କୁହାଯାଏ - 'ସ୍ୱଭାବ ଯାଏ ନା ମଲେ ।' ତେଣୁ କୁଆ ଯଦି ତାର ସ୍ୱଭାବ ପରିବର୍ତ୍ତନକରେ ,ଏହା ସନ୍ଦେହର ଏକ ଆଶ୍ଚର୍ଯ୍ୟ ବିଷୟ ବୋଲି ପରିଗଣିତ ହୁଏ ।

୨୬୦୮. ଇଏ କହେ - ମୋତେ ଦେଖ,
ସିଏ କହେ -ମୋତେ ଦେଖ । - ଦୁଇ ଜଣଙ୍କର ତୁଲ୍ୟ ମୂଲ୍ୟ ।

୨୬୦୯. ଇଏ ଯଦି ଗୋରାଚାନ୍ଦ , ତେବେ କଳାଚାନ୍ଦ କିପରି ?

୨୬୧୦. ଇଏ ଏକ ଯୁକ୍ତିର ପଡ଼ା, ଗଛ ବେଉଛି ଘୋଡ଼ା ।

ଗାଁର ବିଭିନ୍ନ ପଡ଼ାମାନଙ୍କ ମଧ୍ୟରୁ ଯେଉଁ ପଡ଼ାର ଲୋକେ ଖେଚଡ଼ପ୍ରକୃତିର ସେମାନେ ସମୂହଭାବେ ଅଯୌକ୍ତିକ କଥା କହିଥାଆନ୍ତି ।

୨୬୧୧. ଇଏ ମା, ସିଏ ମାଉସୀ ,ତେବେ କିଆଁ ଉପବାସୀ ।

୨୬୧୨. *ଏକାର୍ଥରେ* -ବହୁଘର କୁଣିଆ ଉପାସ ରୁହେ ।

୨୬୧୩. ଇଏତ ନାଗୁଣୀ, ତହିଁକି ଡେମ୍ଣୀ ।

ଭୟଙ୍କର ସ୍ତ୍ରୀ ଯଦି ଶିକ୍ଷିତା ହୁଏ ତାହାହେଲେ ଅଧିକ ଭୟଙ୍କର ହୋଇଥାଏ ।

୨୬୧୪. ଇଏତ ଆରମ୍ଭ ମାତ୍ର , ଘବରା କିଆଁ
ଆଗକୁ ଦେଖ , ହୋତାହେ କିଆ ।

ବର୍ତ୍ତମାନ କାର୍ଯ୍ୟ ଆରମ୍ଭ ମାତ୍ର, ଯାକୁ ଦେଖି ଘାବରାହେଉଛ, ପୁଣି ଆଗକୁ କ'ଣହେଉଛି ଦେଖ ।

୨୬୧୫. ଇକ ହରା ଶରୀର - ପତଳା ସୁଗଠିତ ଶରୀର ।

## ଶିଶୁ ମନୋରଞ୍ଜନ ଶବ୍ଦ ଲହଡ଼ି

୨୬୧୬. ଇକନ୍ ମିକନ୍ ,ଚାଇଁକି ଚିକନ୍
ପବନ ଘଣ୍ଟା, ନାରଙ୍ଗ ଲଟା

ଓଲ ମୋଲ !
କହ୍ନେଇ ବାଡ଼ିରେ ଦନେଇ ଚୋର ।

୨୬୧୭. ଇକିଡ଼ି ମିକିଡ଼ି ଚାମ ଚିକିଡ଼ି
ଚାମର ପଡ଼େ ଘନକୁ ଘନ ,
ଦେଖି ଆସିଲି ବୃନ୍ଦାବନ ।
ବୃନ୍ଦାବନ ବଢ଼େଇର ପୁଅ
ଶିମିଳି ଗଛରେ ବାନ୍ଧି (ଦିଅ) ଥୁଅ
ଶିମିଳି କରେ ମଥି ମଥି ,
କାଳିଆ ଠାକୁର ଜଗନ୍ନାଥ ।
ଜଗନ୍ନାଥର ହାଣ୍ଡି କୁଣ୍ଡି
ଗୁହାଳେ ବସି ଧାନ କାଣ୍ଡି ।
ଧାନ କାଣ୍ଡିବି ଉପର ଓଳା
ଭାତ ଖାଅହେ ଭିଣେଇ ଶଳା ।
ଭାତରେ ପଡ଼ିଲା ମାଛି
କୋଦାଳ ଦେଲା ଚାଞ୍ଛି ।
କୋଦାଳ ହେଲା ଭୋଟା
ଖା' ବଢ଼େଇର ମଥା ।

୨୬୧୮. ଇଚିଡ଼ି ମିଚିଡ଼ି ଜାମୁ ଚିଡ଼ି ଚିଡ଼ି
ପିଲାଏ ମାଇଲେ ଢୋଲ
ଆଳୁ ଖଣ୍ଡି ଖଣ୍ଡି ପିଚିକା ପାଣି
ବୋଉ ଲୋ ଏ ଗୁଡ଼ ଖଣ୍ଡି ମୋର ।

୨୬୧୯. ଇଚିଡ଼ି ମିଚିଡ଼ି ଧାଇଁ ଚିଡ଼ି ଚିଡ଼ି
କଇଁଚି କାକୁଡ଼ି ପିତା ନଳିତା
ସାତ ବୋହୂଙ୍କର ସାତ ଦୁହିତା
ସାଆନ୍ତ ଗଲେ ଉତ୍ତର
ଢ଼େଇଁ ପଡ଼ିଲା ଚିତ୍ତଳ

ବଡ଼ ବୋହୂଟି ହଜିଲା
ସାତ ବୋହୂ ଲୁଗା ଉଠିଲା ।

୨୬୨୦. ଇଚିଡ଼ି ମିଚିଡ଼ି ଧାଇଁ ଚିଡ଼ି ଚିଡ଼ି
କାଇଁଚ କାକୁଡ଼ି ପିତା ନଳିତା
ଜାଗରଣୀ ଘରେ ସାତ ଘଇତା
ସାତ ଗଲେ ଉତ୍ତର
କାହିଁ ପାଇବ ପିତଳ
ପିତଳ କାଞ୍ଛି ହଜିଲା
ବୋହୂ ଲୁଗାଟି ଟିକି ଟିକିଆ
ଶାଶୁ ଲୁଗାଟି ଉଠିଲା ।

୨୬୨୧. ଇଚିଲି ମିଚିଲି ଝାମୁ ଚିଲଚିଲ
ରାଜେ ମାଇଲେ ଢୋଲ
ଆଳୁ ଖଣ୍ଡି ଖଣ୍ଡି ପିଚିକା ପାଣି
ବଉଳ(ବୋଉଲୋ) ବୋଉ ।
ଏଇ ଗୋଡ଼ଟିକି ତୋଳ ।

୨୬୨୨. ଇଞ୍ଚଡ଼ (= କଷି ପଣସ ) ପାକା(= ପାଚିଲା) ।

୨୬୨୩. *ଏକାର୍ଥରେ-* ଓଳିଆରୁ ଗଜା (ପଡ଼ିଗଜା) ହେବା ।

ଅଳ୍ପ ବୟସରେ ଅତି ଚାଲାଖି ବା ଧୂର୍ତ୍ତତାଦେଖାଇଲେ ତା ପ୍ରତି ପ୍ରଯୁଜ୍ୟ । ଅର୍ଥାତ୍- ଅପ୍ରାପ୍ତ ବୟସ୍କର ବୟସ୍କପରି ଆଚରଣକରିବା ,ଯେପରି କଷି ଅବସ୍ଥାରେ ପାଚିବା ।

୨୬୨୪. ଇଞ୍ଚା(= ଚିଙ୍ଗୁଡ଼ି ) ମାଛର ମୁଣ୍ଡରେ ଗୁହ ।

୨୬୨୫. *ଏକାର୍ଥରେ-* ଚିଙ୍ଗୁଡ଼ି ଚିପିଲେ ମୁଣ୍ଡରେ ଗୁହ ।

୨୬୨୬. ଇଚିଲି ବିଚିଲି କରିବା । - ବୁଣିଦେବା ,ଫିଙ୍ଗିଦେବା ।

୨୬୨୭. ଇଁଚା ଇଁଚା ରହିବା - ଉଦାସୀନ ରହିବା ବା ନାରାଜ ହେବା ।

୨୬୨୮. ଇଚ୍ଛା ପୁତ୍ରର ମା' କୁ ଆଦର ।

କୁନ୍ତୀ ପଣ୍ଡୁରାଜାଙ୍କର ପ୍ରଥମାସ୍ତ୍ରୀ । ଅଭିଶପ୍ତପଣ୍ଡୁ ତେଣୁ କୁନ୍ତୀଙ୍କସଙ୍ଗେ ସହବାସ କଲେନାହିଁ । ଦୁର୍ବାସାଙ୍କଠାରୁ ପ୍ରାପ୍ତ ଜପାମାଳିକୁ ଜପିବାରୁ ଧର୍ମ,ବାୟୁ ଓ ଇନ୍ଦ୍ର ଦେବତାମାନଙ୍କୁ ଅହ୍ବାନକରି ସେମାନଙ୍କ

ଔରସରୁ ଯଥାକ୍ରମେ ଯୁଧିଷ୍ଠିର ,ଭୀମ,ଅର୍ଜୁନଙ୍କୁ ଜନ୍ମ ଦେଇଥିଲେ । ଏହି ତିନିଜଣ କୁନ୍ତୀଙ୍କର ଇଚ୍ଛା ପୁତ୍ର । ଏହି ଇଚ୍ଛା ପୁତ୍ରମାନେ କୁନ୍ତୀଙ୍କୁ ଯେପରି ଆଦର କରୁଥିଲେ ତାର ପଟାନ୍ତର ନାହିଁ। ମାତୃ ଆଜ୍ଞାରେ ଗୋଟିଏ ସ୍ତ୍ରୀକୁ ସମସ୍ତେ ନିଜନିଜର ପତ୍ନୀ ରୂପେ ଗ୍ରହଣ କରିଥିଲେ ।

୨୬୨୯. ଇଚ୍ଛା ଅଛି ଲାଜ ମାଡୁଛି (ମାଡ଼େ)
ଓଢଣା ତଳେ ଲୁହ ଝରୁଛି (ଝାଡ଼େ) ।

୨୬୩୦. ଇଚ୍ଛା ବାଟ କଢେଇବା (ବଢେଇବା) ।

୨୬୩୧. *ଏକାର୍ଥରେ*- ଇଚ୍ଛା ଥିଲେ ବାଟ ମିଳେ ।

୨୬୩୨. -*ଏଜନ*- ଇଚ୍ଛା ଥିଲେ ବୁଦ୍ଧି ବାହାରେ ।

ଏହି ପ୍ରବାଦଟି ଇଂରାଜୀ ପ୍ରବାଦ '-Where there is will ,there is way ' ର ଅଭିନ୍ନ ରୂପ ବୋଲି ମନେହୁଏ ।

୨୬୩୩. ଇଚ୍ଛନ୍ତି ଦାମ୍ଭିକେ ହସ୍ତେ ରଖିବାକୁ
ସମସ୍ତଙ୍କ ଭାଗ୍ୟ ଡ଼ୋରି
ନିଜ ଭାଗ୍ୟ ଡ଼ୋରି କାଳ ହସ୍ତେ ଏହା
ପକାନ୍ତି ହେଲେ ପାସୋରି ।

୨୬୩୪. ଇଚ୍ଛା ,କାର୍ଯ୍ୟ ,ସାଫଲ୍ୟ , ଜୀବନର ତିନିଶ୍ରେଷ୍ଠ ସାବଲ୍ୟ ।

ଇଂରାଜୀ ଭାବୁକ ଲୁଇ ପାଶ୍ଚରଙ୍କ ଉକ୍ତି ।

୨୬୩୫. ଇଚ୍ଛା ଠାକୁରାଣୀ- ବସନ୍ତରୋଗ ।

୨୬୩୬. ଇଚ୍ଛାବର - ନିଜ ଇଚ୍ଛାରେ ସ୍ୱାମୀ ନିର୍ବାଚନ ।

୨୬୩୭. ଇଚ୍ଛାବରୀ- ନିଜ ଇଚ୍ଛାରେ ସ୍ୱାମୀ ବରଣ କରିବା ଅର୍ଥାତ୍ ସ୍ୱୟଂବରୀ ।

୨୬୩୮. ଇଚ୍ଛାତ୍ରୟ ।

ମନୁଷ୍ୟର ତିନିପ୍ରକାର ଇଚ୍ଛା ତଥା ଅଭିଳାଷ ଯଥା(୧)ଦୈନ୍ୟବୋଧିକା(୨)ପ୍ରାର୍ଥନାମୟୀ(୩) ଲାଳସାମୟୀ (ଅଭିମନ୍ୟୁ- ବିଦଗ୍ଧ ଚିନ୍ତାମଣି)।

## ଶିଶୁ ମନୋରଞ୍ଜନ ପଦମାଳ

୨୬୩୯. ଇଲା ଅପା
କଥାର ଲଥା ।
କି କଥା
ଚେଙ୍ଗ ମଥା ।

କି ଟେଙ୍ଗ
ଚୁଇଁ ବେଙ୍ଗ ।
କି ଚୁଇଁ
ସଜନା ଛୁଇଁ ।
କି ସଜନା
ଗାଈ ପହ୍ନା ।
କି ଗାଈ
କଳା ସ୍ୟାହି ।
କି କଳା
ଶାଳୀ -ଶଳା ।
କି ଶଳା
ଆଖି କଳା
କି ଆଖି
ସୁନା ପକ୍ଷୀ
କି ସୁନା ,ଛଇ ଦେଖାନା ।
ଆଉ ଅଧିକ ଭାଗ ନେଏନା ।
ଭାଗ ନେଇ କରିବୁ କି ,
ଯିବୁ ତୁ ଲଙ୍ଗଳା ହୋଇ ।

୨୬୪୦. ଇଶ ସହି ,ପୁତ କହି
କି ପିଲା,ପୁଅ ପିଲା ।
କୁଆଡ଼େ ଯିବି,ମାଛ ଧରିବ ।
କି ମାଛ ,ପୁଣ୍ଟି ମାଛ ।
ମାଛ କାହିଁ, ଚିଲ ନେଇଛି ।
ଚିଲ କାହିଁ ,ଡ଼ାଳେ ବସିଛି ।
ଡ଼ାଳ କାହିଁ ,ବଢେଇ କାଟିଛି ।
ବଢେଇ କାହିଁ ,ଡ଼ଙ୍ଗା ଗଢୁଛି ।
ଡ଼ଙ୍ଗା କାହିଁ , ବୁଡ଼ି ଯାଇଛି ।

୨୬୪୧. ଇସକା ମିସିକା ପୋତନା ବନ ,
ଧର ଧର ବାବୁ ଏହାର କାନ ।
ଆଳୁ ଗଛରେ ପାଣି ଦେଉଁ ଦେଉଁ
ଆଳୁ ଗଛ ମଲା ।
ନଡ଼ିଆ ଗଛରେ ପାଣି ଦେଉଁ ଦେଉଁ
ନଡ଼ିଆ ଗଛ ମଲା ।
ଖା' ଶାଉଡ଼ୀର (=ଶାଶୁର) କଲା (=କଦଳୀ) ।

୨୬୪୨. ଇଜ୍ଜତର ମୂଲ୍ୟ ଲକ୍ଷେ ଟଙ୍କା ।

୨୬୪୩. *ଏକାର୍ଥରେ*- ଧନ ଦୌଲତ ସବୁ ଯାଉ ,ଇଜ୍ଜତ ଗଲେ ନଫେରେ ଆଉ ।

ପୂର୍ବେ ଇଜ୍ଜତର ମୂଲ୍ୟ ଲକ୍ଷେ ଟଙ୍କାରେ ଅକଳନ କରାଯାଉଥିଲା । ସେତେବେଳେ ଲକ୍ଷେ ଟଙ୍କା ଅସାଧ ବସ୍ତୁଥିଲା । ପ୍ରକୃତରେ ଇଜ୍ଜତ ଅମୂଲ୍ୟ ।

୨୬୪୪. ଇଜ୍ଜତ ବିକିବା - ସ୍ତ୍ରୀର ସତୀତ୍ୱ ନଷ୍ଟକରିବା । ପ୍ରତିଷ୍ଠାକୁ ମାଟିରେ ମିଶାଇବା ।

୨୬୪୫. ଇଜ୍ଜତ ଲୁଟିବା - ସତୀତ୍ୱ ହରଣକରିବା ।

୨୬୪୬. ଇଜ୍ଜତ ସହ ଖେଳିବା - ନିଜର ବା ଅନ୍ୟର ମର୍ଯ୍ୟାଦା ସହିତ ଖେଳିବା ।

୨୬୪୭. ଇଜଲାସରେ ଚଢେ(ଢା) ଇବା ।

ମକର୍ଦ୍ଦମା ଦାଏର କରିବା । ଅଦାଲତି ଅଭିଯୋଗ ଆଣିବା । ମକଦ୍ଦମା ଦେଖାଶୁଣା କରିବା ।

୨୬୪୮. ଇଜାରବନ୍ଦ ଢିଲା ହେବା - ବ୍ୟଭିଚାରୀ ହେବା ।

୨୬୪୯. ଇଜାରବନ୍ଦ ଢିଲାହେବା - ଛିଣ୍ଡାଳୀ ସ୍ତ୍ରୀ ହେବା ।

୨୬୫୦. ଇଜାରବନ୍ଦ ଉପରେ ହାତ ପକେଇବା - ବ୍ୟଭିଚାର କରିବା ।

୨୬୫୧. ଇଜାରବନ୍ଦୀର ସମ୍ବନ୍ଧ - ପତ୍ନୀ ସମ୍ପର୍କ ।

୨୬୫୨. ଇଜତ ଯାହାର ଅପାର, କେକରିବ ମୂଲତାର ।- ଇଜ୍ଜତ ଅମୂଲ୍ୟ ସମ୍ପଦ ।

୨୬୫୩. ଇଟା ନାହିଁ , ଭିଟା ନାହିଁ ,ବାହାରେ ମର୍ଦାନି ।

୨୬୫୪. *ଏକାର୍ଥରେ* -ଇଟା ନାହିଁ , ଭିଟା ନାହିଁ ,ଚୌଧୁରୀର ପୁଅ ।

ସର୍ବସ୍ୱାନ୍ତ ହୋଇଥିବା ବ୍ୟକ୍ତିର ବାହାପିଆକଥା କହୁଥିବା ପ୍ରତି କଟାକ୍ଷ ।

୨୬୫୫. ଇଟାର ଘରକେ ଝିଙ୍କର ଘର
ଲାଗିଛି ଚୂନ କରାଳ
ତମର ଆମର ବିଅତ ଥିଲେ

ଝୁରି ଝୁରି ମରିବାର
ଛତା ଆମ୍ଭ ପରେ ମୟୂର କକେ
ମ' ଦୟା ରହିବ ତକେ ।

୨୬୫୬. ଇଟା (= ବଡ଼ମାଛ ବିଶେଷ) ଦୁନିଆରେ ମିଠା ।

୨୬୫୭. ଇଟିଲି ଉପରେ ଗୁଲ ମରିଚ
ସିଏତ ଆମର ଘର ମଣିଷ
ତାକୁ କି ତୁମେ ନାଙ୍ଗ କରୁଛ ?

୨୬୫୮. ଇଟି ମିଟି କଣା ଠାଇଁକି ଠିକଣା
ଫୁଲାକଣା ବଡ଼ ମନ୍ଦରେ
ଯହିଁ ଯାଇଥିବ ନେପେଡ କଣା
ଲାଗିଥିବ ବଡ଼ ଦ୍ୱନ୍ଦ୍ୱରେ ।

ଅନ୍ଧକଣା ଲୋକ ସ୍ଥାନ ବାରି ଯିବା ଆସିବା କରେ । ଆଖିରେ ଫୁଲାପଡ଼ି ଯେ କଣା ପାଇଟିଛି, ସେ କୌଣସି ଜିନିଷ ଠିକ୍‌ଭାବରେ ଦେଖି ପାରେନାହିଁ । ଅର୍ଥାତ ଅଧା ଦେଖିପାରେ କୌଣସି ବିଷୟରେ ପୂର୍ଣ୍ଣାଙ୍ଗ ଧାରଣା ତାର ନଥାଏ ,ତେଣୁ ସେ ଯୁଆଡ଼େ ଯାଏ କଳି ସୃଷ୍ଟି କରେ ।

୨୬୫୯. ଇଟି ମିଟି କଣା ନଥାଏ ଠିକଣା
ଟେରାକଣା ବଡ଼ ମନ୍ଦର
ଯହିଁ ଥାଏ ଏକ ଆଖିଆ କଣା
ନିଇତି ଲଗାଏ ଦ୍ୱନ୍ଦ ର ।

ଅନ୍ଧ ଅନ୍ଧ କଣା କୌଣସି ବିଷୟରେ ଠିକ୍ କଥା କହିପାରେନାହିଁ । ଅର୍ଥାତ୍ ସର୍ବଦା ସଂଶୟାଚ୍ଛନ୍ନ । ଟେରାକଣା କିଛି ଦେଖି ବା ନଦେଖି ଗୋଟାଏ ଦୁଣ୍ଡା ମତ ପ୍ରକାଶ କରେ । ଏକ ଆଖିଆ (ଯାହାର ଗୋଟାଏ ଆଖି କଣା) ସବୁବେଳେ କଳି ଲଗାଏ । ତେଣୁ କଥାରେ ଅଛି , ''ଏକ ଆଖିଆ ଶୁକ୍ରକୁ ଦୂରୁ ସାବଧାନ ''।

୨୬୬୦. ଇଟିକିଲି ମିଟିକିଲି ଫୁଟିଗଲା କଷି
ଆମ୍ଭକେ ଡ଼ାକକେ ବନକ ବାସୀ
ହରିଆ ରାଉତ ପଣ୍ଡିତ କାକୁଡ଼ି ଚୋର ।

ଲୁଚକାଳି ଖେଳର ଚୋର ବାଛିବା ବୋଲି । ଯାହା ଉପରେ ଶେଷ ଶବ୍ଦଟି ପ... ସେ ଚୋରହୁଏ ।

୨୬୬୧. ଇଟା ଫେପାଡ଼ିଲେ ,ଢେଲା ଆସି ପଡ଼େ ।
ଇଟା ପଡ଼ିଲେ ଖୁଆ (=ଇଟାଖଣ୍ଡ )ପଡ଼େ ।

୨୬୬୨. ଇଟ୍ ଲାଓ ଚୂନ୍ ଲାଓ , ଆସମାନ୍‌ମେ(=ଆକାଶରେ)
ହାବେଲୀ(=ରାଜବାଟୀ) ବନାଏଙ୍ଗେ (=ତିଆରି କରିବୁ ) ।

ଆକାଶରେ ରାଜବାଟୀ ତିଆରି କରି ଦେବ ବୋଲି ଜଣେ ବାହାପିଆ ରାଜାଙ୍କ ଠାରୁ ଟଙ୍କା ଠକି ନେଇଥିଲା । ସାର ଚଢେଇକୁ ଶିଖେଇଲା ରାଜାଙ୍କୁ କହିବାକୁ ' ଇଟ୍ ଲାଓ ଚୂନ ଲାଓ ' ଅର୍ଥାତ୍ ମିସ୍ତ୍ରୀମାନେ ଇଟା ଆଣ ଚୂନ ଆଣ ମାଗୁଛନ୍ତି । ରାଜା ଆକାଶକୁ ଇଟା ଚୂନ ପଠାଇବେ କିପରି ? ଯୋଗାଣ ବିଭାଗ ଜିନିଷ ଯୋଗାଇବାକୁ ଅସମର୍ଥ ହେବାରୁ ଶୂନ୍ୟ ରାଜବାଟୀ ଗଡା ହୋଇପାରିଲା ନାହିଁ ।

୨୬୬୩. ଇଟା ବଇ ଖଡୁ ଖଡୁ
ମୋ ନନା ଯାଇଛି ଅରଖପୁରୁ
ଆଣିଦେବ ନୂଆ ଖଡୁ ।

୨୬୬୪. ଇଟା ମାଟି ବଡ଼ ଟାଣ
କଟା ବଚନକୁ (= ଯେଉଁ ବଚନ ହୃଦୟକୁ କାଟେ) ସହି ନ ପାରିବି
ହୋଇଲିଣି ହଇରାଣ ।

୨୬୬୫. ଇଟା ମାଟି ଦୁକୁ ଦୁକୁ
କିଏ ନେଇଗଲା ସୁନାଫୁଲକୁ ମୋ
ତଳମାଳ ରାଇଜକୁ ?

ଅପହୃତା ବା ବିବାହ ଦ୍ୱାରା ବିଚ୍ଛିନ୍ନାସଙ୍ଗିନୀର ବିରହର ଅନୁଶୋଚନା ।

## ଶିଶୁ ମନୋରଞ୍ଜନ ଶବ୍ଦ ଲହଡ଼ି

୨୬୬୬. ଇଟିକିଲି ମିଟିକିଲି ଫୁଟିଗଲା କାଇଁଚ
କୁନୁ,ମୁନୁ,ଟୁନୁ,କିଆଁ ଧାଇଁଚ ?
ତାଇଁ ଚଡ଼ ଚଡ଼ ଡ଼େଙ୍ଗୁରା ବାଜେ
ଖଇ ଚଡ଼ ଚଡ଼ ମାଉସୀ ଭାଜେ
ଖାଇ ରଡ଼ମଡ଼ ମଟର ଭଜା
ଦାନ୍ତ କଡ଼ ମଡ଼ କରନ୍ତି ଅଜା ।
ଶୁଭେ କଡ଼ମଡ଼ ବାଉଁଶ କଣି
କରି ଘଡ଼ ଘଡ଼ ବରଷେ ପାଣି

ଇନ୍ଦର ଦେ କଚାଡ଼ି
ଖାଇବୁ ଖିରି ଖେଚେଡ଼ି
ପିନ୍ଧିବାକୁ ଦେବି ବ୍ରହ୍ମପୁରୀ ପାଟ
ପିଇବାକୁ ଦେବି ଦୁଧ ରାବେଡ଼ି ।

୨୬୬୭. ଇଟିଲି ମିଟିଲି ଜାମୁ ଟିଲିଟିଲି
କଠଉ ମାଡ଼ିଛି ଚୋର
ସାରୁ ଖଣ୍ଡ ଖଣ୍ଡ ପିଚ୍‌କା ପାଣି
ବୋଉଲୋ
ତୋର ଏଇ ଗୁଡ଼ ଖଣ୍ଡ ଭଲ ।

୨୬୬୮. ଇଟିକିଲି ମିଟିକିଲି ଫୁଟିଗଲା କାଇଁଚ
ଶ୍ୱଶୁରେ ଆସିବେ ବୋଲି
ରଖିଥିବ ମାଉଁସ
ମାଉଁସ ଆଇଁସ କଡ଼ାକଡ଼ି
ଉଡ଼ିଲେ ବାଦୁଡ଼ି ପର ଝାଡ଼ି ।

୨୬୬୯. ଇଟିକିଲି ମିଟିକିଲି ଫୁଟିଗଲା କାଇଁଚ
ତୁମର ଆମର ନାଲି ପଇଞ୍ଚ
ନାଲି ପେଁ ପେଁ ବାଜଇ ହୀରା
ଗୋଟିକା ଉପରେ ବେଟିକା ଚୋରା
ଅଇରି ମଇରି ଖଇରି କାତି
ରାଜାଙ୍କ ଘର ପାଟ ହାତୀ
ପାଟ ହାତୀର ବହୁତ ଗୁଣ
ଘୁଙ୍ଗୁର ବାଜେ ରୁଣ ଝୁଣ ।

୨୬୭୦. ଇଟିକିଲି ମିଟିକିଲି ଫୁଟିଗଲା କାଇଁଚ
ତୁମର ଆମର ନାଲି ପଇଞ୍ଚ
ନାଲି ପେଁ ପେଁ ବାଜଇ ତୁରା
ଗୋଟିକ ଉପରେ ଗୋଟିଏ ଢିରା ।

୨୬୭୧. ଇଟା ପାଇଁ ମସଜିଦ ଭାଙ୍ଗିବା ।

ସାଧାରଣ କାମ ବା ଉଦ୍ଦେଶ୍ୟ ପାଇଁ ଭଲ ପଦାର୍ଥକୁ ନଷ୍ଟ କରିବା ।

୨୬୭୨. ଇଟାରେ ଅଲଗା ମସଜିଦ ତୋଳିବା ।

ସମସ୍ତଙ୍କଠାରୁ ସ୍ୱତନ୍ତ୍ର ଭାବେ ରହିବା । ସାମାଜିକ ମତ ବିରୁଦ୍ଧାଚରଣ କରିବା । ମିଳିମିଶି କାମ ନ କରିବା ।

୨୬୭୩. ଇଟା ତକ (=ପର୍ଯ୍ୟନ୍ତ) ବିକେଇ ଦେବା ।

ସର୍ବସ୍ୱ ହରଣ କରିବା , ଅର୍ଥାତ୍ ବରବାଦ କରିଦେବା ।

୨୬୭୪. ଇଟା ଘର ,ମାଟି କରିବା । - ଘରନଷ୍ଟ କରିବା ତଥା ନିଜକୁ ବରବାଦ କରିବା ।

୨୬୭୫. ଇଟା ପଥର । - ଅଦରକାରୀ ବା ମୂଲ୍ୟହୀନ ପଦାର୍ଥ । ଯେପରି କହନ୍ତି ତୁମେ ଆଉକିଛି ନଆଣି ଏଇ ଇଟା ପଥରକୁ ଉଠାଇ ଆଣିଛ ।

୨୬୭୬. ଇଟାର ଜବାବ ପଥରରେ ଦେବା - ଦୁଷ୍ଟ ସହିତ ଦୁଷ୍ଟାମିରେ ଜବାବ ଦେବା ।

୨୬୭୭. ଇଟାକୁ ନେଇ ପଥରକୁ ଦେଇ ।

କଠୋରତାର ସହିତ ପ୍ରତିଶୋଧ ନେବା ବା ମୁହଁ ଭଙ୍ଗା ଜବାବ ଦେବା ।

୨୬୭୮. ଇଠେଇଁ ସିଠେଇଁ ହେବା । -ଏକ ସ୍ଥାନରୁ ଅନ୍ୟସ୍ଥାନକୁ ଯିବାଆସିବା କରିବା

୨୬୭୯. ଇନାମ ପାଇଲି ରାଜସଭାରୁ
କୈଫିୟତ ଦେଇ ପ୍ରାଣ ଗରୁ ।

ରାଜସଭାରୁ ପୁରସ୍କୃତ ହେବା ବ୍ୟକ୍ତି , ଜନ ସାଧାରଣଙ୍କର ବହୁ ପ୍ରଶ୍ନର ଶିକାର ହୋଇଥାଏ ।

୨୬୮୦. ଇନାମ (=ପୁରସ୍କାର) ପାଇଁ ଇମାନ୍ (=ଇଜ୍ଜତ) ନଛାଡ଼ ।

ଇଜ୍ଜତ ମନୁଷ୍ୟର ଅମୂଲ୍ୟ ସମ୍ପଦ ,ପୁରସ୍କାର ବା ଆର୍ଥିକ ସହାୟତାପାଇଁ ତାକୁ ଛାଡ଼ିବା ଉଚିତ ନୁହେଁ ।

୨୬୮୧. ଇନାମ ( =ପୁରସ୍କାର) ପାଇଲି ରାଜାଠୁଁ ଜାଣ
କୈଫିୟତ ଦେଇ ଗଲା ପ୍ରାଣ ।

ପୁରସ୍କୃତ ବ୍ୟକ୍ତିକୁ ବହୁଲୋକ ପୁରସ୍କାର ସମ୍ପର୍କରେ କିପରି ପାଇଲୁ ,ନାହିଁକି ପାଇଲୁ ,କେତେ ପାଇଲୁ ଇତ୍ୟାଦି ପ୍ରଶ୍ନ ବାଣରେ ବ୍ୟତିବ୍ୟସ୍ତ କରିଥାଆନ୍ତି ।

୨୬୮୨. ଇନ୍ କିଲାବ - ଜିନ୍ଦାବାଦ ।

ମୌଲାନା ହିସରତ ମୋହାନୀ ୧୯୨୦ ମସିହାରେ ଉତ୍ତର ପ୍ରଦେଶର କାନପୁର ସହରରେ ଏକ ଶ୍ରମିକ ହରତାଳରେ ଏହି ସ୍ଲୋଗାନ ଦେଇଥିଲେ । ସେହିଦିନ ଠାରୁ ଏହି ସ୍ଲୋଗାନଟି ସର୍ବ ସାଧାରଣରେ ପ୍ରଚଳିତ ହୋଇଆସୁଛି ।

୧୬୮୩. ଇନାୟତ୍ କରିବା । - କୃପା କରିବା ।

୧୬୮୪. ଇନେ ଗିନେ । - ହାତ ଗଣତି ,ସାମାନ୍ୟ ।

୧୬୮୫. ଇନକାର କାଏମ ରଖିବା । - ଦୃଢତାର ସହ ନାମଞ୍ଜୁର ବା ଅସ୍ୱୀକାର ।

୧୬୮୬. ଇନସାନର ଖୁନ ପିଇବା ।

ଅନ୍ୟକୁ ସନ୍ତେଇ କିମ୍ବା ତା' କଷ୍ଟରୁ ଫାଇଦା ଉଠାଇ ନିଷ୍କୋଷିତର ଧନରୁ ଆମୋଦ କରିବା ।

୧୬୮୭. ଇନସାନ ବନିବା (ହେବା) । - ସମଦୁଃଖାପନ୍ନ ଓ ଶିଷ୍ଟ ହେବା ।

୧୬୮୮. ଇନସାନିୟତର ରୋଶଣୀ । - ଶିଷ୍ଟ ଲୋକର ଗୁଣ ।

୧୬୮୯. ଇନ୍ତକାମ ଥଣ୍ଡାହେବା । - ପ୍ରତିଶୋଧ ନେବା ,ବଦଲା ନେବା ।

୧୬୯୦. ଇନ୍ଦ୍ରଙ୍କ ଆଖଡ଼ା । - ଅପ୍ସରାମାନଙ୍କର ଦଳ ।

୧୬୯୧. ଇନ୍ଦ୍ରଙ୍କର ପରୀ । - ଅତ୍ୟନ୍ତ ସୁନ୍ଦରୀ ସ୍ତ୍ରୀ ।

୧୬୯୨. ଇନ୍ଦ୍ରଜାଲର ଖେଳ (ଇନ୍ଦ୍ର ଜାଲୁଆ) ।-ଛଳ,କପଟ ବା ଧୋକାବାଜିର ଖେଳ ।

୧୬୯୩. ଇତର କଥାରେ ଭିତର ଜଳେ ।

୧୬୯୪. ଇତିପିତା ,ଇତି ପିତା,ମାଉସୀ ଦେଲା ନଳିତା ପିତା ।

ପିତା ଖାଇଖାଇ ବିଚ୍ଛାର ଲାଗିଲାରୁ ,ଭଲମନ୍ଦ ଖାଇବାକୁ ମାଉସୀ ଘରକୁ ଗଲି । ମାଉସୀ ନଳିତା ଶାଗ ଖରଡ଼ି ଖାଇବାକୁ ଦେଲା । ସେ ବି ପିତା ! ଭଗ୍ୟ ମନ୍ଦଥିଲେ ଯେଉଁଠିକି ଗଲେବି ମନ୍ଦଫଳ ଭୋଗ କରିବାକୁ ହୁଏ ।

୧୬୯୫. ଇତରଟା ପଶତାନି ଯଥେଚ୍ଛାୟା
ବିଲିଖିତାନି ସହେ ଚତୁରାନନ,
ଅରସିକେଷୁ ରସସ୍ୟ ନିବେଦନଂ
ଶିରଶି ମା ଲିଖ ମା ଲିଖ ମା ଲିଖ ।

ହେ ସୃଷ୍ଟି କର୍ତ୍ତା,ମୋତେ ଯେତେ ଦୁଃଖ ଦେବ ଦିଅ ,ମୁଁ ସହିବାକୁ ପ୍ରସ୍ତୁତ ,କିନ୍ତୁ ଅରସିକ ଠାରେ ରସର ନିବେଦନ କରିବା ଦୁଃଖ ମୋ କପାଳରେ ଲେଖ ନାହିଁ । ତେଣୁ ଯେ ରସ ଗ୍ରହଣ କରିବାକୁ ଅସମର୍ଥ ତା ନିକଟରେ ରସୋକ୍ତି ପ୍ରକାଶ ନିଷ୍ଫଳ ।

୧୬୯୬. ଇତାର୍ ବୁଆ ଭୁଲେ ସରିଆଟ । - ଯା'ର ବାପା ଭୋଳା ଲୋକ ।

୧୬୯୭. ଇତର ଜନର କାତର ,ଡ଼ାହାଣୀମାନଙ୍କ ଚାତର ।

୧୬୯୮. ଇତିକଥା -- ଅର୍ଥ ଶୂନ୍ୟ ବାକ୍ୟ ।

୧୬୯୯. ଇତୋ ନଷ୍ଟ ତତୋ ଭ୍ରଷ୍ଟ ।

ମୂଳରୁ ଯେ ନଷ୍ଟ ହୁଏ ଅର୍ଥାତ ବିଗିଡ଼ି ଯାଏ ,ସେ ପରବର୍ତ୍ତୀ କାଳରେ ବି ଗିଡ଼ିଯାଏ ଅର୍ଥାତ୍ ଭ୍ରଷ୍ଟ ହୁଏ ।

୨୭୦୦. *ଏକାର୍ଥରେ* -ମୂଳରୁ ଯେ ବିଗିଡ଼ା , କେଉଁ ନୁହେଁ ସଜଡ଼ା ।

୨୭୦୧. *ଏକାର୍ଥରେ* -ଇତୋ ଭ୍ରଷ୍ଟ ସ୍ତତ ନଷ୍ଟଃ ନ ପୂର୍ବ ପର ।

ଏହି ପ୍ରବାଦଟି ସଂସ୍କୃତରେ ହେଲା-

ଇତୋ ଭ୍ରଷ୍ଟ ସ୍ତତୋ ନଷ୍ଟୋ ନ ଚ ପୂର୍ବଂ ନ ଚାପରମ୍ ।

୨୭୦୨. ଇତୋ ନ କିଞ୍ଚିତ୍ ପରତୋ ନ କିଞ୍ଚିତ୍
ଯତୋ ଯତୋ ଯାମି ତତୋ ନ କିଞ୍ଚିତ୍
ବିଚାର୍ଯ୍ୟ ପଶ୍ୟାମି ଜଗନ୍ନ କିଞ୍ଚିତ୍
ସ୍ୱାତ୍ମିବ ବୋଧାଦଧିକଂ ନ କିଞ୍ଚିତ୍ ।

ଏଆଡ଼େ କିଛି ଅଛି ନା ସେଆଡ଼େ କିଛି ଅଛି । ଯେଉଁ ଯେଉଁ ଆଡ଼େ ଯାଉଛି ସେଠାରେ ମଧ କିଛି ନାହିଁ । ବିଚାର କରି ଦେଖୁଛି ଜଗତରେ ମଧ କିଛିନାହିଁ । ସ୍ୱଆତ୍ମାକୁ ଚିହ୍ନିବା ଠାରୁ ବଳି ଆଉ କିଛି ନାହିଁ ।

୨୭୦୩. ଇତିହାସ ଦୋହରାଇବା । - ଇତିହାସର ପୁନରାବୃତ୍ତି ।

୨୭୦୪. ଇତିହାସ ବନେଇବା । - ଏପରି କାମକରିବା ଯାହା କେବେ ହୋଇନାହିଁ ।

୨୭୦୫. ଇତିହାସର ସୀମା ଲଙ୍ଘିବା । - କାଳାତୀତ ହେବା ।

୨୭୦୬. ଇତିହାସର ଡ଼ାକ ।-ବିତିଯାଇଥିବା ଘଟଣାବଳିକୁ ମନେପକାଇ ପ୍ରେରଣା ଦେବା ।

୨୭୦୭. ଇତିହାସକୁ ଉହର୍ଗ କରିବା ।

କୌଣସି ବିଷୟ ବା ଘଟଣାକୁ ଲେଖି ଆସନ୍ତା ପୀଢି ପାଇଁ ସୁରକ୍ଷିତ କରିବା । ଯେପରି ମହାତ୍ମା ଗାନ୍ଧୀ ଦକ୍ଷିଣଆଫ୍ରିକାରେ ସତ୍ୟାଗ୍ରହର ଇତିହାସ ଲେଖି ତାକୁ ଇତିହାସକୁ ଉତ୍ସର୍ଗ କରିଯାଇଛନ୍ତି ।

୨୭୦୮. ଇତିହାସ ଜାଗ୍ରତ । - ଘଟଣା ଘଟି ଚାଲିଛି । ଘଟଣା ଘଟିବା ବନ୍ଦହୁଏ ନାହିଁ ।

୨୭୦୯. ଇତି ଶ୍ରୀ ।

ପୂର୍ଣ୍ଣାଙ୍ଗ ତଥା ପୁରା କରିବା ,ଜୀବନରେ ମାରିଦେବା , ସମାପ୍ତ କରିଦେବା

୨୭୧୦. ଇତଫାକ କରିବା ।

ସହମତ ହେବା । ଯେପରି ,ଆପଣଙ୍କ କଥାରେ ମୁଁ ଇତଫାକ କରୁଛି ।

୨୭୧୧. ଇତଫାକ ପଡ଼ିବା ।

ସଂଯୋଗ ହେବା । ଯେପରି ଅଜଣା ସ୍ଥାନକୁ ଏକୁଟିଆ ଯିବା ପାଇଁ ଇତଫାକ ପଡ଼ିଲେ ମୁଁ ରାସ୍ତା ଭୁଲିଯିବି ।

୨୭୧୨. ଇତଫାକରୁ ।

ସଂଯୋଗ ବଶତଃ । ଯେପରି ମୋର ଆପଣଙ୍କ ଆଡ଼େ ଯିବାର ଥିଲା ମାତ୍ର ଇତଫାକରୁ ଆପଣ ନିଜେ ଆସିଗଲେ ।

୨୭୧୩. ଇଫ (= if) ଆଉ ବଟ (=but) କରିବା ।

ବାହାନା କରିବା ,ଦୋଦୋପାଞ୍ଚହେବା ।

୨୭୧୪. (କ) ଇମିତି ଜାଗାରେ ବସିବ,
କେହି ନକହିବେ 'ଉଠ' ବୋଲି ।
(ଖ) ଇମିତି କାମ କରିବ,
କେହି ନ କହିବେ 'ହେଦ୍' ବୋଲି ।
(ଗ) ଇମିତି କଥା କହିବ ,
କେହି ନକହିବେ 'ଝୁଟ' ବୋଲି ।

୨୭୧୫. ଏ ତିନୋଟି ହେଲା ନରକର ଦ୍ୱାର -
ଲାଭ,ପୂଜା ଓ ପ୍ରତିଷ୍ଠା । - ( ବାୟା ବାବାଙ୍କ ଅମୃତ ବାଣୀ )

୨୭୧୬. ଇମାନ କା ଖାନା । - ସଦ୍ ଉପାୟରେ ଜୀବୀକା ନିର୍ବାହ କରିବା ।

୨୭୧୭. ଇମାନ ଖୁନ କରିବା । - ବେଇମାନି କରିବା ।

୨୭୧୮. ଇମାନ ଦେବା । - ନୀତି ବିରୁଦ୍ଧ କାମ କରିବା ।

୨୭୧୯. ଇମାନ ବିକିବା । - ଅର୍ଥ ବିନିମୟରେ ବେଇମାନି କରିବା ।

୨୭୨୦. ଇମାନ ସହ କହିବା । - ସତ କହିବା ।

୨୭୨୧. ଇମାନ କା ସୌଦା । - ଉଚିତ ଲାଭରେ ଦୋକାନଦାରୀ ।

୨୭୨୨. ଇମାନ ଡ଼ଗମଗେଇବା । - ବେଇମାନି କରିବାକୁ ପ୍ରସ୍ତୁତ ହେବା ।

୨୭୨୩. ଇମାନ ଉପରେ ହାତ ପକେଇବା । - ବେଇମାନ ହେବା ।

୨୭୨୪. ଇମକା ଡିମକା । - ଅମୁକକେଇ ସମୁକେଇ , ଜଣା ଅଜଣା ,ଯେ କେହି ।

୨୭୨୫. ଇଲିଶା ଖଇଙ୍ଗାଃ ଚୈବ ଭେକଟିମ୍ ମାଗୁରଂ ଏବ ଚ
ରୋହିତୋ ମତ୍ସ୍ୟରାଜେନ୍ଦ୍ର ପଞ୍ଚମତ୍ସା ନିରାମିଷାଃ ।

ଇଲିଶି ,ଖଙ୍ଗା, ଭେକଟି,ମାଗୁର,ରୋହି ପାଞ୍ଚୋଟି ମାଛ ସମ୍ପର୍କରେ ଏକ ଉଦ୍ଭଟ ସଂସ୍କୃତ ଶ୍ଲୋକ ।

୨୭୨୬. ଇଲାକା ଟୁଟେଇବା ।

ସମ୍ପର୍କ ତୁଟାଇବା/ ଅତୁଆ ଛିଡ଼େଇବା / ବିବାଦ ମିମାଂସା କରିବା/ ସ୍ତ୍ରୀକୁ ଛାଡ଼ ପତ୍ର ଦେବା ।

୨୭୨୭. ଇଲମ୍ ହାସଲ କରିବା । - କୌଣସି ବିଦ୍ୟାକୁ ଆୟତ୍ତ କରିବା ।

୨୭୨୮. ଇଲମ୍- ଗୌତମ୍ କରିବା । - ହସରେ ଉଡ଼ାଇ ଦେବା ।

୨୭୨୯. ଇଲମ୍ ବିଲମ୍ କରିବା । - ହସରେ ଉଡ଼ାଇ ଦେବା ,ଇତସ୍ତତଃ କରିବା ।

୨୭୩୦. ଇଲାକା କରିଦେବା ।

ସ୍ତ୍ରୀକୁ ଛାଡ଼ପତ୍ର ଦେବା/ବିବାଦ ମୀମାଂସା କରିବା/ ହିସାବ ନିକାଶ କରିଦେବା ।

୨୭୩୧. ଇଲ୍ଲତ୍ (=ବିଷ୍ଠା) ଧୋଇଲେ ଯାଏ ।
ଇଲ୍ଲତ୍ (=ଦୁର୍ଗୁଣ) ମଲେ ଯାଏ ।

୨୭୩୨. *ଏକାର୍ଥରେ*-ଇଲତ୍ (=ମଇଳା) ଧୋଇଲେ ଯାଏ, ଇଲଦ୍ ମଲେ ଯାଏ ।

ଦେହର ମଇଳା ଧୋଇଲେ ଯାଏ ,କିନ୍ତୁ ମନର ମଇଳା ମଲେହିଁ ଛାଡ଼େ ,ଅର୍ଥାତ୍ ମନୁଷ୍ୟର ପ୍ରକୃତି ମଲେ ତୁଟିଯାଏ ।

୨୭୩୩. -*ଏଚ୍ଛନ*- ଇଲଜତ୍- (=ମଇଳା ) ଧୋଇଲେ ଯାଏ ।
ଇଲଛତ (= ମନ୍ଦ ଅଭ୍ୟାସ) ମଲେ ଯାଏ ।

୨୭୩୪. ଇଲ୍ଲତ (=ମନ୍ଦ ଅଭ୍ୟାସ) କଟିବା । - ଝନ୍‌ଝଟ ଖତମ ହେବା ।

୨୭୩୫. ଇଲଜାମ ଦେବା । - କଳଙ୍କ ଲଦିବା ବା ଦୋଷ ଦେବା ।

୨୭୩୬. ଇହ ଜ୍ଞାନ ତେଜି ପ୍ରିୟେ ପରମକୁ ଚେତ ।

୨୭୩୭. ଇଲିସି ମାଛର କଣ୍ଟା ସାର । -ଇଲିସିକଣ୍ଟା ପ୍ରଧାନ ମାଛ ।

୨୭୩୮. ଇଲିଶୋ ଖଲିଶଣ୍ଚୈବ ଭେକଟି ଛୋଟ ଭାଂଣା ତଥୈବଚ ।
ରୋହିତୋ ମତ୍ସ୍ୟରାଜେନ୍ଦ୍ର ପଞ୍ଚମତ୍ସ୍ୟା ନିରାମିଷାଃ ।

ମାଛ ସଂପର୍କରେ ଏକ ବ୍ୟଙ୍ଗ ସଂସ୍କୃତ ପ୍ରବାଦ ।

୨୭୩୯. ଇରାଦା କରିବା -ନିଶ୍ଚିତ କରିବା ,ଇଚ୍ଛା ହେବା ।

୨୭୪୦. ଇଂରେଜ ଶାସନର ଶାନ୍ତି । କବର ମଧ୍ୟରେ ଶବର ଶାନ୍ତି (ପରି ) ।

ଏହି ଉକ୍ତିଟି ମହାତ୍ମା ଗାନ୍ଧୀଙ୍କର । ଦୁଇ ଶହ ବର୍ଷର ଶାନ୍ତିପୂର୍ଣ୍ଣ ଇଂରେଜ ଶାସନ ଭାରତବାସୀଙ୍କୁ ବ୍ୟୁତ୍ପାତ ପ୍ରତି ଉଦାସୀନ କରି ଦେଇଥିଲା । କେଉଁଠି ଟିକିଏ ବିଶୃଙ୍ଖଳା ଘଟିଲେ ଲୋକେ ଚମକି ଉଠୁଥିଲେ । ମାତ୍ର ସ୍ୱାଧୀନ ଦେଶକୁ ବହୁ ବ୍ୟୁତ୍ପାତ ,ବହୁ ଉଦ୍‌ବେଗ ସହ୍ୟକରିବାକୁ ହୁଏ । ପୃଥିବୀରେ କୌଣସି ଗୋଟିଏ ଦେଶ ଏପରି ନାହିଁ,ଯେଉଁଠି ଶାନ୍ତି ବିରାଜିଛି; ଏଣୁ ଭାରତରେ ବିଶୃଙ୍ଖଳାକୁ ବଡ଼ ବୋଲି ମନେକରିବା ଉଚିତନୁହେଁ । ସାହସ ଓ ଦମ୍ଭର ସହିତ ସମସ୍ତ ସମସ୍ୟାର ସମ୍ମୁଖୀନ ହେବାରେ ଆନନ୍ଦ ଅଛି । କାରଣ ତାହାହିଁ ମନୁଷ୍ୟତ୍ୱ ।

୨୭୪୧. ଇଠେଇଁ ସିଠେଇଁ - ଏଠାରେ ସେଠାରେ ସବୁ ସ୍ଥାନରେ ।

୨୭୪୨. ଇଶ୍ ଇଶ୍ -

ଘୃଣା କରିବା । ଶରୀରର କଷ୍ଟ,ବୋଧ ପ୍ରକାଶକ ଧ୍ୱନି । ସିଟି ମାରିବା ,ସ୍ତ୍ରୀ ପତି ସହ ରମଣ ସମୟରେ ଅନୁରାଗ ଦ୍ୟୋତକ ଅବ୍ୟକ୍ତ ମଧୁରଧ୍ୱନି ।

୨୭୪୩. ଇଶାଣରେ ଚାଉଳ ପକାଇବା ।

ଏ ବାଳିକାଟି ଅମୁକର ଇଶାଣରେ ଚାଉଳ ପକାଇଛି ଅର୍ଥ ସେ ବାଳିକାଟି ନିଶ୍ଚିତଭାବେ ପ୍ରଜାପତିଙ୍କ ଘଟସୂତ୍ର ଅନୁସାରେ ଉକ୍ତ ପୁରୁଷକୁ ବିବାହ କରିବ ।

୨୭୪୪. ଇଶାଣ କୋଣେ ବଉଦ ,ଝଡ଼ ଉଠେ ବହୁତ ।

ଉତ୍ତର ପୂର୍ବ କୋଣରେ ମେଘ ଉଠିଲେ ପ୍ରବଳ ଝଡ଼ ସୃଷ୍ଟିହୁଏ ।

୨୭୪୫. *ସଂଗୀତରେ ପ୍ରୟୋଗ*-''ବାଟୋଇ ଭାଇ ବେଗି ବେଗି ପହଣ୍ଡ ପକେଇ ଯା,
ଇଶାଣ କୋଣେ ବଉଦ ରେଖା ଦେଲାଣି ଦେଖାରେ ।''

ଅର୍ଦ୍ଧ ଶତାବ୍ଦୀରୁ ଉର୍ଦ୍ଧ୍ୱର ପ୍ରସିଦ୍ଧ ଗୀତିକାର ଓ ଗାୟକ ସ୍ୱର୍ଗତ ଗୋକୁଳାନନ୍ଦ ମହାନ୍ତିଙ୍କ ଦ୍ୱାରା ପ୍ରଥମ ଓଡ଼ିଆ ଗ୍ରାମୋଫୋନ ରେକର୍ଡ଼ ସଙ୍ଗୀତରେ ମୂର୍ଚ୍ଛନାରେ ଏହି ପ୍ରବାଦଟିର ତାତ୍ପର୍ଯ୍ୟ ପ୍ରତିପାଦିତ ହୋଇଛି ।

୨୭୪୬. ଇଶାସ୍ୟ ମିଦମ୍ ସର୍ବମଂ । - ସମସ୍ତ ହିଁ ଈଶ୍ୱର ।

୨୭୪୭. ଈଶ୍ୱର କଲେ ,କର୍ତ୍ତା ମଲେ
କୀର୍ତ୍ତନ ଶୁଣ ,ବସି ଘରେ ।

କର୍ତ୍ତା ପରିବାର ବର୍ଗର ଭଲମନ୍ଦ ନ ବୁଝି ସ୍ୱେଚ୍ଛାଚାରୀ ହୋଇ ଅକଥନୀୟ ଅତ୍ୟାଚାର କଲେ , ସେମାନେ ଅତ୍ୟାଚାରର ପରିସମାପ୍ତି ପାଇଁ ଈଶ୍ୱରଙ୍କପାଖରେ କର୍ତ୍ତାଙ୍କର ମୃତ୍ୟୁ କାମନା କରିଥାନ୍ତି । ଏହି ପ୍ରବାଦଟିରେ ଗୃହକର୍ତ୍ତାଙ୍କର ପରିବାର ପ୍ରତି ସମ୍ବେଦନଶୀଳତା ସର୍ବଦା ରଖିବା ପାଇଁ ସୂଚିତ କରାଯାଇଛି ।

୨୭୪୮. ଇସ୍କାପାନ ଟିକା,ଦେଖିଲେ ବଙ୍କା ,ଶୁଣିଲେ ବଙ୍କା ।

ଆଚରଣରେ ଡେଙ୍ଗାମି କରୁଥିବା ଶ୍ରୀହୀନ ବ୍ୟକ୍ତି ପ୍ରତି ବ୍ୟଙ୍ଗ ।

୨୭୪୯. ଇସ୍ତକ କାବାର ।

'ବିନ୍ତି' ତାସଖେଳରେ ରଙ୍ଗର ସାହେବ ବିବି ଜଣକ ପାଖରେ ପଡ଼ିଲେ ଇସ୍ତକ ହୁଏ । ଏହାକୁ 'ଇସ୍ତକ କାବାର' କହନ୍ତି ।

୨୭୫୦. ଇସ୍ତମୁରାରି । - ଚିରସ୍ଥାୟୀ ।

୨୭୫୧. ଇସ୍ତକ । - ଏକସାଙ୍ଗରେ ।

ଯେପରି ଜୋତା ସିଲେଇ ଠାରୁ ଚଣ୍ଡୀପାଠ ବା ସଂକୀର୍ତ୍ତନ ପର୍ଯ୍ୟନ୍ତ ।

୨୭୫୨. ଇସ୍ ତିସ୍ ବତାଇବା । - ଏଣୁ ତେଣୁ ବତେଇବା ,ନିଶ୍ଚିତ କଥା ନକହିବା ।

୨୭୫୩. ଇସରା (= ନାଗେଶ୍ୱର ବାଡ଼ା )ବାଜେ ସେଁ,
କବାଟ ହୁଅଇ କେଁ,
କବାଟ କଣରେ ଡ଼ାକଇ ଗୋରୀ
ପାନ ଖଣ୍ଡେ ନେ ନେ ।

ସେଁ ସେଁ ନାଗେଶ୍ୱର ବାଜା ବଜେଇ ସାପୁଆକେଳା ସାପ ଖେଳାନ୍ତି । କବାଟ ଖୋଲିଲେ କେଁ ଶବ୍ଦ ହୁଏ । ପାନ ଖଣ୍ଡେ ଯାଚି ଦେବାରୁ ଯୁବକ ପ୍ରିତି ଯୁବତୀର ଯେ ପ୍ରେମ ଅଛି ତାର ସୂଚନା ମିଳେ ।

୨୭୫୪. ଇସ୍ ' ବୋଇଲୋ କି ଚୋଟ କାଟେ ?

କୁରାଢ଼ିରେ କାଠ ଚିରିଲାବେଳେ ଚିରାଳୀ ତୁଣ୍ଡରୁ 'ଇସ୍' ଶବ୍ଦ ବାହାରେ । ଏହି ବଚନ ଦ୍ୱାରା କୁରାଢିର ଚୋଟ ଉପରେ କିଛି ପ୍ରଭାବ ପଡ଼େ ନାହିଁ । କୁରାଢି ଯେପରି କାଟିବା କଥା କାଟେ ।

୨୭୫୫. ଇସ୍ ମିସ୍ , କରମ କିସ୍,
ଠାରେ ଠୁର , ଉଣେଇଶ ବିଶ ।

ଲୁଚକାଳି ଖେଳରେ ଚୋର ବାଛିବାଲାଗି ପଦ ଯାହା ଉପରେ ବିଶ୍(କୋଡ଼ିଏ)ପଡ଼େ ,ସେ ଚୋର ହୁଏ ତା ଆଖି ବନ୍ଧାହୁଏ -ଅନ୍ୟମାନେ 'ଚୋର , ଚୋର' କହି ଲୁଚନ୍ତି । ଲୁଚିଥିବା ପିଲାଙ୍କ ଭିତରୁ ଚୋର ଯାହାକୁ ଛୁଏଁ ସେ 'ଚୋର' ହୁଏ । ଏହିପରି ଖେଳ ଚାଲେ ।

୨୭୫୬. ଇସ୍ ପାର କି ଉସ୍ ପାର

ଏପାଖ ନହେଲେ ସେପାଖ ବା ଏପାରି ନୋହିଲେ ସେପାରି - ଭଲ ହେଉ ବା ମନ୍ଦ ହେଉ ।

୨୭୫୭. ଇସକା ଉସକା - ଅନ୍ୟ କାହାରି ,ଜଣା ଅଜଣା ଲୋକର ।

୨୭୫୮. ଇସାରା କରିବା (ଦେବା) । - ସଙ୍କେତ ଦେବା ,ମାମୁଲି କଥନ ।

୨୭୫୯. ଇଶ୍କମରା - ପ୍ରେମ ପ୍ରପୀଡ଼ନ ।

୨୭୬୦. ଇଶ୍କ ବାଜି - ପ୍ରେମ ଓ ପ୍ରୀତିର ସୌକୀନ ।

୨୭୬୧. ଇସାରାର ଗୋଲାମ -ଅନ୍ୟର ସଙ୍କେତରେ କାମକରୁଥିବା ଲୋକ ।

୨୭୬୨. ଇସାରାରେ ନାଚିବା ।

୨୭୬୩. ଇସ୍କୁଲ୍- ଏ କୁଳ- ସେ କୁଳ ।

ଇଂରାଜୀ 'ସ୍କୁଲ' ଶବ୍ଦ ଭାଷାରେ 'ଇସ୍କୁଲ' ବୋଲି ଉଚ୍ଚାରିତ ହୁଏ । ପ୍ରଥମେ ପ୍ରଥମେ ସ୍କୁଲ ପଢୁଆ ନବ୍ୟ ଶକ୍ଷିତ ଯୁବାମାନେ ଖ୍ରିସ୍ତାନ ବା ବିଧର୍ମୀ ହେବାରୁ,ପ୍ରାଚୀନ ବ୍ୟକ୍ତିମାନେ 'ଇସ୍କୁଲ' ଶବ୍ଦ (ଅର୍ଥାତ୍ ହିନ୍ଦୀ ଭାଷାରେ ଏହି କୁଳ ବା ବଂଶ)ର ଏହି ବ୍ୟଙ୍ଗାର୍ଥ କଲେ । ଏହାର ମର୍ମ ଏହିକି ,ଯେଉଁ ପିଲା ସ୍କୁଲରେ ପଢିବ ସେ ଇସ୍କୁଲରୁ (ଏ କୁଳରୁ ଅର୍ଥାତ୍ ହିନ୍ଦୁ କୁଳରୁ )ଯାଇ ଅନ୍ୟକୁଳ(ଅର୍ଥାତ୍ ଖ୍ରିସ୍ତାନ କୁଳ)ରେ ପଶିବ । କାହାର ସଙ୍କେତ ବା ଇଚ୍ଛାନୁଯାୟୀ କାମ କରିବା । ଅନ୍ୟର ଆଦେଶ ସମ୍ପୂର୍ଣ୍ଣ ପାଳନ କରିବା ।

୨୭୬୪. ଇସାରାରେ ସୂଚନା- ସଙ୍କେତ ଦ୍ୱାରା ନିଜର ମନୋଭାବ ବ୍ୟକ୍ତ କରିବା ।

୨୭୬୫. ଇସ୍ତିଙ୍ଗା ଲଢିବା- ଘନିଷ୍ଠ ବନ୍ଧୁ ହେବା ।

୨୭୬୬. ଇସ୍ତିଙ୍ଗା ଢେଲା (ଟେଳା) - ତୁଚ୍ଛ ବ୍ୟକ୍ତି ।

୨୭୬୭. ଇସ୍ତିଞ୍ଜା ଇସ୍ତିଞ୍ଜା ଲଢାଲଢି ।

ରତି ବିଳାସ ତଥା ସମ୍ଭୋଗ କରିବା ବା କରାଇବା ।

୨୭୬୮. ଇଷ୍ଟ ଯିଏ ,କୃଷ୍ଣ ସିଏ, ଦୁହିଁଙ୍କର ଭେଦ ନାହିଁ ।

ଶ୍ରୀକୃଷ୍ଣ ହେଉଛନ୍ତି ଭଗବାନ ବିଷ୍ଣୁଙ୍କର ମନୁଷ୍ୟ ଅବତାର । ତାଙ୍କର ସୀମାହୀନ କ୍ଷମତାକୁ ସ୍ୱୀକୃତି ଦେଇ ବର୍ଣ୍ଣନା କରାଯାଉଛି । ଏହା ବ୍ୟଙ୍ଗୋକ୍ତି ନୁହେଁ ।

୨୭୬୯. *ଏକାର୍ଥରେ* - କୃଷ୍ଣ କଥା ମଧୁର ବାଣୀ ତୁମେ କୁହ ମୁଁ ଶୁଣି ।

୨୭୭୦. *-ଏଜନ-* ବିଶ୍ୱାସେ ମିଳଇ ହରି (କୃଷ୍ଣ) ,ତର୍କେ ବହୁ ଦୂର ।

୨୭୭୧. *-ଏଜନ-* ରଖେ କୃଷ୍ଣ (ହରି) ମାରେ କିଏ ?<br>ମାରେ କୃଷ୍ଣ(ହରି) ରଖେ କିଏ ?

୨୭୭୨. *-ଏଜନ-* କୃଷ୍ଣ କେମିତି ,ଯାର ମନ ଯେମିତି ।

୨୭୭୩. *-ଏଜନ-* ଫଳ ମଧ୍ୟରେ ଆମ(ଆମ୍ର)<br>ମଣିଷ ମଧ୍ୟରେ ଶ୍ୟାମ (=କୃଷ୍ଣ)

୨୭୭୪. *-ଏଜନ-* ରଙ୍ଗ ମଧ୍ୟରେ ସାଧା<br>ସ୍ତିରୀ ମଧ୍ୟରେ ରାଧା (=ଶ୍ରୀରାଧା) ।

୨୭୭୫. *-ଏଜନ-* ଇଷ୍ଟ ଯିଏ କୃଷ୍ଣ ସିଏ ଉଭୟରେ ଭେଦ ନାହିଁ ।

ଯିଏ ପୂଜିତ ସେ ହେଉଛନ୍ତି ଶ୍ରୀକୃଷ୍ଣ,ଅର୍ଥାତ୍ ପୂଜିତ ବ୍ୟକ୍ତି ଓ ଶ୍ରୀକୃଷ୍ଣଙ୍କ ମଧ୍ୟରେ ପ୍ରଭେଦ ନାହିଁ ।

୨୭୭୬. ଇଷ୍ଟଂ ଧର୍ମେଣ ଯୋଜୟେତ୍ ।

ମିତ୍ରକୁ ଧର୍ମ ସାଙ୍ଗରେ ମିଳାଇ ଦେବା ଉଚିତ ।

୨୭୭୭. ଇଷ୍ଟ ବଚନ ,ତୁଷ୍ଟ ମନ । -ଉତ୍ତମ କଥାରେ ମନୁଷ୍ୟ ତୃପ୍ତି ଲାଭକରେ ।

୨୭୭୮. ଇଷ୍ଟ ରୁଷ୍ଟ ହେଲେ ସବଂଶ ନି ଧନ,<br>ଇଷ୍ଟ ତୁଷ୍ଟ ହେଲେ ବୈକୁଣ୍ଠ ଗମନ ।

୨୭୭୯. ଇସାରାରେ ଦିଗହରା ।

ମନ୍ଦ ଉଦ୍ଦେଶ୍ୟ ଜନିତ ଇସାରା ମନୁଷ୍ୟକୁ ବିପଥଗାମୀ କରିଦିଏ । ପ୍ରବାଦଟି ଏହି ପରିପ୍ରେକ୍ଷୀରେ କୁହାଯାଇଛି ।

୨୭୮୦. ଇଷ୍ଟକାଳୟ (= ଇଟାରେ ନିର୍ମିତ ଘର ) ,ଶ୍ୟାମାନାରୀ,<br>ବଟ-ଛାୟା,କୂପ-ବାରି ।

୨୭୮୧. *ଏକାର୍ଥ ସଂସ୍କୃତରେ* - କୂପୋଦକ,ବଟଛାୟା,ଶ୍ୟାମାସ୍ତ୍ରୀ,ଚେଷ୍ଟକାଳୟଂ<br>ଶୀତକାଳେ ଭବେଦୁଷ୍ଣ ,ଗ୍ରୀଷ୍ମକାଳେ ଚ ଶୀତଳମ୍ ।<br>( ଏ ଗୁଡ଼ିକ ସର୍ବଦା ଉପସିତ)

୨୭୮୨. ଇଷ୍ଟ ଅନିଷ୍ଟ ଜ୍ଞାନ ନାହିଁ ,ଯାହାକୁ ପାଇ ତା ସଙ୍ଗେ ଯାଇ ।
୨୭୮୩. ଇଷ୍ଟ କୁଟୁମ୍ବ କକା ,ସକଳ କୁଟୁମ୍ବ ଟଙ୍କା ।

ବାପର ଭାଇ କକା ଅର୍ଥାତ୍ ଦାଦା କୁଟୁମ୍ବମାନଙ୍କ ମଧ୍ୟରେ ମଙ୍ଗଳ କାରକ । ମାତ୍ର ଅନ୍ୟ ସବୁ କୁଟୁମ୍ବ ଟଙ୍କାର ପ୍ୟାରା ।

୨୭୮୪. ଇନ୍ଦ୍ର ଚନ୍ଦ୍ର ନ ମାନିବା । - କୌଣସି ବ୍ୟକ୍ତିଙ୍କୁ ଖାତିର ନକରିବା ।

୨୭୮୫. ଇନ୍ଦ୍ରଜିତ ମଲା ବୋଲିରେ ଲଙ୍କାରେ ବାରତା
ରାଣୀ ମନ୍ଦୋଦରୀ ତ କାନ୍ଦଇ କି କଲୁ ବିଧାତା ।
ଜଗତୀ ଉପରେ ଯେ ରାବଣ ମୋହ ଯାଇ
ରାଣୀ ମନ୍ଦୋଦରୀ ତ ମଥା ଯେ କୋଡ଼ାଇ
କି କଲା ବିଧାତାରେ ଦେଲା କେତେ ଦୁଃଖ
ରାତ୍ରରେ ନିଦ ନାହିଁ ଦିବସେ ନାହିଁ ଭୋକ
କେମନ୍ତେ ରଜନୀ ପାହିବ ଯେ -
ଚାହିଁବି ସ୍ୱାମୀ ମୁଖ । ( କୃଷକ ବୋଲି ।)

୨୭୮୬. ଇନ୍ଦ୍ରାବତୀ ନଈ ଯାଉଅଛି ବହି ,
ନାବରେ ଘାଟୁଆ ନାହିଁ
ବୈକୁଣ୍ଠେ ଭେଟିଲି ମଞ୍ଚରେ ଦେଖିଲି
ତୋ ପରା ଗୁଣିକ ନାଇଁ
ଲଦକା ଖେନ୍ଦାରେ କାପଡା ଯୋଡ଼େ
ଘଡ଼ି ଘଡ଼ି ହେତୁ ପଡ଼େ ।

୨୭୮୭. ଇନ୍ଦ୍ରର ଶଚୀ ।

ସ୍ୱର୍ଗ ଅଧିପତି ଯିଏ ହେଉନା କାହିକି ଶଚୀ ତାଙ୍କର ହୁଅନ୍ତି ।

୨୭୮୮. ଇନ୍ଦ୍ରାବତୀ ନଈ ଯାଉଅଛି ବହି
ଜଳଘଟେ କୁମ୍ଭି ଦରା
ଗୀତ କୁଡ଼ିଆଣି ପ୍ରବେଶ ହେଲା
ତଲ ମାଲି ଡ଼ଙ୍ଗା ପରା
ଶିରି ପରବତେ କାନ୍ଦିଲା କୁଆ

ହାତ ଧରି ମୋତେ ନିଆ ।

୨୭୮୯. ଇନ୍ଦ୍ରାବତୀ ନଇ ଯାଉଅଛି ବହି
ତିନି ଚାରି ଧାର ହୋଇ
କୁଲିକି ନ ଗଲେ ମୋ ' ନିନା ଧନ
ଶରଧା ହୁଅନ୍ତି ମୁଇଁ
ଖାରି ବୋଡ଼ା ତଳେ ଚୂନର କୁଇଁ
ଶରଧା ହୁଅନ୍ତି ମୁଇଁ ।

୨୭୯୦. ଇନ୍ଦ୍ରଯାହାର ନାହିଁ ମେଳ , ନ ଜାଣେ ସ୍ତ୍ରୀର ରସ ଖେଳ ।

୨୭୯୧. ଇନ୍ଦ୍ରଜିତ ମଲା ବୋଲି ଲଙ୍କାରେ ପଡ଼େ ହୁରି
ଶୁଣି ଲଙ୍କାଗଡ଼ ରାଜା ବାହାର ପୁଷ୍ପକ ରଥେ ଚଢି
ପୁଷ୍ପକ ରଥେ ଚଢି ମନରେ କଲା ଦକା
ଛାର ସ୍ତିରୀ ଲାଗି ଛାଡ଼ି ଅଇଲି ସୁବର୍ଣ୍ଣମୟୀ ଲଙ୍କା
ସୁବର୍ଣ୍ଣ ଗଡ଼ା ଗଡ଼ି
ଆଜିତ ପଡ଼ିଅଛି ହନୁମନ୍ତ ପାଳି
ଚନ୍ଦନ ଗୁଆ ପେଡ଼ି ।

ପୌରାଣିକ ବିଷୟବସ୍ତୁକୁ ଆଧାର କରି ସାମାଜିକ ବିଜ୍ଞବ୍ୟକ୍ତିଙ୍କ କୁକର୍ମର ସଂସାରରେ ଶୋଚନୀୟ ପରିଣତି ପାଇଁ ଭର୍ତ୍ସନା କରାଯାଉଛି ।

୨୭୯୨. ଇନ୍ଦ୍ର ପାଳିଲେ ଚାଷ , ଯମ ପାଳିଲେ ବାସ ।

ଇନ୍ଦ୍ର ଦେବତାଙ୍କ କୃପାରୁ ବର୍ଷା ହୁଏ । ବର୍ଷା ନହେଲେ ଚାଷ ହୁଏନାହିଁ । ସେହିପରି ଲୋକ ମଲାପରେ ଘରଦ୍ୱାର ଭାଙ୍ଗି ଛାରଖାର ହୋଇଯାଏ ।

୨୭୯୩. ଇନ୍ଦ୍ରପତିର ମାଇପ ମଲା ,ଝୋକରିବରଷି ଦେଲା ।

ମେଘବର୍ଷା ଶେଷବେଳକୁ ଗୁଡ଼ାଏ ବର୍ଷିଲାପରେ ଛାଡ଼ିଯାଏ । କିମ୍ବା ଯାହାର ସ୍ତ୍ରୀ ମରିଯାଏ ତା ଆଖିରୁ ସର୍ବଦା ଲୁହ ଝରୁଥାଏ ।

୨୭୯୪. ଇନ୍ଦ୍ରପତିର ମାଇପ କାଣୀ ,ଶୋଇଲା ଶେଯରେ ଆଣିଏ ପାଣି ।

ଅନବରତ ବର୍ଷା ଲାଗିରହିଲେ ଶୋଇବାଶେଯ ମଧ୍ୟ ତିନ୍ତିଯାଏ । ଇନ୍ଦ୍ରଦେବଙ୍କ ପତ୍ନୀ ଯଦି କାଣୀ ହୁଏ, ତେବେ ଶେଯରେ ପାଣି ପଡ଼ିଲେ ବି ସେ ଜାଣି ପାରେ ନାହିଁ ।

୨୭୯୫. ଇନ୍ଦ୍ରିୟ ଅର୍ଥେ ଚିତ୍ତ ଜଡ଼େ । ଘୋର ସଙ୍କଟ ଦୁଃଖ ପଡ଼େ ।

ଇନ୍ଦ୍ରିୟ ବର୍ଗ ବିନାଶିଲେ । ହରିଙ୍କି ପାଇବ ଭଜିଲେ ।( ଜଗନ୍ନାଥ ଭାଗବତ)

୨୭୯୬. ଇଦଂ ପି ବୁଦ୍ଧେ-- ଧର୍ମ୍ମେ-- ସଂଘେ ।

ରତନଂ ପ୍ରଣୀତଂ

ଏତେନ ସଚ୍ଚେନ ସତବୁଦ୍ଧି ହୋତୁ ।

ତ୍ରିଲୋକରେ ଯେତେ ରତ୍ନ ସମ୍ଭାରଅଛି ତାହା ତଥାଗତଙ୍କ ସହ ତୁଳନୀୟନୁହେଁ । ବୁଦ୍ଧ,ଧର୍ମ ଓ ସଂଘ ପରମ ରତ୍ନ ରୂପେ ଜଗତରେ ବିରାଜିତ । ଏହି ସତ୍ୟବାଣୀର ପ୍ରଭାବରେ ଜଗତରେ ସମସ୍ତଙ୍କର ମଙ୍ଗଳ ହେଉ । ବୁଦ୍ଧଙ୍କ ରଚିତ -' ରତ୍ନ ସୂତ୍ର' ।

୨୭୯୭. ଇଦ୍ କା ଚାନ୍ଦ ।

ରମଜାନ ମାସର ଶେଷଦିନ ୨ୟା ଚନ୍ଦ୍ର ଦର୍ଶନ ବାଞ୍ଛିତହେଲେ ମଧ୍ୟ ସହଜରେ ଦୃଶ୍ୟ ହୁଏନାହିଁ । ସେହିପରି ଅତି ପରିଚିତ ଲୋକ ଅକାଳେ ସକାଳେ ଦେଖାହେଲେ ଏହି ପ୍ରବାଦଟି ପ୍ରଯୁକ୍ତ ହୋଇଥାଏ ।

୨୭୯୮. ଇଙ୍କର ବଣର ଘାସ

ଦିନେ ଦେଖା ନାହିଁ  କାଳେ ଦେଖା ନାହିଁ

ଆଜି ବଡ଼ ବିଶ୍ବାସ ।

୨୭୯୯. ଇଦ ମନେଇବା -ଖୁସିବାସିର ଉତ୍ସବ ପାଳନ କରିବା ।

୨୮୦୦. ଇଦଗା ପଡ଼ିଆ ।

ଇଦ୍ ପର୍ବରେ ମୁସଲମାନମାନେ ଯେଉଁଠାରେ ଏକତ୍ର ପ୍ରାର୍ଥନା କରନ୍ତି ।

୨୮୦୧. ଇଧର କା ମାଲ ଉଧର ,ଉଧର କା ମାଲ ଇଧର ।

ଦଲାଲି ବା ଚୋରି ସମ୍ପର୍କରେ ଏହି ପ୍ରବାଦଟି ପୟୋଗ ହୋଇଥାଏ ।

୨୮୦୨. ଇଧର ଉଧର କରିବା । - ସ୍ଥାନ ବଦଳାଇବା ବା ନିଜେ ବଦଳି ଯିବା ।

୨୮୦୩. *ଏକାର୍ଥରେ-* ଏପାଖ ସେ ପାଖ କରିବା (ହେବା) ।

୨୮୦୪. ଇଧର ଉଧର କା କଥା ।- ଇଆଡ଼ ସିଆଡ଼ର କଥା । ଅର୍ଥାତ୍ ଜନରବ ।

୨୮୦୫. ଇଧର ଉଧର ଗପିବା । - ଇଆଡୁ ସିଆଡୁ (ଯାତୁ ସ୍ୟାତୁ )ଗପିବା ।

୨୮୦୬. ଇଧର ଉଧର ଦେଖିବା ।- ଇଆଡ଼େ ସିଆଡ଼େ ବା ଏଣେ ତେଣେ ଅନେଇବା ।

୨୮୦୭. ଇଧର ଆଉ ଉଧର । - କ୍ଷଣିକ ,ଅସ୍ଥାୟୀ ।

୨୮୦୮. ଇ ଭାଷାଟା ବଡ଼ କଅଁଳ ,ବଙ୍ଗଲା କୁଶେର ବୁଟା,

ବନ୍ଧୁ ଟିପିତକ୍ ରସଭିରିଛେ ଯେନ୍ତା ଖାଇଲେ ମିଠା ।

( ପଶ୍ଚିମ ଓଡ଼ିଶା ବୋଲି)

୨୮୦୯. ଇଡ଼ି ଦେଲି ମୁହିଁ ଖିରି

ସାତ ସମୁଦର ଦରିଆ ପାରିହେ
ନନା କେତେ ଅରଜିଲ ଶିରୀ ।

## ଈ-ଈ-ଈ

୨୮୧୦. ଈଶ୍ୱର କଥା ଅନୁବାଦେ । ଉତ୍ତମ ପୁରୁଷ ମଧ୍ୟେ ।( ଜଗନ୍ନାଥ ଭାଗବତ)

୨୮୧୧. ଈଶାରଙ୍ଗ ଶାଢୀ ପିନ୍ଧିତୁ ସଜାଡ଼ି ଲୁଚାଉଥାଉ ତୋ କୁଚ ,
ଯେତେ ଯତନରେ ଲୁଚେଇ ରଖିଲେ ମତେ ଦିଶିଥାଏ ଉଞ୍ଚ;
ପ୍ରାଣ ସଜନୀ ଗୋରି,ମୋର ନୟନ ତତେ ଭଗାରୀ ।

୨୮୧୨. ଈଶ୍ୱରଙ୍କ ମାୟା ,କାହିଁ ଖରା କାହିଁ ଛାୟା ।

ଭଗବାନଙ୍କର ମାୟା ବିଚିତ୍ର । ସଂସାରରେ କିଏ ସୁଖି ବା କିଏ ଦୁଃଖୀ;କେହି ଧନୀ ତ କେହି ନିର୍ଦ୍ଧନ।

୨୮୧୩. ଈଶ୍ୱର ଜୀବ ଯେ ସଂସାର,
ଏ ସର୍ବ ଏକଇ ପ୍ରକାର । (ଜଗନ୍ନାଥ ଭାଗବତ)

୨୮୧୪. ଈଶ୍ୱର ଈଶ୍ୱର ଯେ କରେ ,ଭାତ ନାହିଁ ତା ଘରେ ।

ଘରେ ଖାଇବାକୁ ଭାତ ନାହିଁ ଅଥଚ ଲୋକ ଦେଖାଣିଆ ପୂଜା ପାଠ କରିବାହାଦୂରୀ ନେଉଥିବା ବ୍ୟକ୍ତି ପ୍ରତି କଟାକ୍ଷ ।

୨୮୧୫. ଈଶ୍ୱର ହେତୁ ଏ ସଂସାର
ସଂସାରୁ ଈଶ୍ୱର ବାହାର ( ଜଗନ୍ନାଥ ଭାଗବତ) ।

୨୮୧୬. ଈଶ୍ୱର ତିନି ରୂପରେ ପ୍ରକାଶ ,ବ୍ରହ୍ମା,ବିଷ୍ଣୁ ,ଶିବ ତଥା ମହେଶ୍ୱର ।

୨୮୧୭. ଈଶ୍ୱରଙ୍କ ଦାସ, ତାର ସର୍ବନାଶ ।

ଯେଉଁ ମନୁଷ୍ୟ ନିଜର କର୍ମ ନକରି କେବଳ୍ ପୂଜାପାଠକରି ସମୟ ବିତାଏ ,ତାର ସର୍ବନାଶହୁଏ ।

୨୮୧୮. ଈଶ୍ୱରଙ୍କ ବିଧି ,ଫଳିବ ଗୋ ନିଧି ( ହେ ସୁଧୀ) ।

୨୮୧୯. *ଏକାର୍ଥରେ* -ବିଧିର ବିଧାନ କେ କରିବ ଆନ ।

୨୮୨୦. ଈଶ୍ୱର କରାନ୍ତି କାମ ,ମନୁଷ୍ୟ ହୁଏ ବଦନାମ ।

୨୮୨୧. ଈଶ୍ୱର ଆଲ୍ଲା ମହମ୍ମଦ ଯାର ନାମ ।
ସେ ହିନ୍ଦୁ ,ସେ ମୁସଲମାନ -ଖ୍ରୀଷ୍ଟିୟାନ ।( ଶ୍ରୀରାମକୃଷ୍ଣଙ୍କର ବାଣୀ)

୨୮୨୨. ଈଶ୍ୱର ଅଂଶ ଜୀବ ଅବିନାଶି
ଚେତନ ଅସଲ ସହଜ ସୁଖରାଶି ।

୨୮୨୩. ଈଶ୍ୱରେଚ୍ଛା ନିରଙ୍କୁଶା ।

ଈଶ୍ୱରଙ୍କ ଇଚ୍ଛା ସବୁ ଇଚ୍ଛା ଉପରେ । ତାର ବିରୋଧାଚରଣ କରାଯାଇ ପାରେ ନାହିଁ , ତାକୁ ମାନିବାକୁ ହେବ ।

୨୮୨୪. ଈଶ୍ୱର ଯାହା କରନ୍ତି ,ପ୍ରାଣୀର ମଙ୍ଗଳ ପାଇଁ ।

ଈଶ୍ବର ସଂସାରର ଭଲ ମନ୍ଦ ଯାହା କିଛିଘଟାନ୍ତି ,ତାହା ପ୍ରାଣୀଙ୍କ ମଙ୍ଗଳ ପାଇଁ । ଜଣେ ବୁଦ୍ଧିମାନ ପଣ୍ଡିତ ମନ୍ତ୍ରୀ ରାଜାଙ୍କୁ ବାରମ୍ବାର ଏକଥା ଶୁଣାନ୍ତି । ଦିନେ ରାଜା ଖିଅର ହେଲାବେଳେ ତାଙ୍କ ଗଳାର କିଛି ଅଂଶ କଟିଯାଇ ରକ୍ତ ବାହାରିଲା । ରାଜାଙ୍କର ଏପରି ଦୂରବସ୍ଥା ଦେଖି ମନ୍ତ୍ରୀଙ୍କ ମୁଖରୁ ସ୍ୱତଃ ବାହାରି ପଡ଼ିଲା- ' ଭଗବାନ ଯାହା କରନ୍ତି ତାହା ପ୍ରାଣୀର ମଙ୍ଗଳ ପାଇଁ ' । ଏଥିରେ ରାଜା ବିରକ୍ତ ହୋଇ ତତ୍କ୍ଷଣାତ୍ ମନ୍ତ୍ରୀଙ୍କୁ ବନ୍ଦୀ କଲେ । ତାପରେ ଦିନେ ରଜା ପାରିଧିକୁ ବିଜେ କଲେ । ସୈନ୍ୟ ସାମନ୍ତ ନେଇ ଶିକାର କରୁଥିବାବେଳେ ହଠାତ୍ ପ୍ରଚଣ୍ଡ ଝଡ଼ଆସିଲା । ସୈନ୍ୟ ସାମନ୍ତମାନେ କିଏ କୁଆଡ଼େ ପଳାଇଗଲେ । ବଣ ଜଙ୍ଗଲ ମଧ୍ୟରେ ଅନ୍ଧକାର ଘୋଟିଆସିଲା । ସେଇ ଅନ୍ଧକାରରେ ଦଳେ ବଣୁଆ ଲୋକ ରାଜାଙ୍କୁ ଧରିନେଲେ ,କାଳିଙ୍କ ପାଖରେ ବଳି ଦେବେ । କିନ୍ତୁ ଆଲୁଅରେ ଦେଖିବା ବେଳକୁ ଲୋକଟିର ଗଳା କଟିଯାଇଛି ଓ ଲୋକଟି ଖଣ୍ଡିଆ । ' ଖଣ୍ଡିଆ ବଳି ଅଯୋଗ୍ୟ' ବୋଲି ରାଜାଙ୍କୁ ଛାଡ଼ିଦେଲେ । ରାଜା ମନ୍ତ୍ରୀଙ୍କ କଥା ସତଫଳିବା ଦେଖି ତାଙ୍କୁ ମୁକ୍ତିଦେଲେ ଓ ବହୁ ପୁରସ୍କାର ଦେଲେ ।

୨୮୨୫. ଈଶ୍ୱର କଲେ ଦୂବ ଦାରୁ ହୁଏ ।

୨୮୨୬. ଈଶ୍ୱର ସବୁ ସହନ୍ତି ,ଗର୍ବ ସହନ୍ତି ନାହିଁ ।

୨୮୨୭. ଈର୍ଷାରେ ଉନ୍ମତ୍ତ ହୁଏ ଯେଉଁ ଜନ
ବୀରତ୍ୱ ବୁଦ୍ଧିମତା ଲଭେ ଶିଶୁତ୍ୱ
ହରାଇ କାଣ୍ଡଜ୍ଞାନ ।

୨୮୨୮. ଈଷାକୁ (= ଈର୍ଷାଯୁକ୍ତ )ବଚନ ଶୁଣି,ହସିଲେସାରଙ୍ଗପାଣି(=ଭଗବାନ)।

୨୮୨୯. ଈଷତ ( =ସାମାନ୍ୟ) ଆଞ୍ଚରେ ଡୁମ୍ବର ,ତ୍ରିଗୁଣ ଛିଣ୍ଡିଲା ମୋହର ।

## ଉ-ଊ-ଋ

୨୮୩୦. ଉଆଁସୀ କନିଆକୁ ସାହାଡ଼ା (ଅକ୍ଷୟଇସିଆ )ବର ।

ଯେଉଁ ଝିଅ ଉଆଁସରେ ଜନ୍ମହୁଏ, ସେ ବିଧବାହୁଏ ବୋଲି ଲୋକ ବିଶ୍ୱାସ ତଥା ଅନ୍ଧବିଶ୍ୱାସ ।

୨୮୩୧. ଉଆଁସୀ କନ୍ୟାକୁ ଜଗନ୍ନାଥ ବର ,
ତହିଁକି ଲାଗିଛି ମଲ୍ଲୀଫୁଲ ହାର ।

ଉଆଁସୀ କନ୍ୟାର ବର ଅଳ୍ପାୟୁ ହୁଏ । ମାତ୍ର ସ୍ୱୟଂ ମହାପ୍ରଭୁ ଜଗନ୍ନାଥ ବରହେଲେ ତାଙ୍କୁ ପାରିବାର ଶକ୍ତି କାହାର ? ତେଣୁ ବରର ସୌଭାଗ୍ୟଶକ୍ତି ଅର୍ଥାତ୍ ମଲ୍ଲୀଫୁଲ ହାର କନ୍ୟାର ମନ୍ଦ ଗ୍ରହକୁ ଦୂର କରିଥାଏ ।

୨୮୩୨. (କ) ଉଆଁସ କନିଆକୁ ଜଗନ୍ନାଥ ବର ,

ପାନର ଛାମୁଣ୍ଡିଆକୁ ମଲ୍ଲିଫୁଲ ବାଡ଼
ସେବତୀ ଫୁଲର ବାସନା ,
ବହଇ ଝର ଝର । - ହଳୁଆ ଢମାଳି ପଦ ।

୨୮୩୩. (ଖ) ଉଆଁସୀକନିଆକୁ ଜଗନ୍ନାଥ ବର
ପାନର ଛାମୁଣ୍ଡିଆକୁ ମଲ୍ଲୀଫୁଲ ଘର
ସେବତୀ ଫୁଲର ପାଖୁଡ଼ା,
ଦେହରେ ଜର ଜର । - ହଳୁଆ ଢମାଳି ପଦ ।

୨୮୩୪. ଉଆ ଉଗାଳୀ - ଫୁଲୁକା ଗାଲୀ ,ପୁଚୁକା ଗାଲୀ ।

୨୮୩୫. *ପ୍ରଶ୍ନ*- ଉଆ ଚାଉଳ ଖଣ୍ଡି ନଡ଼ିଆ
ମଇଁଷି ଦୁଧ ଖିରୀ
ସେଇପରି ଲାଗୁଛି କି
ତୋତେ ପର ସ୍ତ୍ରୀ ।
*ଉତ୍ତର* - ନନ୍ଦ ମୋତେ ଛନ୍ଦ କଲା
ଦୁଧ ହେଲା ପାଣି,
ଦୁଧ ଖିରୀରୁ ଟିକିଏ ଖାଇଲେ
ପେଟ ଦେଲା ଟାଣି ।

୨୮୩୬. ଉଆ ଚାଉଳ ,ପେଜ ଜାଉ
ରାନ୍ଧିବା ମାତ୍ରକେ ଓହ୍ଲାଉ ।

**୧୯୨୨ ମସିହାର ଅରଟଗୀତ**

୨୮୩୭. ଉଆଁସ ପୁନେଇ ଦିନରେ
ରଖ ସୂତା ସମ୍ପାଦି
ଉଚେଁ ମହାଲକ୍ଷ୍ମୀ ମଣ୍ଡିବେ
କରି ଆପଣା ଗାଦି ।
ଚରଖାର ଚକ ବୁଲିଲେ
ବଡ଼ ତୋଷ ତାଙ୍କର
ଚଳି ନପାରନ୍ତି ଚଞ୍ଚଳା
ଛନ୍ଦି ହୁଏ ପୟର ।

ଜାତି କୁଳ ମାନ ପାସୋରି
ଧର ଅରଟ ସୁଖେ
ଜନମ ସାର୍ଥକ ହୋଇବ
ଦେଖି ଲକ୍ଷ୍ମୀ ଶ୍ରୀମୁଖେ ।

୨୮୩୮. ଉଆ ଚାଉଳ ମୁଣ୍ଡି,
ସମସ୍ତେ ହେଲେ ଶୁକିଲା ଶୁକିଲି
ରାନ୍ଧୁଣୀ କରିଚି ଗଣ୍ଡି ।

ବୋହୂକୁ ଲକ୍ଷ୍ୟ କରି ଶାଶୁ କହୁଛି - ଖାଦ୍ୟାଭାବରୁ ସମସ୍ତେ ଶୁଖିଯାଉଥିଲେ ବି ବୋହୂ ରାନ୍ଧିଲା ଘରେ ଲୁଚାଇ ଲୁଚାଇ ଖାଇପିଇ ବେଶ ଗଣ୍ଡିବୋହିଛି ।

୨୮୩୯. ଉଆଁସରେ ଜହ୍ନ ପଡ଼ିବା । - ଅସମ୍ଭବ କଥା ଘଟିବା ଉପଲକ୍ଷରେ ।

୨୮୪୦. ଉଇ ଉଡ଼େ ଆକାଶେ , ପକ୍ଷୀ ଖାଦ୍ୟ ସକାଶେ ।

୨୮୪୧. ଉଇ ଗାଣ୍ଠିରେ ପଲକ ( =ଛୋଟ ଡ଼େଣା) ହେଲେ
ଆକାଶ ଛୁଇଁବାକୁ ଉଡ଼େ ,
ଜାଦୁଆର କଣ୍ଢ ହେଲେ ତ୍ରିଭୁବନ ଦେଖେ ।

୨୮୪୨. ଉଇ ହୁଙ୍କା ତୋଳା ରୀତି
ଅନୁସରି ନୀତି ଚଳିବ ଜୀବନେ,
ଉଠି,ପଡ଼ି,ବୁଡ଼ି,ତିନ୍ତି, । ( ବାଳକୃଷ୍ଣ -ଫୁଲ ବଉଳ ବେଣୀ)

୨୮୪୩. ଉଇ ରଙ୍ଗର ରଙ୍ଗୀ ବୋହୂ
ପାକଳ (ପାଚିଲା) ମଥାର କେଶ (ବାଳ)
ବୋହୂ ବଡ଼ ଭାଗ୍ୟବତୀ,
ଖାଏ ଭରା ନଇ ସନ୍ଦେଶ ।
( ହେଲା ନାହିଁ ତାର କାଳ ।)

୨୮୪୪. ଉଇଁ ତ ଆସୁଅଛି ପାହାନ୍ତିଆ ତରା
ଘଇତାକୁ ଚକୁଳି, ତାର ଦିଅରକୁ ବରା
ଖାଇ ନ ଜାଣିଲା ସାନ ଦିଅର, ଆଣ୍ଟଇ ଗୁଡ଼ ଚୁଡ଼ା ।

୨୮୪୫. ଉଇଁ ଆସୁଥିଲା ଜହ୍ନ,
ଭାଇଙ୍କର ଆଜି ଜନମ ଦିନ ,
ଖଟ ତଳେ ଗୁଆ ପାନ ।

୨୮୪୬. ଉଇଁ ଟାଇଁ ହେବା । ( ଉଇଁ ଟୁଇଁ ହେବା ।) - ଚୁପ ଚୁପ କଥାବାର୍ତ୍ତା ହେବା ।

୨୮୪୭. ଉଇଁ ଆସେ ମଲା ଜହ୍ନ
ତୋର ହସ୍ତେ ଦେଲି ମୋର ଜୀବନ
ଦିନେ ନ ପାଇଲି ମନ ।

୨୮୪୮. ଉଇଁ ଆସୁଥିଲା ଚାନ୍ଦରେ
ଗଉଡୁଣୀ ଟୋକି ହଗବର କରି
ପକାଇଲୁ ମୋତେ ଫାନ୍ଦରେ ।

୨୮୪୯. ଉଇ ପରି ମରି ।

ଉଇର ଡ଼େଣା ବାହାରିଲେ ସେ ଉଡ଼େ ଓ ମରେ । ସେହିପରି ମଣିଷ ବେଶି ବାହାଦୂରୀ ଦେଖାଇଲେ ତାର ପତନ ହୋଇଥାଏ ।

୨୮୫୦. ଉଇ,ମୂଷା ,କୁଢନ ,ଘର ଭାଙ୍ଗେ ତିନିଜଣ ।

୨୮୫୧. ଉଇ ,ଓ ଡ଼ଶ ,ପିମ୍ପୁଡ଼ି,ଘରୁ ଦିଅନ୍ତି ଘଉଡ଼ି ।

୨୮୫୨. ଉଇ,ଓଡ଼ଶ ,ପିମ୍ପୁଡ଼ି,ମୂଷା,
ଏହି ଚାରି ଜାତି ଭାଙ୍ଗଇ ବସା ।

ଏମାନଙ୍କ ଉପଦ୍ରବ ଅସହ୍ୟ, ଏପରିକି ଲୋକ ଘରଛାଡ଼ି ଚାଲିଯିବାକୁ ଇଚ୍ଛା କରିଥାଏ ।

୨୮୫୩. ଉଇ ,ଓଡ଼ଶ,ବଙ୍ଗାଳୀ ,ମୂଷା,
ମୁହଁଟାଣ ଗାଣ୍ଡି ଫସର ଫସା ।

୨୮୫୪. ଉଇଁ ଆସୁଅଛି ସ୍ୱରାଜ୍ୟ ତପନ
ଭାରତେ ଜାଗ୍ରତ ନରନାରୀ ଗଣ
ଘୁମାଇ ନରହ ଏ ସମୟେ ଆଉ
ଉଠ ଉଠ ବେଗେ ବେଳ ଥାଉଥାଉ । ( ଉତ୍କଳମଣୀଗୋପବନ୍ଧୁ )

୨୮୫୫. ଉଇ ହୁଙ୍କା ହୁଁଣି ଲସର ପସର ,ଧାଇଁଯାଉଥାଏ ଭାଲୁ,
ଝମର ଝମର ଝମକ ଝୁଣ୍ଟିଆ ,କେତେ ନବରଙ୍ଗେ ଚାଲୁ ।

୨୮୫୬. ଉଇଁଲାଣି ମେଘ ବରଷି ଦେବ,
ଲଢିଲାଣି ଯମ ଛାଡ଼ି ନ ଦେବ ।
ବରଷିଲା ମେଘ ଭାଙ୍ଗେ ଦେଉଳ,
ଲଢିଲାଣି ଯମ ଭାଙ୍ଗିବ ଖେଳ ।

୨୮୫୭. ଉକୁଟା ଉକୁଟି ହେବା ।

ପରସ୍ପର ଛଳ ବଚନ ଓ ପ୍ରତିବଚନ କୁହାକୁହି ହେବା । ପରସ୍ପର କଥାବାର୍ତ୍ତା ବା ପ୍ରଶ୍ନୋତ୍ତର କରିବା, ସବାଲ ଜବାବ କରିବା ।

୨୮୫୮. ଉକୁଣିକୁ (ହେଲେ) ନଖରେ ମାରିବା ।

୨୮୫୯. *ଏକାର୍ଥରେ* - ନଖରେ ନିକ(= ଉକୁଣୀ ଅଣ୍ଡା) ମାରିବା ।

ରାକ୍ଷସରାଜା ହିରଣ୍ୟ କଶିପୁ ଏପରି ବର ପାଇଥିଲାଯେ ସେ ଜଳ,ସ୍ଥଳ,ଆକାଶ ,ପାତାଳରେ ମନୁଷ୍ୟ ,ପଶୁ ଓ ପ୍ରାଣୀମାନଙ୍କ ଦ୍ୱରା ଏବଂ ଅସ୍ତ୍ର ବା ଶସ୍ତ୍ରରେ ତାର ମୃତ୍ୟୁ ହେବ ନାହିଁ । ଏଥିପାଇଁ ରାକ୍ଷସ ଅତ୍ୟନ୍ତ ଅହଂକାରୀ,କ୍ରୋଧୀ ଓ ଅତ୍ୟାଚାରୀ ହେଲା । ନିଜର ବାଳୁତ ପୁତ୍ର ହରିଭକ୍ତ ପ୍ରହ୍ଲାଦଙ୍କ ଉପରେ ଅକଥନୀୟ ଅତ୍ୟାଚାର କଲା । ଫଳରେ ସ୍ୱୟଂ ଭଗବାନ ନରସିଂହ ଅବତାର ଧାରଣ କରି ହିରଣ୍ୟ-କଶିପକୁ ନଖ( ଅସ୍ତ୍ର ବା ଶସ୍ତ୍ର ନୁହେଁ) ଦ୍ୱାରା ମାରିଥିଲେ । ଉକୁଣି ଓ ନିକ ଅତିନଗଣ୍ୟ ପ୍ରାଣୀ ହେଲେବି ଅତ୍ୟନ୍ତ ଉତ୍ପୀଡ଼କ । ଏମାନେ ନଖଛଡ଼ା ମରନ୍ତି ନାହିଁ । ପ୍ରବାଦରେ ଉକୁଣୀ ଓ ନିକକୁ ରାକ୍ଷସ ହିରଣ୍ୟ କଶିପୁ ସହିତ ତୁଳନା କରାଯାଇଛି ।

୨୮୬୦. ଉକୁଣି ଜ୍ୱାଳାରେ ମୁଣ୍ଡ ଲଣ୍ଡା ।

ନରସିଂହ ଅବତାର ଧାରଣ କରି ସ୍ୱୟଂ ଭଗବାନ ଅହଂକାରୀ ଓ ଅତ୍ୟାଚାରୀ ରାକ୍ଷସ ହିରଣ୍ୟ କଶିପୁକୁ ବଧକରି ତାର ପୁତ୍ର ଭକ୍ତପ୍ରହ୍ଲାଦକୁ ଉଦ୍ଧାର କରିଥିଲେ । ପିତାର ମୃତ୍ୟୁପାଇଁ ପୁତ୍ରପ୍ରହ୍ଲାଦ ଲଣ୍ଡା ହୋଇଥିଲେ । ପ୍ରବାଦରେ ହିରଣ୍ୟ କଶିପୁକୁ ଉକୁଣି ସହିତ ତୁଳନା କରାଯାଇଛି । ମୁଣ୍ଡରୁ ସମସ୍ତ ଉକୁଣିକୁ ନିପାତ କରିବାକୁ ହେଲେ ମୁଣ୍ଡ ଲଣ୍ଡାହେବାକୁ ପଡ଼େ ।

୨୮୬୧. ଉକର ଖୋଳିବା - ଗୋଇ ଖୋଳିବା ,ବଂଶ ଦୋଷ ଦେଖି ଗାଳିଦେବା ।

୨୮୬୨. ଉକୁଣି ମାରି
ସକୁନ ନ ମାରି ।

ଉକୁଣି ଅମଙ୍ଗଳ ସୂଚକ ହେତୁ ତାର ସମୂଳେ ବିନାଶ ଆବଶ୍ୟକ । ପିତୃ ପୁରୁଷଙ୍କ ମୃତ୍ୟୁରେ ଯେପରି ଲଣ୍ଡାହେବା ବିଧେୟ ଉକୁଣିର ବିନାଶ ପାଇଁ ମଧ୍ୟ ଲୋକେ ଲଣ୍ଡା ହୁଅନ୍ତି । ମାତ୍ର ମଙ୍ଗଳ ସୂଚକ ଲକ୍ଷଣକୁ କୌଣସି କାରଣରୁ ନଷ୍ଟ କରିବା ଉଚିତ୍ ନୁହେଁ ।

୨୮୬୩. ଉକୁଣି ସଞ୍ଚଇ ଧନ ।
ମୂଷା କରେ ଜଳପାନ ।

୨୮୬୪. ଉକୁଣି ସକାଶେ ବାଳ ପକାଇଲି
ସଉତୁଣୀ କହେ ଲାଣ୍ଡି;
ଛ' ମାସ ହେଲା ଆଇଁସ ଛାଡ଼ିଲି

ସଇଲା ଶୁଖୁଆ ହାଣ୍ଡି ।

୨୮୬୫. ଉତ୍କଳର କେତେ କନ୍ୟା ନାରଖାର
ନକରନ୍ତି ପେଟ ପୂରାଇ ଆହାର ;
ଲଜ୍ଜା ଢାଙ୍କିବାକୁ ନ ପା'ନ୍ତି ବସନ,
ଫୁଟେ ନାହିଁ କେବେ ଅଙ୍ଗେ ଯଉବନ ।( ଉତ୍କଳମଣି ଗୋପବନ୍ଧୁ)

୨୮୬୬. ଉତ୍କଳେ ଉତ୍କୃଷ୍ଟତା ନାହିଁ ପ୍ରୟୋଜନ ,
ଉତ୍କଳର ନେତା ନିଜେ ନାରାୟଣ । (ଉତ୍କଳମଣି ଗୋପବନ୍ଧୁ)

୨୮୬୭. ଉତ୍କଳ ତନୟେ ଦିଅ ନବ ବଳ,
ଉତ୍କଳ ପାଦପେ ଘେମୟ ଫଳ ।
ଉତ୍କଳ ସରିତେ ପବିତ୍ର ଜୀବନ,
ଉତ୍କଳ କାନନେ ସ୍ୱର୍ଗୀୟ ସୁମନ ।
ଉତ୍କଳ ଆକାଶେ ନବ ଯଶଃ ରବି
ଉତ୍କଳ ପ୍ରକୃତି ଧରୁ ନବ ଛବି ।( ଉତ୍କଳମଣି ଗୋପବନ୍ଧୁ)

୨୮୬୮. ଉତ୍କଳ ମାତାଙ୍କ ମୃତ୍ତିକା ବଳେ,
ଯତନ କରିଲେ ରତନ ଫଳେ । ( ଭିକାରୀ - ଗୀତ ଲହରି )

୨୮୬୯. ଉତ୍କଳ ସନ୍ତାନେ ,ମୁଦ୍ରିତ ନୟନେ,
ବସି ବସି ପେଷନ୍ତି ତମାଖୁ ଚୂର୍ଣ୍ଣେ ।( ଭିକାରୀ -ଗୀତ ଲହରି)

୨୮୭୦. ଉକୁଟା ଉକୁଟି ହେବା ।
ପରସ୍ପର ଛିଦ୍ର ଖୋଳାଖୋଳି ହୋଇ ପରସ୍ପରକୁ ଗାଳିଦେବା ।

୨୮୭୧. ଉକୁଣି ମୁଣ୍ଡେ କି ଖୋସା
ଓଲେଇ ତୁଣ୍ଡେ କି ଓଷା ?

୨୮୭୨. ଉକୁଣି ମୁଣ୍ଡିର ଖୋସା
ପଛ ଚୁଣା, ଚୁଆ ଚଷା
ଛାଇ ତଳିଆ ବେଉସା
ଇନ୍ଦୁଡ଼ି ପୁଅକୁ ଆଶା
ବଡ଼ ମନ୍ଦ ଏ ବେଉସା ।

୨୮୭୩. ଉଖଲା ହେବା । - ଲଜ୍ଜା ଜନକ କଥା ବା ଅଯଥା କଥା କହିବା ।

୨୮୭୪. ଉଖୁଡ଼ା ଖାଇଲା ବେଳକୁ ହଣ ହଣ ,
ବେଇଲା ବେଳକୁ ଏ କୋଣ ସେ କୋଣ ।

ବୋହୂ ବାପଘରୁ ଉଖୁଡ଼ା ,ଚୁଡ଼ା ,ଖଜା ପ୍ରଭୃତି ବେଲାର ଆସିଲା । ସମସ୍ତେ ଖାଇଲେ ମାତ୍ର ବୋହୂ ସନ୍ତାନ ଜନ୍ମ କଲାବେଳକୁ ଜାଗାନାହିଁ - ସମସ୍ତେ ସୁଖର ସାଥି ।

୨୮୭୫. ଉଘାଉ ( = ଭାଡ଼ି /ମଞ୍ଚା) ଉପରେ ଥାଳି ।
ଟେଙ୍ଗେଡ଼ା (= ରନ୍ଧାଘରେ ହାଣ୍ଡି ରହିବା ସ୍ଥାନ) ଉପରେ ଥାଳି
ମୋ ଭାଇ କାନକୁ ସୁନ୍ଦର ଦିଶେ, ଦକ୍ଷିଣ ରାଇଜ ନୋଳି ।

୨୮୭୬. ଉଘା ଉଘି ହେବା । - ପରସ୍ପରର ଛିଦ୍ର କହି ଗାଳି ଦଆଦେଇ ହେବା ।

୨୮୭୭. ଉଘାଡ଼ ଉପରେ ପଟା
ଭାଇନା ଦେହକୁ ସୁନ୍ଦର ଦିଶେ,
ବଡଦ ରାଇଜ ଫେଟା ( =ଚଉଡ଼ା ପିନ୍ଧା ଲୁଗା) ।

୨୮୭୮. ଉଘେଇଠୁ ଖାଇବ ନାହିଁ ।

୨୮୭୯. ଉଞ୍ଛି କୁଞ୍ଛି ପିନ୍ଧିବା । - ଲୁଗାକୁ ସଂଯତ କରି ସୁନ୍ଦର ରୂପେ ପିନ୍ଧିବା ।

୨୮୮୦. ଉଞ୍ଛିଲି ବାଉଁଶ ବାଡ଼ି
ବୁଢାକାଳେ ପୁଅ ବେଇଛି ବୁଢୀ,
ଶୁଣିଗଲା ଚିନ୍ତା ଛାଡ଼ି ।

୨୮୮୧. ଉଞ୍ଚୁ ଉଞ୍ଚୁ ପିଣ୍ଡାରେ ଲୋ ଦେଇଥିଲି ଝୁଟି,
କି ମାଡ଼ ମାଇଲ ସ୍ୱାମୀ ଫାଟିଗଲା ପିଠି ।
ତମ ଭାତ ତମ ଲୁଣ ନାହିଁ ଲୋଡ଼ା ମୋର ,
ଛାଡ଼ପତ୍ର ଖଣ୍ଡେ ଦେଲେ ଯିବି ବାପଘର ।
ବାପଘର ଯାଇ ନାରୀ କି ସୁଖ ପାଇବୁ ?
ଛତ୍ର ପଲଙ୍କରେ ଶୋଇ ମତେ ଝୁରୁଥିବୁ ।

୨୮୮୨. ଉଚ୍ଚ ଧରଣର ଭାବନା ହୃଦରେ,
ବିଶୁଦ୍ଧ ନିର୍ମଳ ବାସନା ମନରେ ।
ରଖିଯେବେ ଲୋକ କରୁଥିବ ଘର,
କୁଟୀର ନୁହେଁ ସେ ଅଟେ ସର୍ଗପୁର ।

୨୮୮୩. ଉଞ୍ଚା ଦୋକାନ ଫିକା ରନ୍ଧନ ।

୨୮୮୪. ଏକାର୍ଥରେ- ନାମ ବଡ଼ା ଦର୍ଶନ ଥୋଡ଼ା ।

ଯାହାର ନାମବଡ଼ ଅଥଚ ଗୁଣକମ୍ ।

୨୮୮୫. ଉଁଚା (=ଉଚ୍ଚ) ଉଡ଼ାନ । - ମହତ୍ ଆକାଂକ୍ଷାପୂର୍ଣ୍ଣ ବଡ଼ବଡ଼ କଳ୍ପନା ।

୨୮୮୬. ଉଁଚା (=ଉଚ୍ଚ) ନାକ ।- ମାତ୍ରାଧିକ ମାନମର୍ଯ୍ୟାଦା ପ୍ରତି ସଚେତନ ।

୨୮୮୭. ଉଞ୍ଚ କପାଳିଆ ।

ଉଚ୍ଚ କପାଳଯୁକ୍ତ ପୁରୁଷ ଭାଗ୍ୟବାନ ଓ ଉଞ୍ଚ କପାଳୀ ସ୍ତ୍ରୀ ଭାଗ୍ୟହୀନା ହୁଅନ୍ତି । ଏହା ଲୋକ ବିଶ୍ୱାସ ତଥା ଅନ୍ଧ ବିଶ୍ୱାସ ।

୨୮୮୮. ଉଞ୍ଚ ମୁଣ୍ଡିଆ । - ଆତ୍ମଗର୍ବୀ ।

୨୮୮୯. ଉଚ୍ଛିନ୍ଦ୍ୟୋଦ୍ ମନ୍ତ୍ର ଭେଦିନଃ ।

ମନ୍ତ୍ରକୁ ପ୍ରକାଶ କରିଦେଉଥିବା ବ୍ୟକ୍ତିମାନଙ୍କୁ ହତ୍ୟା କରିଦେବା ଉଚିତ । ଏଠାରେ ମନ୍ତ୍ରକୁ ଯଥାର୍ଥରେ ଅର୍ଥ କରାଯାଇଛି ଯେ - ଏହା କାର୍ଯ୍ୟ ସମ୍ବନ୍ଧି ହିତାହିତ ଚିନ୍ତା ରୂପି ମନ୍ତ୍ର,ଅର୍ଥାତ୍ ମନ୍ତ୍ରଣାର ବିଷୟ ବସ୍ତୁ । କାରଣ ଏହି ମନ୍ତ୍ରରୁ ହିଁ ବିଜୟଲାଭ ହୋଇଥାଏ । ତେଣୁ ନୀତି ଶାସ୍ତ୍ର ପ୍ରଣେତା'ବୃହସ୍ପତି' କୁହନ୍ତି 'ମନ୍ତ୍ର ମୂଳୋ ବିଜୟଃ' ଅର୍ଥାତ୍ ମନ୍ତ୍ରର ବିଜୟ ମିଳିଥାଏ ଏବଂ 'ମନ୍ତ୍ର ରକ୍ଷଣେ କାର୍ଯ୍ୟ ସିଦ୍ଧିର୍ଭବତ '। ଅର୍ଥାତ୍ ମନ୍ତ୍ରକୁ ଗୋପନ ରଖିଲେ କାର୍ଯ୍ୟସିଦ୍ଧି ହୋଇଥାଏ ।

୨୮୯୦. ଉଞ୍ଚୁକପାଳି ଖଡ଼ମଗୋଡ଼ୀ ଅସୁରୀ
ଗୋଡ଼େଇ ଖାଇଲା ଶଶୁରୀ
ଘଇତାକୁ ଖାଏ ଘୋଷାରି( ଅଲକ୍ଷଣୀ ସ୍ତ୍ରୀର ଲକ୍ଷଣ)

୨୮୯୧. ଉଞ୍ଚେଇଲା ବାଡ଼ି ପଡ଼ିଲେ ଭୟ,
ପିଠିରେ ପଡ଼ିଲେ ସବୁ ସହ ।

୨୮୯୨. ଉଚ୍ଚକୁଳ ଜାତ ରୂପ ଯୌବନ ଲାଳିତ୍ୟ
ଧନ ସୌଜନ୍ୟ ଉଦ୍ୟମ ଯେ ବିନୟବନ୍ତ ।

ଯାହାଠାରେ ଏହି ଦୁର୍ଲଭ ଗୁଣଗୁଡ଼ିକ ଉଭାସିତହୁଏ ସେ ସମସ୍ତଙ୍କୁ ଅଚିରେ ବଶୀଭୂତ କରିଥାଏ ।

୨୮୯୩. ଉଚ୍ଚକୁଳେ ଜନ୍ମି ଯେହୁ କରେ ନୀଚ କର୍ମ ,
ନିଜ ହାତେ ନାଶେ ସେହି ନିଜ ଜାତି ଧର୍ମ ।
ମହତ କରମ ଯେବେ କରେ ନୀଚ ଜାତି
ମନୁଷ୍ୟ ସମାଜେ ଲଭେ ଦେବତାର ଖ୍ୟାତି ।

୨୮୯୪. ଉଁଚା ଉଁଚା ପାବତ ତହିଁ ବସଇ ସବରୀ ବାଳୀ

ମୋରଙ୍ଗୀ ପୀଛ୍ଛ ପରିହିତା ସବରୀ ଗିବତ ଗୁଞ୍ଜରୀ ମାଳୀ ।

ଉଞ୍ଚ ପର୍ବତଉପରେ ଶବରୀର ବାସ ,ତାର ମୟୂର ପୁଚ୍ଛବେଶ ଓ କାଇଁଚମାଳୀ ଦେଖି ଶବର ଉନ୍ମତ୍ତ । (ଚର୍ଯ୍ୟାଗୀତି) ।

୨୮୯୫. ଉଚ୍ଚ ହେବା ପାଇଁ କର ଯେବେ ଆଶା
ଉଚ୍ଚକର ଆଗେ ନିଜ ମାତୃଭାଷା । - ଗଙ୍ଗାଧର ମେହେର ।

୨୮୯୬. ଉଚ୍ଚାଟରେ (=ସଙ୍କଟରେ) ପଡ଼ି ପ୍ରଣାମ,

୨୮୯୭. *ଏକାର୍ଥରେ* - ଉଚ୍ଚାଟରେ ପଡ଼ି ସଙ୍କଟରେ ପ୍ରଣାମ ।

୨୮୯୮. ଉଚ୍ଚ ପରବତ ଘୁଞ୍ଚି ଘୁଞ୍ଚିକା
ତହିଁରେ ବସିଛି ତିନି ମଞ୍ଜିକା (=ବେଶ୍ୟା) । - (ନନ୍ଦକିଶୋର ବଳ)

୨୮୯୯. ଉଞ୍ଚା ନଜର ,ତାଜ (=ମୁକୁଟ) ବା ପଗଡ଼ି ଭାରି
ଲୋକଙ୍କ କଥାକୁ ତୁଚ୍ଛାରି (=ହେୟଜ୍ଞାନକରିବା) ।

୨୯୦୦. ଉଞ୍ଚା ମିଜାସ ,ତାଜ(= ମସ୍ତକାବରଣ ) ଭାରି
ଲୋକଙ୍କ କଥା ତୁଚ୍ଛ କରି ।

୨୯୦୧. ଉଚ୍ଚ ହେବ ଯଦି ନୀଚ ହୁଅ ।

ନମ୍ରତା ପ୍ରକାଶପାଇଲେ ମନୁଷ୍ୟ ସଂସାରରେ ଉଚ୍ଚ ଆସନ ପ୍ରାପ୍ତହୁଏ । ଏ ସମ୍ପର୍କରେ ଗୋଟିଏ ସଂସ୍କୃତ ପ୍ରବଚନ '' ନମ୍ରନ୍ତି ଫଳିନଃ ବୃକ୍ଷାଃ , ନମ୍ରନ୍ତି ଗୁଣୀନଃ ଜନାଃ ।''

୨୯୦୨. ଉଞ୍ଚୁ କପାଳି ସିନ୍ଦୁର ଦେଖାଏ ।
ଖଡ଼ମ ଗୋଡ଼ୀ ଘଇତା ଖାଏ ।

୨୯୦୩. *ଏକାର୍ଥରେ* - ଉଞ୍ଚୁ କପାଳି ପାନିଆ ଦାନ୍ତି,
ଖଡ଼ମ ଗୋଡ଼ୀ ଅଧିକ ଭାଷି ।

୨୯୦୪. ଏଜନ- ଚିଲା ଆଖିଆ ବଇଦା ମା'
ଗୋଡ଼େଇ ଗୋଡ଼େଇ ଘଇତା ଖା ।

ସ୍ତ୍ରୀ ଲୋକମାନଙ୍କର ଏହା କୁଲକ୍ଷଣ ବୋଲି ଲୋକବିଶ୍ୱାସ । କିନ୍ତୁ ଏସବୁ ଅନ୍ଧବିଶ୍ୱାସ ।

୨୯୦୫. ଉଁଚା (=ଉଚ୍ଚ) ପହୁଞ୍ଚ(=ପହଞ୍ଚୁଥିବା) ।

ଯେଉଁଲୋକ ଉଚ୍ଚ ଅଧିକାରୀ ତଥା ପଦାଧିକାରୀ ବା ପ୍ରଭାବଶାଳୀଙ୍କ ସୁପାରିଶ ଯୋଗାଡ଼ କରିବାରେ ଧୂରନ୍ଧର ।

୨୯୦୬. ଉଚିତ କଥାରେ ଦେବତା ତୁଷ୍ଟ , ଉଚିତ କଥାରେ ମନୁଷ୍ୟ ରୁଷ୍ଟ ।

ଉଚିତ କଥା ଅର୍ଥାତ୍ ସତ୍ୟ ପ୍ରିୟ ବା ଅପ୍ରିୟ ହେଉ ଭଗବାନ ସନ୍ତୁଷ୍ଟ ହୁଅନ୍ତି । ମାତ୍ର ଅପ୍ରିୟ ସତ୍ୟ ମନୁଷ୍ୟକୁ କ୍ରୋଧାନ୍ୱିତ କରିଥାଏ ।

୨୯୦୭. ଉଞ୍ଚା ହେଲେ ଝଡ଼ ଦେବ ଉଡ଼ାଇ
ନୀଚା ହେଲେ ଛେଳି ଦେବ ଚୋବାଇ ।

ବିନୟୀ ହେବା ଉତ୍ତମ ଲୋକର ପରିଚାୟକ । ମାତ୍ର ଅତିରିକ୍ତ ବିନୟୀ କ୍ଷତିର କାରଣ ହୋଇଥାଏ । ସେହିପରି ଅତ୍ୟଧିକ ଆତ୍ମସମ୍ମାନ ବୋଧ ମଧ୍ୟ କାମ୍ୟ ନୁହେଁ ।

୨୯୦୮. ଉଚ ( ଉଞ୍ଚ ) ପିଣ୍ଡା ଦେଖି ବନ୍ଧୁ କଲ (କଲି) ,
ଝିଅକୁ (ଝିଅଟିକି) ନେଇ ଯମକୁ ଦେଲ(ଦେଲି) ।

ଝିଅର ସୁଖର ସଂସାର ପାଇଁ ତାକୁ ବଡ଼ଘରେ ବାହାଦେବା । ବଡ଼ଘରର ଦୋଷ ବି ବଡ଼, ତେଣୁ ବେଳେବେଳେ ଝିଅ ବହୁ ଦୁଃଖକଷ୍ଟ ଭୋଗ କରିଥାଏ । ଏହା ବାପ ମା' ଙ୍କର ଚିନ୍ତାର କାରଣ ହୁଏ ।

୨୯୦୯. ଉଞ୍ଚେଇ ଥିବୁ ମାରିବୁ ନାହିଁ ,
ଗୋଡ଼ାଇଥିବୁ ଧରିବୁ ନାହିଁ ।

ମାଡ଼ ଦେବା ଯେପରି ଭୟଙ୍କର ,ଧରିବା ମଧ୍ୟ ବିପଦ । ତେଣୁ ମାଡ଼ ନମାରି ଧମକ ଦେବା ଓ ନଧରି ଗୋଡ଼େଇବା ଶ୍ରେୟ ।

୨୯୧୦. ଉଞ୍ଚୁ କପାଳୀ ଅସୁରୀ ,ଧାଇଁ ଧାଇଁ ଖାଏ ଶଶୁରୀ (=ଶ୍ୱଶୁର) ।

ଯେଉଁ ସ୍ତ୍ରୀର କପାଳ ଉଚ୍ଚ ତା ଶ୍ୱଶୁରର ଅକାଳ ବିୟୋଗ ଘଟେ ବୋଲି ଲୋକ ବିଶ୍ୱାସ ବା ଅନ୍ଧ ବିଶ୍ୱାସ ।

୨୯୧୧. ଉଚ, ଘଞ୍ଚ ,କଠିନ ,ବର୍ତ୍ତୁଳ, କୁଚ ବେନି ।

୨୯୧୨. ଉଞ୍ଚରେ କରିବ ଖଣି
ଦଉଡ଼ି କରିବ ଛଣି
ଶାଗ ଖରଡ଼ାରେ ନଦେବ ପାଣି
ବିଭା ନୋହିବ କାଣୀ,
ହେଉପଛେ ରାଜରାଣୀ ।

୨୯୧୩. ଉଚ ଚାଳି ଦାଣ୍ଡେ ବସ,ନୀଚ ଚାଳି ଘରେ ପଶ ।

ଉଚ୍ଚକୁଳ ବ୍ୟକ୍ତି ସହିତ ବିବାଦକରିବା ଗୌରବର ବିଷୟ ନୁହେଁ । ନୀଚ ବ୍ୟକ୍ତି ସହିତ ବିବାଦ କଲେ ଲୋକେ ଘୃଣା ଚକ୍ଷୁରେ ଦେଖନ୍ତି । ତେଣୁ କାହାରି ସହିତ ବିବାଦ କରିବ ନାହିଁ ।

୨୯୧୪. ଉଚ୍ଚ ତାଳ ଗଛ ମାଈ ବରଡ଼ା ଲୋ।
ଠିକ ଠିକ ପଡ଼େ ଖରା,

ଅବୋଧ ନାରୀ କିବୋଧ ଦେବି ଲୋ
ମାଗୁଛି ସରଗ ତରା ।

୨୯୧୫. ଉଚ୍ଚ ତାଳଗଛ ଲମ୍ବ ବରଡ଼ାରେ ,
ବାୟା ଚଢେଇର ବସା
ଅଳପ ବାଳକୁ ଫୁଲାଣିଆ ଖୋସା
ଅଧେ ଘୋଡ଼ାବାଳ ମିଶା ।

୨୯୧୬. ଉଞ୍ଚ ପିନ୍ଧିଥିବ କୁଞ୍ଚ ପିନ୍ଧି ଥିବ
ପିନ୍ଧିଥିବ ଜଗମୋହନ
ବାନ୍ଧବୀର କଥା .ମନେ ପଡୁଥିବ
ବାଟ ଚାଲିଥିବ ଗହନ ।

ଯୌବନକୁ ଚାହିଁ ବେଶଭୂଷଣ ପିନ୍ଧିବା ପ୍ରିୟାର କଥା ଭାବୁଥିଲେ ବାଟଚଲା ବାଧା ଜଣାପଡ଼େ ନାହିଁ ।

୨୯୧୭. ଉଚିତ କଥା କହିଲେ ଗଲି ,
ତେଲରେ ବାଇଗଣ ଉଠିଲା ଜଳି ।

୨୯୧୮. ଉଚ୍ଚ ନିବାସ ,ନୀଚ ପ୍ରକୃତି
ନସହେ ସେ ଅପର ବିଭୂତି ।

ଉଚ୍ଚ ପଦବୀରେ ନୀଚ ପ୍ରକୃତିର ଲୋକ ରହିଲେ ସେମାନେ ଅନ୍ୟର ସମୃଦ୍ଧି ଦେଖିପାରନ୍ତି ନାହିଁ ।

୨୯୧୯. ଉଚିତ କହିଲେ ପଡ଼େ ଗାଳି,
ପୁଅ ଝିଅ ପ୍ରତି ହୁଏ ବେଚାଳି (=ଅସଦା ଚରଣ)
କାନ୍ଦଣା ଶୁଣିଲେ ବାହାରି ଯାଏ ,
ନାଚ ଗୀତରେ ମାତି (ମତି) ଥାଏ ।
ଏଇ ନାରୀକୁ ନେଇ କଲେ ବସା
ଜୀବନରେ ତାର କିଶ ବା ଆଶା ।
(ଜୀବନ ଥାଉଁ ଥାଉଁ ମରଣ ଦଶା ।)

× × × ×

ଭଲ ଖାଏ ,ଆୟ ନ ବୁଝେ
ବୋଲା ବୋଲିରେ ଉତ୍ତର ଯୁଝେ

ଭଲ କହିଲେ କାନ୍ଦେ ,
ତା ’ ସ୍ୱାମୀଟି ପଡ଼ିଲା ଫାନ୍ଦେ ।

୨୯୨୦. ଉଚି ପୁଚି ଖେଳ।

ଯୁବତୀମାନେ ପୁଚି ଖେଳ ସାଧାରଣତଃ ରଜ ସଂକ୍ରାନ୍ତିରେ ଖେଳନ୍ତି ।

୨୯୨୧. ଉଚ୍ଚ ଗଛର ତୋଫାନକୁ ଡ଼ର ।

ତୋଫାନରେ ଡ଼େଙ୍ଗା ଗଛସବୁ ଭାଙ୍ଗିଗଲା ପରି ସଙ୍କଟ ପଡ଼ିଲେ ଥିଲାବାଲା ଲୋକେ ଅଧିକ ବିପନ୍ନ ହୁଅନ୍ତି ।

୨୯୨୨. ଉଚି ପୁଚି ହେବା । -ଇତସ୍ତତଃ କହିବା ।

୨୯୨୩. ଉଚିତ କଥାରେ ବନ୍ଧୁ ବିଗିଡ଼େ
ଉଚିତ କହିଲେ ମାଡ଼ ବସେ ।

୨୯୨୪. ଉଚବାଚ କରିବା । - ଝଗଡ଼ା କରିବା ।

୨୯୨୫. ଉଚ୍ଛନ୍ନ କାକର୍ । - ଚିରଚାଞ୍ଚଲ୍ୟ ।

୨୯୨୬. ଉଞ୍ଛିଲି ବାଉଁଶ ବାଡ଼ି
ବୃଦ୍ଧକାଳେ ପୁତ୍ର ବେଇଛି ବୁଢୀ,- ମୋ ଉଦିଆଚାନ୍ଦ
ଶୁଣି ଗଲା ଚିନ୍ତା ଛାଡ଼ି ।

୨୯୨୭. ଉଚ୍ଚ ମୋ ନଡ଼ିଆର ପାତଳ ସଢାଇ
ଉଚ୍ଚ ବୃକ୍ଷେ ରାବ ଯେ ଦେଉଛି ବସନ୍ତଚଢାଇ (=ହଳଦୀ ବସନ୍ତ )।
ବସନ୍ତ ଚଢାଇର ପକ୍ଷୀଟି ହଳଦିଆ
ଏ ବାଟେ ଗଲେ, ରାମ ଯେ ଶ୍ରୀହରି
ରାମ ଯେ ଶ୍ରୀହରି ,ଅଳପ -ବୟସିଆ ।

୨୯୨୮. ଉଜାଣିଆ କଉ ।

ବର୍ଷାଦିନେ ପାଣିର ଆଧିକତା ପାଇଁ ଉଚ୍ଛୁଳି ଉଠିଲେ ପୋଖରୀ ପାଣିରେ ଅନ୍ୟାନ୍ୟ ମାଛ ସହିତ କଉମାଛ ମଧ୍ୟ ଉପରକୁ ଉଠେ । ଏପରି କଉଁମାଛକୁ ଉଜାଣିଆ କହନ୍ତି ।

୨୯୨୯. ଉଜଳ ମାଧିଆ /ଉଜଳ ମଧୁଆ /ଉଜଳ ମାଧୋଇ ।

ଏକ ପ୍ରକାର ଧଳା ମୋଟାଧାନ ।

୨୯୩୦. ଉଜଳ ଘର / ଉଜଳ ହର । - ଧୋବାଘର ।

୨୯୩୧. ଉଜୁଡ଼ା ମୁହଁ ।- ଅପଯଶିଆ ବା ହତଲକ୍ଷ୍ମୀ ।

୨୯୩୨. ଉଜୁଡ଼ା ଘର ବସେଇବା ।

ନିଃସନ୍ତାନର ସନ୍ତାନ ହେବା । ପତି,ପତ୍ନୀମଧରେ କଳହର ସମାଧାନ ହେବା, ପୂନର୍ବିବାହ କରି ସଂସାର କରିବା ।

୨୯୩୩. ଉତ୍ତର ଦୁଆରୀ ହୁଅନ୍ତି ରୋଗୀ
ଦକ୍ଷିଣ ଦୁଆରୀ ଜାଣିବ ଭୋଗୀ
ପୁରୁବ ଦୁଆରୀ ମିଳିବ ଇଷ୍ଟ
ପଶ୍ଚିମ ଦୁଆରୀ ପାଅଇ କଷ୍ଟ ।

ଘରର ଦ୍ୱାର ଉତ୍ତର ଦିଗକୁ ରଖିଲେ ଗୃହସ୍ଥ ରୋଗୀ ହୁଏ । ଦକ୍ଷିଣ ଦିଗକୁ ଦ୍ୱାର ରଖିଲେ ଗୃହସ୍ଥ ଉତ୍ତମ ଭୋଗ ଲାଭକରେ । ପୂର୍ବଦିଗକୁ ଯେ ଦ୍ୱାର ରଖେ ତାର ଇଷ୍ଟ ସିଦ୍ଧହୁଏ । ପଶ୍ଚିମ ଦ୍ୱାର ରଖିଲେ ନାନା ଦୁଃଖ କଷ୍ଟ ଭୋଗ କରିବାକୁ ହୁଏ ।

୨୯୩୪. ଉତ୍ତର ପୂର୍ବ ମଧରେ ଅଛଇ ଇଶାନ
ପୂର୍ବ ଦକ୍ଷିଣ ମଧରେ ଅଛି ଅଗ୍ନିକୋଣ,
ଦକ୍ଷିଣ ପଶ୍ଚିମ ମଧେ ନଇରତ ଅଛି ,
ପଶ୍ଚିମ ଉତ୍ତର ମଧେ ବାୟୁକୋଣ ଅଛି । -ଦିଗ ନିର୍ଣ୍ଣୟ କରାଯାଇଛି ।

୨୯୩୫. ଉତ୍ତମ ଜଳେ ପାଦଧୋଇ,ଅଧର,ନେତ୍ର,ଶିରେ ଦେଇ ।

ପ୍ରାର୍ଥନା ବା ଧାନକରିବା ପୂର୍ବରୁ ଏହିପରି ଆଚରଣ କରିବା ଉଚିତ ।

୨୯୩୬. ଉତୁ ରୁ ପୁତୁରୁ କରିବା । - ନାନା ପ୍ରକାର ହଇରାଣ କରି ଅଥୟ କରିବା ।

୨୯୩୭. *ଏକାର୍ଥରେ* - ଉତୁର୍ ପୁତୁର୍ କରିବା

୨୯୩୮. -ଏଢନ- ଉତୁର୍ ମୁତୁର୍ କରିବା ।

୨୯୩୯. ଉତ୍ତର ମଣିଷ ପେଟରେ ବୁଦ୍ଧି, ଦକ୍ଷିଣା ମଣିଷ ସାଧା ।
ପୂର୍ବର ମଣିଷ ଛନ୍ଦ ସୌଦାଗର ,ପଶ୍ଚିମା ମଣିଷ ଗଧା ।

ଭାରତର ବିଭିନ୍ନ ଦିଗରେ ଅବସ୍ଥାନ କରୁଥିବା ଲୋକଙ୍କ ଲକ୍ଷଣ ।

୨୯୪୦. ଉତ୍ତିଷ୍ଠିତ ,ଜାଗ୍ରତ ,ପ୍ରାପ୍ୟ ବରାନ୍ ନିର୍ବୋଧତା ।

ଉଠ ,ଜାଗ, ଯେତେପର୍ଯ୍ୟନ୍ତ ଲକ୍ଷ୍ୟସ୍ଥଳରେ ନ ପହଞ୍ଚିଛ ସେ ପର୍ଯ୍ୟନ୍ତ ନିଶ୍ଚିନ୍ତହୋଇ ରୁହନାହିଁ ।

( ସ୍ୱାମୀ ବିବେକାନନ୍ଦଙ୍କର ଉପନିଷଦର ବାଣୀ )

୨୯୪୧. ଉତ୍ତର ବାଆ ବଡ଼ ମନ୍ଦ
କେହି ନ ଜାଣନ୍ତି ତା' ଛନ୍ଦ ।

୨୯୪୨. ଉଭା (= ଉଚ୍ଚତା ) ନାହିଁ ,ଫେରା ( =ବେଢ଼) ଅଛି ।

୨୯୪୩. ଉତ୍ତରେ କଳା (=ହାଣ୍ଡିଶାଳ) ,ପୂର୍ବେ ନଳା (=ନାଳୁଆ),
ଦକ୍ଷିଣେ ଢଳା (=ଝରକା),ପଶ୍ଚିମେ ଖଳା (=ଖଳାବାଡ଼ି)।

୨୯୪୪. ଉତ୍ତମ ମଧ୍ୟମ ଦେବା । - ଭଲକରି ମାଡ଼ ଦେବା/ପ୍ରହାର କରିବା ।

୨୯୪୫. ଉତ୍ତମ ମଧ୍ୟମ ଶୁଣାଇବା । - ଗାଳି ଗୁଲଜ କରିବା ।

୨୯୪୬. ଉତ୍ତମ ମେ ଉତ୍ତମ ।
ଅଧମ ମେ ଅଧମ ।

ଯେଉଁ ଲୋକ ଯେପରି ତାକୁ ସେହିପରି ସାଥୀ ବି ମିଳିଥାଏ ।

୨୯୪୭. ଉତ୍ତମ ଚାଷକର୍ମ,ବେଉସା ମଧ୍ୟମ,
ନିକୃଷ୍ଟ ଚାକିରୀ,ଭିକ୍ଷା ସବୁଠୁଁ ହୀନ ।

୨୯୪୮. ଉତ୍ତମ ବିଦ୍ୟାଯେ ଗ୍ରହଣ କର ,
ନୀଚ ବୋଲି ବିବେଚନା ନକର ।

ନୀଚବ୍ୟକ୍ତି ପାଖରେ ଯଦି କୌଣସି ଜ୍ଞାନ ଅଛି ତାକୁ ଗ୍ରହଣ କରିବା ଉଚିତ୍ ଅର୍ଥାତ୍ ନୀଚକୁ ହେୟ ନମଣ ।

୨୯୪୯. ଉତ୍ତମ କର୍ମକୁ ଉତ୍ତମ ଫଳ ।

୨୯୫୦. ଉତ୍ତମ ଉତ୍ତମ ସହି ,ଅଧମ ଅଧମ ।
କେଉଁ ମିଳନ ହୁଏ ,ଅଧମ ଉତ୍ତମ ?

୨୯୫୧. ଉତ୍ତର ବାରି(= ବଗିଚା) ଦକ୍ଷିଣ ଦୁଆରି ଘର ।

ଗୃହ ନିର୍ମାଣର ନିୟମାନୁସାରେ ଘରର ଉତ୍ତରକୁ ବାରି ,ବଗିଚା ଓ ଦକ୍ଷିଣ ପଟେ ଘରର ଦ୍ୱାର ଓ ଖୋଲା ମଇଦାନ ତଥା ପଡ଼ିଆ ରଖିବା ଉଚିତ ।

୨୯୫୨. ଉତ୍ତରେ ଯାଏ କହେ ଦକ୍ଷିଣ ,
ଏହା ତା କର୍ମ ଲକ୍ଷଣ ।

ଯେଉଁ ଲୋକ ଉତ୍ତରକୁ ଯାଏ ଅଥଚ ଦକ୍ଷିଣକୁ ଯାଉଛି ବୋଲି କହେ । ଏହା ମିଛୁଆଙ୍କର ଲକ୍ଷଣ । ସେମାନଙ୍କୁ କେବେହେଲେ ବିଶ୍ୱାସ କରିବ ନାହିଁ ।

**୨୯୫୩.** ଉତୁ ତୁଲି ପୁତତୁଲି କାଠର ପୁତୁଲି,
ଲୁହାକେ ଦମ୍ ,ସରଗର କୋଇଲି ପାଟଣା ରଙ୍ଗ
ରଙ୍ଗେ ରଙ୍ଗେ ମାତିଲି ,ଛଅ କୋର ମୁଣ୍ଡ କାଟିଲି ।( ତୁତୁଖେଳ ପଦ)

୨୯୫୪. ଉତୁରିଲା ଦୁଧ ଚୁଲିରେ ପଶେ ।

୨୯୫୫. ଉତୁରିଲା ଝିଅ ,ମଙ୍ଗୁଳିଆ କନ୍ୟା,ଅଦିନିଆ ବନ୍ୟା,

କେତେ ମାନ୍ୟା, କେତେ ଧନ୍ୟା ।

୨୯୫୬. ଉତୁରିଲା ଭାତ ପେଛ ସର ସର ।

୨୯୫୭. ଉଦ୍ ପାତିଆ ଭେଣିଆ ଟୁରା କେତେ ଲବାର ହେସି ,
ମହୁଲ ବେଟି ଯିମାବଲି କେତେ କଥା କହେସି ।
ହେନ୍ତା କଥା ନାଇଁ କହେବୁ କରି ଦେଉଁଛେଁ ମନା,
ବଲାଙ୍ଗିରିଏ ଜାନିପାଏଲେ ଧରି ନେଇ ଯିବେ ଥାନା ।

୨୯୫୮. ଉତ୍ଥାନ ଏକାଦ୍ଦଶୀ ବ୍ରତ
ସେଦିନ ହୋଇଛି ଯୁଗତ ।

ଉତ୍ଥାନ ଏକାଦ୍ଦଶୀ ବ୍ରତ କାର୍ତ୍ତିକ ଶୁକ୍ଳ ଏକାଦ୍ଦଶୀ ଦିନ ପାଳନ କରାଯାଏ । ଏହିଦିନ ଶ୍ରୀବିଷ୍ଣୁ ନିଦ୍ରାତ୍ୟାଗ କରନ୍ତି । ଏହି ଦିନଠାରୁ କାର୍ତ୍ତିକ ମାସର ଭୀଷ୍ମପଞ୍ଚକ/ବକପଞ୍ଚକ ଆରମ୍ଭ ହୁଏ । ଏଇଠି ଚତୁର୍ମାସ୍ୟା ବ୍ରତ ସମାପ୍ତ ହୁଏ । ବ୍ରତ ସମ୍ପର୍କରେ ଓଡ଼ିଆ ପ୍ରବାଦ ।

୨୯୫୯. ଉତ୍ଥାପନ ଚତୁର୍ଦ୍ଦଶୀ

କାର୍ତ୍ତିକ ଶୁକ୍ଳ ଚତୁର୍ଦ୍ଦଶୀ,ସେଦିନ ମହାଦେବଙ୍କର ନିଦ୍ରାଭଙ୍ଗ କରାଯାଏ । ଭୁବନେଶ୍ୱର ଲିଙ୍ଗରାଜଙ୍କର ଏକ ଯାତ୍ରା ।

୨୯୬୦. ଉତରି ଗଲା ଲୋଇ (=ଇଜ୍ଜତ), କିଶ କରିବ କେହି ।

ଯେବେ ଇଜ୍ଜତ ନ ରହିଲା ତେବେ ଡ଼ର କାହାକୁ ।

୨୯୬୧. ଉତାଲା ଯେ ,ବାଉଳା ସେ ।
ଧିର ଯେ , ଗମ୍ଭୀର ସେ ।

୨୯୬୨. ଉଦାରି (=ଉଦାସୀନ) ଗୌରୀ ପାନ ଖାଏ ।
ଚୋର ଆସିଲେ ନିଦ ଯାଏ ।

୨୯୬୩. ଉଦୟ ବେଳେ ଅସ୍ତ ନାହିଁ କି ଅସ୍ତବେଳେ ଉଦୟ ନାହିଁ ।

ସମୃଦ୍ଧି ବେଳେ ପତନ ଓ ପତନ ବେଳେ ସମୃଦ୍ଧି ସମ୍ଭବ ନୁହେଁ ,ସୂର୍ଯ୍ୟ ଉଇଁଲାବେଳେ ଅସ୍ତହୁଅନ୍ତି ନାହିଁ କି ଅସ୍ତବେଳେ ଉଦୟ ହୁଅନ୍ତି ନାହିଁ ।

୨୯୬୪. ଉଦ୍ୟମ-କରିବ ନାନା ମତେ ,ଫଳ ଫଳିବ କର୍ମର ଆୟତେ ।(ବଚନ)

୨୯୬୫. ଉଦ୍‌ଯୋଗ ବଳେ ସର୍ବସିଦ୍ଧି, ଜାଣିବ ଏହୁ ମହାବିଧି । -(ବଚନ)

୨୯୬୬. ଉଦୁ ଉଦୁମା ବସେଇ ଦେବି
ହାତ ଗୋଡ଼ ପଙ୍ଗା ଖସେଇ ଦେବି ।

ଡୁଡୁଖେଳ/ ବାଗୁଡ଼ି ଖେଳର ରାହାଧରା ବଚନିକା ।

୨୯୬୭. ଉଦିଆ ଖାଇ ।

ଯେଉଁ ସ୍ତ୍ରୀ ନିଜର ଯୌବନ ଓ ସୌନ୍ଦର୍ଯ୍ୟର ଗର୍ବ ପ୍ରକାଶ କରେ ତା ପ୍ରତି ଛିଗୁଲେଇବା ।

୨୯୬୮. ଉଦେ ଉଦେ ସ୍ନାନ ମୁରୁଣି
ମା'ର କୋଳେ ବସେରେ,
ମା'ର କୋଳେ ବସେ ।
ହଳଦୀ ଚାଉଳ ଟିକା ଦେଲେ ,ଫୁଲରେ !
ମା' ଭଉଣୀ ପରା ଦିଶେ
ମା' ଭଉଣୀ ପରା ଦିଶେ ।

ଦଣ୍ଡାରୀମାନେ ନିଜ ଗ୍ରାମରୁ ଅନ୍ୟ ଗ୍ରାମକୁ ନାଚିବାକୁ ଯିବା ପୂର୍ବରୁ ସେହି ଗ୍ରାମର ବୃଦ୍ଧା ସ୍ତ୍ରୀମାନେ ମୁଣ୍ଡରେ ହଳଦିଆ ଚାଉଳ ଟିକାଦେଇ ପାଦରେ ହଳଦୀ ପାଣି ପକାନ୍ତି । ସେହି ସମୟରେ ଦଣ୍ଡାରୀନାଚୁଆମାନେ ମୁଣ୍ଡଳାକାରରେ ଛିଡ଼ାହୋଇ ଏହି ପଦ ମାନ ବୋଲନ୍ତି ।

୨୯୬୯. ଉଦାରୀ ଉଦାସୀନ ପାଖରେ ଚତୁରୀ (=ଜାଣି ସିଆଣିଆ) ଥାଏ ,
ପୁନିଅଁ କେଉଁଦିନ ପଚାରୁଥାଏ ।

୨୯୭୦. ଉଦ୍ଧାଳକ ଋଷିକୁ ଅଲକ୍ଷ୍ମୀ କନିଆଁ ।

ଯାଜ୍ଞବଲ୍କକଙ୍କ ଗୁରୁ ଉଦ୍ଧାଳକ ଋଷି ତାଙ୍କ ପତ୍ନୀ ଅଲକ୍ଷ୍ମୀ- ଲକ୍ଷ୍ମୀଙ୍କ ବଡ଼ ଭଉଣୀ । ଋଷି ଭାରି ଶାନ୍ତଶିଷ୍ଟ କିନ୍ତୁ ତାଙ୍କରପତ୍ନୀ ପତିଙ୍କ ଆଜ୍ଞା ନମାନି ଅଶ୍ୱତ୍ଥଗଛ ମୂଳରେ ରହନ୍ତି । ଜୁଆ ଆଡ଼୍‌ଡ଼ା ଓ ଆମିଷ ବିକ୍ରି ସ୍ଥାନମାନଙ୍କରେ ବିଚରଣ କରନ୍ତି । ଅତିଦୁଷ୍ଟା ପ୍ରତି ପ୍ରଯୁକ୍ତ ।

୨୯୭୧. ଉଦ୍ଧାଳକ ଋଷିଙ୍କ ଘରକୁ ଅଲକ୍ଷଣୀ ,
ଶିବଙ୍କ ଛାତି ଉପରେ କାଳୀ ଠାକୁରାଣୀ ।

ଉଦ୍ଧାଳକ ଋଷିଙ୍କ ପତ୍ନୀ ଅଲକ୍ଷ୍ମୀ ,ଶିବ କାଳୀଙ୍କୁ ସ୍ତ୍ରୀ ରୂପେ ଗ୍ରହଣ କରିଥିଲେ । ଏହା ପୁରାଣ ପ୍ରସିଦ୍ଧ । ପୁରୁଷ ଶକ୍ତିଶାଳୀ ହେଲେ ଯେ କୌଣସି ଉଦ୍ଧତା ନାରୀକୁ ସ୍ତ୍ରୀ ଭାବେ ଚଳାଇ ନେଇପାରେ ।

୨୯୭୨. ଉଦି ଗାଆଁରେ କୁଜି ,ଶିଳ ପୁଆ ପୂଜି ।

ଯେଉଁ ଗାଁରେ ଜ୍ଞାନୀ ,ପଣ୍ଡିତ ଲୋକେ ନାହାନ୍ତି ସେଠି ଅତି ସାମାନ୍ୟ ବ୍ୟକ୍ତି ସମ୍ମାନିତ ହୋଇଥାଏ । ଯେପରି ସାଧାରଣ ଶିଳା ଦେବତା ରୂପେ ପୂଜିତ ହୋଇଥାଏ ।

୨୯୭୩. ଉଦରୀ,ବାଦୁଡ଼ି ,ଯକ୍ଷ୍ମା ,ଏ ତିନଠୁଁ ନାହିଁ ରକ୍ଷା ।

ଜଳୋଦରୀ ରୋଗ,ମୁହଁଦ୍ୱାର ଦେଇ ମଳତ୍ୟାଗ କରୁଥିବା ବାଦୁଡ଼ି ଏକ ଶୋଚ୍ଚ ପ୍ରାଣୀ ଏବଂ

କ୍ଷୟ ରୋଗ ତଥା ଯକ୍ଷ୍ମା ବଡ଼ ବିଷମ ,ଏମାନଙ୍କଠାରୁ ରକ୍ଷା ନାହିଁ ।

୨୯୭୪. ଉଦ୍ୟାନେ ଅଙ୍ଗନେ ଭବନେ ସୌରଭ,
ଯେଉଁ ଦିଗେ ଯାଅ ସେ ଦିଗେ ସୌରଭ,
ହସ୍ତ ପଦେ ମୁଖେ ସର୍ବତ୍ର ସୌରଭ,
ସୌରଭେ ସୌରଭେ ଆମୋଦ ଧାରା ।

ଋତୁରାଜ ବସନ୍ତର ସୌରଭ ମୁଖର ଫଲଗୁଧାରା ।

୨୯୭୫. ଉଦର ଥିଲେ ଅନ୍ନପୂର୍ଣ୍ଣ
ବିକଶଇ ଚତୁର୍ଦ୍ଦଶ ସୁଗୁଣ ।

ପେଟ ପୁରୁଥିଲେ ମନୁଷ୍ୟର ୧୪ ପ୍ରକାର ସୁଗୁଣ ବିକଶିତ ହୁଏ ଯଥା- (୧) ଲଜ୍ଜା(୨) ସ୍ନେହ(୩) ଭାଷାର ମଧୁରତା(୪) ବୁଦ୍ଧି(୫) ବଳ(୬) ସ୍ତ୍ରୀ ସଙ୍ଗ(୭) ନିଜର ପ୍ରିୟ(୮) ଦୁଃଖର ହାନି (୯) ବିଳାସ (୧୦)ଧର୍ମ(୧୧)ସ୍ୱାସ୍ଥ୍ୟ (୧୨)ବୃହସ୍ପତିଙ୍କ ସଦୃଶ ଜ୍ଞାନ(୧୩) ପବିତ୍ରତା(୧୪) ଆଚାର ବିଚାର ।

## ଶିଶୁ ମନୋରଞ୍ଜନ ପଦ

୨୯୭୬. ଉଦୁ ଉଦୁମା ତାଳ ଗୋଟମା
ନୂଆ ପାହୁରାଣୀ ପିତଳ ସମା,
ହରଚଣ୍ଡୀଙ୍କର ଭାଇ ମଲା
ରକତ ପିଣ୍ଡୋଳେ ଭାସିଗଲା ,
ଆମ୍ଭଟିଏ ଖାଉଁ ଖାଉଁ
କୋଇଲିଟିଏ କଷା
କି ମାଡ଼ ମାଇଲୁ ଭାଇ
ଚାରି କୁଣିଆ ବସା ।

୨୯୭୭. ଉଲୁ ଉଲୁ ଡ଼ିମ୍ବିରି ଫୁଲ
ବର ଆସିଲା କେତେ ଦୂର?
ବର ଆସିଲା ବାହ୍ମଣ ପଡ଼ା
ବଡ଼ ବୋଉ ଗୋ ହାଣ୍ଡି ଚଢା ।
ସାନ ବୋଉ ହେ ' ଗାଡ଼ିଆ ଯାଅ

ଗାଡ଼ିଆ ଭିତରେ ଢୋକ ଢୋକା,
ଫୁଲ ଫୁଟିଛି ଚକା ଚକା ।
ଫୁଲର ବରଣ କଢ଼ି,
ନଟିଶାଗର ବଡ଼ି ।

୨୯୭୮. ଉଦାର ଧରମ (=ଧର୍ମ) ବୋଲି କହେ ତୁମ ପୁରାଣ,
ଅଛୁଆଁ କରି ରଖିବୁ ସାତ କୋଟି ପରାଣ । ( ବାଞ୍ଛାନିଧି ମହାନ୍ତି )

୨୯୭୯. ଉର୍ଦ୍ଧ୍ୱଦନ୍ତ ଓ ବାହାଡ଼ା ରକ୍ତନେତ୍ରୀ
ରୋମ ବହୁଳ ରଙ୍ଗକେଶ ଛୋଟ ଶ୍ରୋତ୍ରୀ(=ଛୋଟକାନ)
ଉଚ୍ଚତଣ୍ଡି ଜଙ୍ଘଲଗ୍ନା କାମାର୍ତ୍ତୀ
ଏ ସମ୍ବନ୍ଧରେ ଆସେ ବିପତ୍ତି ।

ଏହି ଲକ୍ଷଣ ଯୁକ୍ତା ନାରୀ ସହିତ ବୈବାହିକ ସମ୍ବନ୍ଧ କଲେ ବିପଦ ପଡ଼ିଥାଏ ।

୨୯୮୦. ଉଦଣ୍ଡ (ସାଆନ୍ତଙ୍କ ) ଘର ଝିଅ
ହଲେଇ ହୁଅନ୍ତି ନାକ ଫୁଲ ଗୁଣା
ଦେଖେଇ ଦିଅନ୍ତି ଦିହ ।

୨୯୮୧. ଉଦିଲାରେ ଧନ ଦଶରା ଜନ
ଘରେ ଖାଇ ପରେ ମନ
ତମେ ଲଗାଉଛ ମାୟା ପୀରତି
ହେଡିଲେ ନଯିବ ଦିନ
ଗୋଟାକେ କୁଲାକେ ଗୋଟିଏ ଯିବି
କାଇ ମତେ ମୁରୁଛିବି ।

୨୯୮୨. ଉଦିଲାରେ ମୋର ଦିଆଲି ଜହ୍ନ
ଘରେ ଖାଇ ପରେ ମନ
ତୁମର ଆମର ପୀରତି କଲେ
ସଂଶୟ ଲାଗୁଛି ମନ
ବାଟରେ ଦେଖିଲି ଏକଟା ଡ଼ମ
ତମର ଚାରି ଧରମ ।

୨୯୮୩. ଉଦୟ ମୁଖ ଚନ୍ଦ୍ରମା
ଉଇଁ ଥିଲୁ ଗୋପମଣ୍ଡଳ ସୀମାରେ,

ଉଆଁସ ହେଲା ପୂର୍ଣ୍ଣିମା ।

୨୯୮୪. ଉଦର ନିମିତ୍ତଂ ବହୁକୃତ ବେଶ-ଭୂଷା ।

ପେଟପାଇଁ ଲୋକେ ବହୁ କିସମର ସୁଆଙ୍ଗ ରଚନା କରିଥାଆନ୍ତି । ଯେପରି ବୋହୂରୂପୀମାନେ ଭିନ୍ନ ଭିନ୍ନ ବେଶ ଧାରଣକରି ଦ୍ୱାର ଦ୍ୱାର ବୁଲି ଭିକ୍ଷାକରନ୍ତି ।

୨୯୮୫. ଉଦ୍ (=ଜଳ) ବୋଇଲେ ଖୁଦ୍ (=ଗଙ୍ଗା ଚାଉଳ) ନାହିଁ,
ନେଉଳ ବଜାଏ ଶିଙ୍ଗା(= ମଇଁଷି ଶିଂଘରେ ନିର୍ମିତ ବାଦ୍ୟ) ।

ଘରେ କିଛି ନାହିଁ ବାହାରେ ଫୁଟାଣି ।

୨୯୮୬. ଉଧାରୁଆ ଜୀବନ ।-ଅନ୍ୟର ଇଚ୍ଛା ଉପରେ ନିର୍ଭର କରି ବଞ୍ଚିବା ।

୨୯୮୭. ଉଧାରିଖାନା ,ନିଆଁ ପୁହାଁ ବରାବର ।

ଉଧାର ,କରଜ କରି ଅଧିକ ଦିନ ଚଳିବା ସମ୍ଭବପର ନୁହେଁ ।

୨୯୮୮. ଉଧାର ଦିଅ ,ଦୁସମନ (=ଶତ୍ରୁ )ହୁଅ ।

୨୯୮୯. *ଏକାର୍ଥରେ* - ଉଧାର ଦେବା ,କଳି ଡ଼ାକିବା ।

ଉଧାର ଦେଲେ ସେ ଫେରାଇବା ତ ଦୂରର କଥା ,ଓଲଟା ତା' ସହିତ କଳି ତକରାଳ ହୁଏ ।

୨୯୯୦. ଉଧାର ମାଗିଲି ଚାଉଳ ସେରେ
ପହରେ କହିଲା ବସ
ଢାଳ ସରିଗଲା ଜଳ ମରିଗଲା
ତେବେ ନପୂରିଲା ଆଶ (=ଆଶା) ।

ପରଘରୁ ଉଧାର ଆଣିବା ଖୁବ୍ ଅପମାନ ଜନକ । ବୁଝିବା ଲୋକର ଯେତେ ଅସୁବିଧା ହେଲେ ବି ସେ କେବେ ସାହୁକାର ଦୁଆରେ ଗୋଡ଼ଭାଙ୍ଗି ଛିଡ଼ା ହୁଏ ନାହିଁ ।

୨୯୯୧. ଉଧାର ମାଣକ ତିନିପା ।

ଉଧାର ଦେଲା ବେଳେ ମହାଜନ ଯାହିତାହି ମାପି, ମାଣକ ଯାଗାରେ ତିନିପା ଚାଉଳ ଦିଏ । ଖାତକ କିଛି କହିପାରେ ନାହିଁ ।

୨୯୯୨. ଉଧାରକୁ ଅନ୍ଧାର ।

ମନୁଷ୍ୟ ଦାୟରେ ପଡ଼ିଲେ ,ଭଲ ବା ଖରାପ ଲୋକ ହେଉ ବିଚାର ଶୂନ୍ୟ ଭାବରେ ଅନ୍ୟର ଦ୍ୱାରସ୍ଥ ହେବାକୁ ବାଧ ହୁଏ ।

୨୯୯୩. ଉଧାରକୁ ବଦଳ ।

ଉଧାର ପାଇବାଆଶାରେ ଇଚ୍ଛା ହେଉ ନଥିବା ପଦାର୍ଥକୁ ବଦଳଦେବାକୁ ପଡ଼ିଥାଏ ।

୨୯୯୪. ଉଧାର ମିଳିଲେ କିଣନ୍ତି ହାତୀ, ଶୁଝିଲେ ଶୁଝିବ ପୁଅର ନାତି ।

ଅପବ୍ୟୟୀ ଶୁଝିବାର ଚିନ୍ତା ନକରି ଉଧାରକରିବା ଏକ ମନ୍ଦ ପ୍ରକୃତି ।

୨୯୯୫. ଉଧ୍‌ଲିଆ ପଳାଇବା । - ପରସ୍ତ୍ରୀକୁ ନେଇ ପଳାଇବା ।

୨୯୯୬. ଉଡ଼ି ଯାଏ ପକ୍ଷୀ , ତାର ପର ଗଣି ରଖ୍ ।

୨୯୯୭. *ଏକାର୍ଥରେ* -ଉଡ଼ନ୍ତା ଚଢ଼େଇର ପର ଗଣିବା ।

୨୯୯୮. ଉଡ଼କି ଧାନର୍ ମୁଡ଼କି ଉଖୁଡ଼ା, ସରୁଧାନର ଚୁଡ଼ା ।

୨୯୯୯. ଉଡ଼ିଗଲା ଗେଣ୍ଡାଳିଆ ଝାଡ଼ିଦେଲା କେଶ
ତୁ ଛାଡ଼ିଲୁ ବାପଭାଇ ମୁଁ ଛାଡ଼ିଲି ଦେଶ ।

× × × ×

ପୋଖରୀ ଚାରିପଟେ ବୁଣିଥିଲି ଧଣିଆ
ଧଣିଆର ମୂଳକଲା ବିଦେଶୀ ବଣିଆ ।

× × × ×

ପୋଖରି ଚାରିପଟେ ବୁଣିଥିଲି ଗୁଆ
ଗୁଆକାନ୍ଦି କାଟିନେଲା ଆଳିରଜା ଶୁଆ ।(ପ୍ରବାସୀ ବ୍ୟକ୍ତିର ବିଳାପ)

୩୦୦୦ ଉଡ଼ିଆସି ଜୁଡ଼ି (= ସମଭାବ ପନ୍ନ) ବସେ ।
ଉଡ଼ିଆସି ଯୁଡ଼େ (=ଏକହଳ) ବସେ ।

୩୦୦୧ ଉଡ଼ି ଯାଉଛି ଲୋଟଣି ପାରା
ଦୁନିଆରେ ଲାଗିଛି ଧରାପରା ।
ନାହିଁ ଖରା ନାହିଁ ଚରା
ଦୁନିଆରେ ଲାଗିଛି ଧରାପରା ।

୩୦୦୨. ଉଡ଼ଣ ଛଟା/ ଉଡ଼ଣ ଛଣ୍ଡୀ/ ଉଡ଼ଣ ଛଣ୍ଡା /ଉଲୁଇ ( =ଉଲୁଇ ଚଣ୍ଡୀ) ହେବା ।

ଟଙ୍କା ପଇସା ଅପବ୍ୟୟ କରି ଉଡ଼ାଇ ଦେଉଥିବା ଓ ଘରର ଆସବାବପତ୍ର ନଷ୍ଟ କରୁଥିବା ଲକ୍ଷ୍ମୀଛଡ଼ା ଲୋକ ।

୩୦୦୩. ଉଡ଼ିଯାଏ ଚୁଟି (=ମୁଣ୍ଡ ବାଳ) , ତ୍ରୁଟି ହେଲେ ବରାଦ ।

୩୦୦୪. ଉଡ଼ି ଆସିଲା ଚିଲ , ବାନ୍ଧିଲା ନୀଡ଼ ।

କାହାରିକୁ ଖାତିର ନ କରି ହଠାତ୍ ଆସି ଆସ୍ଥାନ ଜମାଇବା ପ୍ରକୃତିର ଲୋକ ଉପଲକ୍ଷରେ ଏ ପ୍ରବାଦଟି କୁହାଯାଇଛି ।

୩୦୦୫. ଉଡ଼ିଗଲା ରାଙ୍କବଣି,
ବିଦେଶୀ ନୁହେଁ ମୁଁ ଆଲୋ ରମଣୀ,
ଅନ୍ଧାରେ ନ ପାରୁ ଚିହ୍ନି ।

୩୦୦୬. ଉଡ଼ି ଉଡ଼ିଗଲା ,ହରଡ଼ ଚଢେଇ
ବଡ଼ ବଡ଼ ତାର ପକ୍ଷୀ,
ଦିଅର ଟୋକାଟା,ବଡ଼ ଚଲାକି
ସଦା ମାରୁଥାଇ ଆଖି ।

ଟୋକା ଦିଅରର ଭାଉଜଙ୍କୁ ପ୍ରେମ ନିବେଦନ ପ୍ରତି ।

୩୦୦୭. ଉଡ଼ିଗଲେ ଗେଣ୍ଡାଳିଆ
ଝାଡ଼ିଦେଲେ ପର
ତୁ ଛାଡ଼ିଲୁ ବାପ ,ଭାଇ,
ମୁଁ ଛାଡ଼ିଲି ଘର ।

ଯୁବତୀ ବାପ ,ଭାଇ ଛାଡ଼ି ଶାଶୁଘରକୁ ଯିବାରେ ମହତ୍ୱ ଅଛି । ଘର ଛାଡ଼ି ପଳାଇବାରେ ଚରିତ୍ର ହୀନାର କୌଣସି ମହତ୍ୱ ନାହିଁ । ବେଶ୍ୟାଙ୍କ ପ୍ରତି କୁହାଯାଇଛି ।

୩୦୦୮. ଉଡ଼େଇ ଦେଲେ ଗୋଡ଼େଇ ଯାଏ
ବିଞ୍ଚି(ବୁଣି) ଦେଲେ ଗୋଟେଇ ଖାଏ ।

ପରହାତକୁ ଯେ ଚାହିଁଥାଏ ,ମାଗିଖାଏ,ଗୋଟେଇ ଖାଇବାର ଯାହାର ଲଜ୍ଜା ନାହିଁ ସେହିପରି ଅତ୍ୟଧିକ ଅନୁସରଣ କରୁଥିବା ବ୍ୟକ୍ତି ପ୍ରତି ।

୩୦୦୯. ଉଡ଼ିଲେ ଚକୁଆ ,ବୁଡ଼ିଲେ ପାଣିକୁଆ ।

ନ ଚିହ୍ନିବା ଲୋକ ଉଡ଼ାଚଢେଇକୁ 'ଚକୁଆ' ଓ ବୁଡ଼ା ଚଢେଇକୁ 'ପାଣିକୁଆ' କହନ୍ତି ।

୩୦୧୦. ଉଡୁକାରେ ଭାଇ ସୁ ଡୁକା, ଚାରିକଣିଆ ଦୁଡୁକା(= ଦୀର୍ଘ ପଟୋଳିଆ)
କଉ ଗଉଡ଼ର ମଇଁଷି, ଧନିଆ ଗଉଡ଼ର ମଇଁଷି
ପାନ ମଚ ମଚ ଖାଉଚି ,ଧୋବଲୀ ଘୋଡ଼ାରେ ବସିଛି ।
ଆଠ ମଲିକିଆ ତୁଠ, ଆଣ୍ଠୁ ଗଣ୍ଠି ଧରି ଉଠ ।

୩୦୧୧. ଉଡ଼ିଗଲି ଓଡ଼ିଶାକୁ ,
ଷାଠିଏ ଭ୍ରମର ମାଇଲେ ତାକୁ ,ରସ ନେଲେ ଗମ୍ଭୀରାକୁ ।

୩୦୧୨. ଉଡ଼ିଗଲେ ଗେଣ୍ଡାଳିଆ ଝାଡ଼ିଦେଲେ ପକ୍ଷୀ
ହେମନାନୀ କାନ୍ଦୁଅଛି ବୁଢାବର ଦେଖି ।

୩୦୧୩. ଉଡ଼ିଗଲେ ଗେଣ୍ଡାଳିଆ ଝାଡ଼ିଦେଲେ ପକ୍ଷୀ,
ରାଜା ଗଲେ ମୃଗମାରି କାହିଁ ଗଲେ ରଖି ?
ଖଣ୍ଡଗିରି ଅରଣ୍ୟରେ ହୋଇଅଛି ଆଡ଼ି ,
ରାଜାଗଲେ ମୃଗମାରି ସଜ ହେଲା ଗାଡ଼ି ।

୩୦୧୪. ଉଡ଼ିଗଲେ ଗେଣ୍ଡାଳିଆ
ଛାଡ଼ିଗଲେ ପର,
ଜେମାଦେଈ କାନ୍ଦୁଛନ୍ତି
ଦେଖି ବୁଢା ବର ।

ବିଂଶ ଶତାବ୍ଦୀର ମଧ୍ୟ ଭାଗ ପର୍ଯ୍ୟନ୍ତ,ଓଡ଼ିଆ ସମାଜରେ ଯୁବତୀ ସହିତ ବୃଦ୍ଧାର ବିବାହ ପ୍ରଚଳିତ ଥିଲା ସେତେବେଳେ ଲୋକେ ବ୍ୟଙ୍ଗ କରି କହିଥିଲେ‘ ବୁଢାକାଳ ବିଭା ପରକୁ’ । ତେଣୁ ବୁଢା ବର ସହିତ ଯୁବତୀ ଜେମାର ବିବାହକାଳରେ ଜେମାଦେଈ ଦୁଃଖରେ କାନ୍ଦିବା ।

୩୦୧୫. ଉଡ଼ିଗଲେ ଗେଣ୍ଡାଳିଆ, ଝାଡ଼ିଦେଲେ ପକ୍ଷୀ
ପାର ନାନୀ କାନ୍ଦୁଅଛି , ସଉତୁଣୀ ଦେଖି ।

୩୦୧୬. ଉଡ଼ିଗଲେ ଗେଣ୍ଡାଳିଆ
ପଡ଼ିଗଲା ଛାଇ
ଆସ ଆସ ‘ଗଜାମୁଗ’
ଖଞ୍ଜଣୀ ବଜାଇ ।

ଦୁଇ ବାନ୍ଧବୀ ପରସ୍ପର ମୁହଁରେ ଗଜାମୁଗ ଦେଇ ‘ ଗଜାମୁଗ’ ବସିଛନ୍ତି । ଗେଣ୍ଡାଳିଆର ଛାଇ ପଡ଼ିବାରେ ବାନ୍ଧବୀ ମନରେ ‘ଗଜାମୁଗ’ ର ସ୍ମୃତି ଜାଗ୍ରତ ହୋଇଛି ଏବଂ ତାର ଅଭ୍ୟର୍ଥନା କରିବାଲାଗି ବାନ୍ଧବୀ ପ୍ରସ୍ତୁତ ।

୩୦୧୭. ଉଡ଼ିଗଲେ ସାରୀ ଶୁଆ
ବସିଲେ ବାଉଁଶେ
ନଖ ପାଣି ମୁଖେ ମଲା
ଏ ଯୁବା ବୟସେ ।

ଶାଶୁଘରେ ନାନା ଦୁଃଖରେ ବୋହୂର ଏକାକୀ ବିଳାପ । ପେଟରନିଆଁ ,ମନରନିଆଁ ଉଭୟେ ଯୁବତୀ ବୋହୂଟିକୁ ଘାରୁଛି କାରଣ ଖାଇବାକୁ ମିଳୁନାହିଁ ,କି ସ୍ୱାମୀ ପାଖରେ ରହୁନାହିଁ ।

୩୦୧୮. ଉଡ଼ିଆସି କରି ଘର କରିଛି ,
କେତେ ଗରବରେ କଥା କହୁଛି ।

ଅନ୍ୟ ସ୍ଥାନରୁ ଆସି ଗ୍ରାମରେ ନୂଆ ହୋଇ ଯେ ଘର କରିଥାଏ, ତା ପ୍ରତି ପୁରୁଣା ଗ୍ରାମବାସୀଙ୍କର ଅସହିଷ୍ଣୁତା ପ୍ରକାଶ ।

୩୦୧୯. ଉଡ଼ିଯା କାକ ପୋଇରେ ( =ଛୋଟ କୁଆ)
ଘେନି ଶୁଭ ବାରତା
ବନବାସୁ (=ବିଦେଶ) ଫେରି ଆସନ୍ତୁ
ରାମ -ଲକ୍ଷ୍ମଣ-ସୀତା ।

କୁଆ ନାରୀମାନଙ୍କର ବିଶ୍ୱସ୍ତ । ତିନି ଜାଗାରେ ଚାଉଳ ବାଢ଼ି କୁଆକୁ ଡ଼ାକନ୍ତି । କୁଆ ଯେଉଁ ଭାଗଟି ଖାଏ ,ସେଥିରୁ ନାରୀମାନେ ବିଦେଶରେ ଥିବା ନିର୍ଦ୍ଦିଷ୍ଟ ପ୍ରିୟଜନଙ୍କ ଶୁଭାଶୁଭ ଜାଣି ପାରନ୍ତି । ରାମ -ଲକ୍ଷ୍ମଣ - ସୀତା ଏଠାରେ ପ୍ରିୟଜନର ପ୍ରତୀକ ।

୩୦୨୦. ଉଡ଼ନ୍ତା ଖଇ ଗୋବିନ୍ଦାୟ ସ୍ୱାହା (ନମଃ) ।

ପବନରେ ଉଡ଼ିଯାଉଥିବା ଖଇ ଗୋବିନ୍ଦଙ୍କୁ ନୈବେଦ୍ୟ କଲାପରି ଯେଉଁ ପଦାର୍ଥ ଆପଣାର ହସ୍ତଚ୍ୟୁତ ହୋଇଛି ତାହା ଅନ୍ୟ ବ୍ୟକ୍ତି ବା ଅନୁଷ୍ଠାନକୁ ଦାନ କରି ବାହାଦୁରି ନେବାପାଇଁ ଚେଷ୍ଟା କରିବା ।

୩୦୨୧. ଉଡ଼ି ନଜାଣି ପୋଷା ମାନିବା ।
(୧) ଉଡ଼ନ୍ତା ଚଢେଇ ପୋଷା ମାନିବା ।
(୨) ଉଡ଼ି ନପାରି ପୋଷା ମାନିବା ।
(୩) ଉଡ଼ି ନପାରି ଫଡ଼ଫଡ଼ହେବା ।
(୪) ବା ଉଡ଼ନ୍ତା ଚଢେଇକୁ ପୋଷା ମନାଇବା ।

ଉଡ଼ି ଜାଣି ନ ଥିବା ଚଢେଇ ମଣିଷ ହାତରେ ଧରାପଡ଼ି ପୋଷାମାନିବା ପରି, ହାରିଯିବା ଲୋକ ଆଗରୁ ଚଳାଖହୋଇ ଶରଣପଶିବା ।

୩୦୨୨. ଉଡ଼ନ୍ତା ଚଢେଇକୁ ବେସର ବଟା ।

ବସ୍ତୁପ୍ରତି ବା ଅନିଶ୍ଚିତ ଫଳପ୍ରାପ୍ତି ପାଇଁ ଆଗରୁ ପ୍ରସ୍ତୁତ ହେବା ,ବୃଥା ଆଶାପୋଷଣ କରିବା ।

୩୦୨୩. ଉଡ଼ା ।

ପବନରେ ସମୁଦ୍ର କୂଳରୁ ବାଲି ଉଡ଼ିଗଲେ ସେଥିରୁ ମିଳିବା ସୁନା,ରୂପା,ଟଙ୍କା ପଇସା ପ୍ରଭୃତି ଦ୍ରବ୍ୟ ।

୩୦୨୪. ଉଡ଼ା ଚାନ୍ଦୁଆ ।

ଛାତ ନଥି ବା ମଣ୍ଡପରେ ମହାପ୍ରଭୁ ବିଜେ କଲାବେଳେ ଚାରୋଟି ବାଉଁଶରେ ଟଣାଯିବା ଚାନ୍ଦୁ ଆ ।

୩୦୨୫. ଉଡ଼ାଖାନି ବୁଡ଼ାଖାନି ଗୋ ଚଳଖାନି
ଅଚଳଖାନିକୁ ଘେନି ଗୋ ଚାରି ଭଣି ।

ହିନ୍ଦୁଶାସ୍ତ୍ରମତରେ ପ୍ରାଣୀ ଚାରିଖାନି (= ଚାରିପ୍ରକାର) ଯଥା:- ଜରାୟୁଜ,ଅଣ୍ଡଜ,ସ୍ୱେଦଜ, ଉଦ୍ଭିଜ, ମାତ୍ର ଅଲେଖ ଧର୍ମୀଙ୍କ ମତରେ ଜୀବ ଚାରି ପ୍ରକାର ଯଥା:- ଉଡ଼ାଖାନି,(=ଉଡ଼ନ୍ତା ଜୀବ)ବୁଡ଼ାଖାନି(=ବୁଡ଼ନ୍ତା ଜୀବ),ଚଳଖାନି(ଚଳନ୍ତି ଜୀବ) ଓ ଅଚଳଖାନି( ଅଚଳ ଜୀବ)।

୩୦୨୬. ଉଡ଼ାଇ ମାଇଲି ଶଣ୍ଢିକା ବାଡ଼ ହୋ
ନଈ ସେପାରିକି ଗଲା
କିଣି ରଖିଥିଲି ଜାଉଁଳି ଗୁଣା ହୋ
କାଳୀ ଧୁସୁଣ୍ଡୀକି ଦେଲା ।
ନୂଆ ଘୁମୁରାର ନାଦ
ପୁରୁଣା ଘୁମୁରା କେଡ଼େ ଶବଦ,ବାଜୁ ଥିବ ଡ଼ବ ଡ଼ବ ।-( ଘୁମୁରା ଗୀତ )

୩୦୨୭. ଉଡ଼ିଲା କେରକେଟା (= ଛୋଟିଆ ପକ୍ଷୀ)ଦୁଇ ଗୋଡ଼ ଛୋଟା
ପ୍ରଭୁ ମୋର ବସିଥିବେ ବଉଲୋ (=ବଉଳ)ଏ ବନରେ ଏକା ।

୩୦୨୮. ଉଡ଼ିଯିବା ।- ପଳେଇଯିବା ବା ଖର୍ଚ୍ଚ ହୋଇଯିବା ।

୩୦୨୯. ଉଡ଼ା ଖବର । - ଜନରବ ।(Rumour)

୩୦୩୦. ଉଡ଼ନ୍ତା ନଜର । - ସିଂହାବଲୋକନ ,( Birds eye view)

୩୦୩୧. ଉଡ଼ନ ଛୁ । - ଚମ୍ପଟ , ଗୋପନରେ ପଳାୟନ ।

୩୦୩୨. ଉଡ଼େଇ ନେବା ।- ଗପ୍ତ ବା ବଳତ୍କାରରେ ନେଇ ପଳେଇବା ।

୩୦୩୦. ଉଡ଼େଇ ଦେବା । - ଧନ ସମ୍ପତ୍ତି ନଷ୍ଟ କରିବା ।

୩୦୩୧. ଉଣେଇଶରୁ ଅଣଚାଳିଶ କରିବା ।

ଯିଏ ୧୯ ସଂଖ୍ୟାକୁ ଦେଖି ୯ ଏବଂ ୩୦ ଲେଖେ । ଅର୍ଥାତ୍ ପ୍ରମାଦ ଗ୍ରସ୍ତ ବ୍ୟକ୍ତି ।

୩୦୩୨. ଉଣା ଲୋକ ପଦ ପାଏ , ହଗିଗଲେ ଗୀତ ଗାଏ ।

ନିମ୍ନସ୍ତରର ଲୋକ ଆସନ ପାଇଲେ ,ନିଜ ଗର୍ବ ଅହଂକାରର ସୀମା ରହେ ନାହିଁ ।

୩୦୩୩. ଉଣା ଲୋକର ଦୁଇଗୁଣ ସରେ ,କୃପଣ ଲୋକର ମାଇପ ମରେ ।

ଅଳ୍ପ ଅଳ୍ପ ଖର୍ଚ୍ଚ କରୁଥିବା ନିମ୍ନସ୍ତରର ଲୋକର ଦୁଇ ଗୁଣ ଖର୍ଚ୍ଚ ହୋଇଥାଏ, । କାମ୍ପି ଲୋକର ସ୍ତ୍ରୀ ଭଲକରି ଗଣ୍ଡାଏ ଖାଇବାକୁ ନପାଇ ଶୁଖି ଶୁଖି ମରେ ।

୩୦୩୪. ଉଣା ହିଡ଼ ଯେଉଁଠି ,ପାଣି ଗଡ଼େ ସେଇଠି ।

ନୁଆଣିଆ/ଅନୁଚ୍ଚ ହିଡ଼ ଉପରେ ବିଲ ପାଣି ଗଡ଼ିଗଲା ପରି ,ଦୁର୍ବଳତାର ସୁଯୋଗ ଦେଇ ଲୋକେ ତା'ପ୍ରତି ଦୁର୍ବ୍ୟବହାର କରନ୍ତି ।

୩୦୩୫. ଉନ(ଉଣା) ଭାତ ଦୁନି ବଳ( ଶୋକ) ,
ଭରାଭାତ ରସାତଳ (ନାହିଁ ଭୋକ) ।

ଅଳ୍ପ ଖାଇଲେ ଦେହ ସୁସ୍ଥ ରହେ । ସେଥିପାଇଁ କହନ୍ତି ପେଟ ପୁରିବ ତିନି କୋଣ ପୁଣି ଖାଇବାକୁ ନ ପାଇଲେ ଲୋକ ଶୋକାତୁର ହୁଏ ।

୩୦୩୬. ଉନ୍ନତ ଉରଜାକୁ ଉଲଟ ରତି ମାଗଇ । -(ପ୍ରାଚୀନ ସଙ୍ଗୀତ)

୩୦୩୭. ଉନ୍ମତ୍ତ ମୂର୍ଚ୍ଛିତ ବଚନ, କ୍ଷଣ କ୍ଷଣକେ ଆନୁଆନ । (ଭୂପତି ପ୍ରେମ ପଞ୍ଚାମୃତ)

୩୦୩୮. ଉନ୍ନମ୍ୟୋନ୍ନମ୍ୟ ତତୈବ ନିର୍ଦ୍ଧନାନାଂ ମନୋରଥାଃ ।
ହୃଦୟେ ଷ୍ୱେବ ଲୀୟନ୍ତେ ବିଧବାସ୍ତ୍ରୀ ସ୍ତନାବିବ ।

ବିଧବା ରମଣୀର କୁଚ ଯୁଗଳ ପରି ଦରିଦ୍ର ବ୍ୟକ୍ତିର ମନୋରଥ ତାର ହୃଦୟରେ ଉଦିତ ଅର୍ଥାତ୍ ଉଠି ଉଠି ସେହିଠାରେ ହିଁ ଲୋପ ପାଇଥାଏ । ( ପଞ୍ଚତନ୍ତ୍ର) ।

୩୦୩୯. ଉପାଙ୍ଗିଆ । - ଉପାଙ୍ଗ ବାଦକ ।(ସଂପ୍ରତି ଏପରି ବାଦକ ବିସ୍ମୃତ)

୩୦୪୦. ଉପାଧି ଭୋଗ ।- ଯଜମାନି ଭୋଗ ।

୩୦୪୧. ଉପରେ ଧରମ ଦେବତା ,ତଳେ ବସୁମାତା ।

୩୦୪୨. ଉପରେ ପଡ଼ିଲେ ବଜାଇ ଶିଖନ୍ତି ।

୩୦୪୩. ଉପରି ମାରି କାଳାନ୍ତର
ଘଇତା ମାରି ଦେଶାନ୍ତର ।

୩୦୪୪. ଉତ୍ପତ୍ତି ସ୍ଥିତି ସଂହାରଣ
ଅନାଦି ପରମ କାରଣ ।

୩୦୪୫. ଉପରେ ଚିତ୍ର ପଟ
ପେଟ ଭିତରେ ପାପ ଭଟଭଟ ।

୩୦୪୬. ଉପର ବାହୁଙ୍ଗା ଖସୁଛି ,ତଳ ବାହୁଙ୍ଗା ହସୁଛି,
ମଝି ବାହୁଙ୍ଗା କହୁଛି ,ମୋ ଦିନକାଳ ଆସୁଛି ।

୩୦୪୭. ଉପବାସ କରି ଯେହୁ ଗର୍ବ ନକରନ୍ତି
ଜନ୍ମାନ୍ତରେ ବହୁ ସୁଖ ଫଳ ସେ ଲଭନ୍ତି ।

୩୦୪୮. ଉପରେ ଉପରେ ଛିଞ୍ଚଇ ପାଣି
ତଳେ କାଟୁଥାଏ ଚେରକୁ ଜାଣି ।

୩୦୪୯. ଉପରୋଧ କଲି କୁକୁରକୁ
କୁକୁର ମୁତିଲା ଉପରକୁ ।

୩୦୫୦. ଉପଧି କରି ପତ୍ନୀ କର
ସୁଖେ ଶୋଇଲା ନୃପବର । -( ଜଗନ୍ନାଥ ଭାଗବତ)

୩୦୫୧. ଉପର ଡ଼ଙ୍ଗରି ଚଢନ୍ତି ଘାଟି ,ବରକୋଳି ଦାନ୍ତ କାଠି ,
ଆଗେ ଦେଲ ବନ୍ଧୁ ଭରସା ,ପଛେ ଦେଲ ଶର୍ଙ୍ଖିକାଟି । - (କୋରାପୁଟ)

୩୦୫୨. ଉପବାସ ଠାରୁ ବିପିତ୍ତି ନାହିଁ ,
ଘୋଡ଼ାଚଢା ( ଏବେକୁ ମଟର ଚଢା) ଠାରୁ ସମ୍ପତ୍ତି ନାହିଁ ।

ଅଭାବରୁ ଉପାସ ରହିବା ସବୁଠାରୁ ବଡ଼ କଷ୍ଟ । ପୂର୍ବେ ଘୋଡ଼ା ଚଢି ଆସିବାକୁ ସୌଭାଗ୍ୟ ମନେ କରା ଯାଉଥିଲା ।

୩୦୫୩. ଉପକାରୀଙ୍କ ମୁହଁରେ ପାହାର ।

ଉପକାରୀ ବ୍ୟକ୍ତି ପ୍ରତି ଉପକୃତ ବ୍ୟକ୍ତି କୃତଘ୍ନତା ପ୍ରକାଶ କରିବା ।

୩୦୫୪. ଉପରେ ଉପରେ ଲାଗିଛି କଳି ,
ଭିତରେ ଭିତରେ ( ହୁପୁଡ଼ା ହାପୁଡ଼ି) କବାଟ କିଳି ।

୩୦୫୫. *ଏକପ୍ରକାର-* ଭିତରେ ଭିତରେ ସଲାସୁତୁରା ଉପରେ ଉପରେ କଳି ।

୩୦୫୬. ଉପର- ପଡ଼ି ,କଖାରୁ ବଡ଼ି । - ଉପରେ ପଡ଼ି କଥା କହୁଥିବା ବ୍ୟକ୍ତି ପ୍ରତି ।

୩୦୫୭. ଉପାର୍ଜିତା ନାମର୍ଥାନାଂ ତ୍ୟାଗ ଏବହି ରକ୍ଷଣମ୍ ।
ତଡ଼ା ଗୋଦର ସଂସ୍ଥାନାଂ ପରୀବାହ ଇବାମ୍ଭସାମ୍ ।

ଉପାର୍ଜିତ ଅର୍ଥକୁ ଦାନ କରିବାହିଁ ହେଉଛି ତାର ସୁରକ୍ଷା । ଯଥା ପୁଷ୍କରିଣୀ ଗର୍ଭରେ ପୁରିଥିବା ଜଳକୁ ନାଳ ଦ୍ୱାରା ବାହାର କରିଦେବାହିଁ ହେଉଛି ଜଳର ସୁରକ୍ଷା । ଅର୍ଥାତ୍ ଯେପରି ପୁଷ୍କରିଣୀସ୍ଥ ପୂର୍ଣ୍ଣ ଜଳକୁ ନାଳ ଦ୍ୱାରା ବାହାର କରି ନନେଲେ ଜଳ ବିକୃତ ହୋଇଯାଏ ,ସେହିପରି ଦାନ ନକଲେ ସଞ୍ଚିତ ଧନ ମନୁଷ୍ୟକୁ ପାପରେ ଲି ପ୍ତ କରାଏ ।

୩୦୫୮. ଉପାସିଆ (ଓପାସିଆ ) ଚାହିଁ ଥାଏ
ତନି ତବତିଆ ଖାଉଥାଏ ।

୩୦୫୯. ଉପରେ ହସ ହସ , ଭିତରେ କାନ୍ଦ (ଛନ୍ଦ) ।
ଚାରି ଦଉଡ଼ି କଟା , ମେଲିଛି ଫାନ୍ଦ ।

୩୦୬୦. ଉପନ- ଭୋଗ । - ଭୋଗ ବିଶେଷ ।

୩୦୬୧. ଉପାଙ୍ଗ । - ସହକାରୀ ବାଦ୍ୟ ବିଶେଷ ।

୩୦୬୨. ଉପୁରି ଲାଭରେ ନପୁରେ ପେଟ ,ଯେଉଁ ନିଅଣ୍ଟକୁ ସେହି ନିଅଣ୍ଟ ।

ଉତ୍କୋଚ ନେଇ କେହି ନିଜର ଅଭାବ ମେଣ୍ଟାଇ ପାରେ ନାହିଁ ।

୩୦୬୩. ଉପର ହାତରେ ତୁମେ ଦେବ
ତଳ ହାତରେ ମୁଁ ନେବି ।

୩୦୬୪. ଉପରେ ଯାଉଛି ତନୁପାତଳି ମୋ ନବ ନାଗରୀ ଲୋ
ଉଡ଼େଇ ନେଉଛି ବାଆ,
ନଈରେ ଯାଉଛି ନାଆ ଲୋ
ନଈରେ ଯାଉଛି ନାଆ ।

୩୦୬୫. ଉପର ଚିକକ୍ୱଣ ,ଭିତର ପୋଲା ।

୩୦୬୬. ଉପର ଘେରା ମଝି ଫାଙ୍କ
ଦେଖିଛି କେତେ ଲାକ୍ଷ ଲାକ୍ଷ ।

୩୦୬୭. ଉପରୋଧରେ ( = ଅନୁରୋଧରେ ) ଢିଙ୍କି ଗିଳିବା ।

୩୦୬୮. *ଏକାର୍ଥରେ* - ମୋ ରାଣ ,ଢିଙ୍କି ଗିଳି ।

୩୦୬୯. ଉପସ୍ଥିତ ତ୍ୟାଗ କରିବାର ନୁହେଁ ।

୩୦୭୦. ଉପର ଚିକଣ ଚାକଣ ,ଭିତରେ ଖାଡ଼ ।- ଅଶ୍ଳୀଳତା ସୂଚକ ବୋଲି ।

୩୦୭୧. ଉପରେ ବାବୁ ଆଡ଼୍ଡ଼ା (=ଆଡ଼ମ୍ବର)

୩୦୭୨. ଉପକୃତ ଶତ୍ରୁଦ୍ୱାରା ଶତ୍ରୁକୁ ଉଦ୍ଧାରି,
ପାଦରୁ କଣ୍ଟାରେ କଣ୍ଟା କାଢି ଦେଲା ପରି
ସଂସାରେ କେହି କାହାର ନାହିଁ ଶତ୍ରୁ ମିତ୍ର,
ଶତ୍ରୁ ମିତ୍ର କାର୍ଯ୍ୟ ହେତୁ ହୁଅନ୍ତି ଚିହ୍ନିତ ।

୩୦୭୩. ଉପାସିଆ ଛାରପୋକ ।

୩୦୭୪. ଉପାସ କରି ଧର୍ମ ,କୋଦାଳ ଧରି କର୍ମ ।

୩୦୭୫. ଉପାସ କଲେ ସରେ ଦିନ ,ଉଧାର କଲେ ହୁଏ ହୀନ ।

୩୦୭୬. ଉପପତି ମଧ ସମୟରେ ପତି (ଗୃହପତି)ହୋଇଥାଏ ।

ଶୃଙ୍ଗାର ରସର ତିନି ନାୟକଙ୍କ ମଧ୍ୟରୁ ବୈଶିକ (= ବେଶ୍ୟାନୁରକ୍ତ)କୁ ଛାଡ଼ିଦେଲେ ବାକି ଦୁଇଟି ନାୟକ ହେଲେ - 'ପତି' ଓ 'ଉପପତି' । ପ୍ରକାର ଭେଦରେ 'ପତି' ଚାରିପ୍ରକର ଯଥା- (୧) ଅନୁକୂଳ(ବିବାହିତା ସ୍ତ୍ରୀ ପ୍ରତି ଏକାନ୍ତ ଅନୁରକ୍ତ ।) (୨) ଦକ୍ଷିଣ(ଅନେକ ନାଗରୀଙ୍କ ପ୍ରତି ସମାନ ରୂପେ ଅନୁରାଗୀ) (୩) ଧୃଷ୍ଟ ଆପଣା ସ୍ତ୍ରୀ ପ୍ରତି ଅପରାଧୀ ହୋଇ ତଦ୍ୱାରା ଅପମାନିତ ହୋଇ ସୁଦ୍ଧା ନିର୍ଲ୍ଲଜତା ପୂର୍ବକ ସ୍ତ୍ରୀ ଠାରେ ବିନୟକାରୀ) (୪) ଶଠ (ଛଳନା କରି ନିଜର ଅପରାଧ ଗୋପନ କରିବାରେ ଚତୁର) ସେହିପରି 'ଉପପତି' ମଧ ଦୁଇ ପ୍ରକାର ଯଥା- (୧) ବଚନ ଚତୁର (୨) କ୍ରିୟା ଚତୁର ,ଏହି ପ୍ରକାର ଭେଦରୁ ଏହା ସୂଚିତ ହେଉଛି ଯେ ସମୟ ପଡ଼ିଲେ 'ଉପପତି' ମଧ 'ପତି' ରୂପେ ପରିଗଣିତ ହୁଏ ।

୩୦୭୭. ଉପକାରିଆ ବନ୍ଧୁ

ଆମ୍ବ ଆଣି ନାହିଁ ଶିମ୍ବ ଆଣି ନାହିଁ

ଆଣିଅଛି କଷା କେନ୍ଦୁ ।

ଦିଆ ନିଆ ଉପରେ ବନ୍ଧୁତ୍ୱ ସାଧାରଣତଃ ପ୍ରତିଷ୍ଠିତ ହୋଇଥାଏ । ଦିଆ ନିଆରେ ଊଣା ହେଲେ ବା ଦ୍ରବ୍ୟ ନାପସନ୍ଦ ହେଲେ ବନ୍ଧୁମନ ଊଣା କରିଦିଏ । ଏଇ ପରିପ୍ରେକ୍ଷୀରେ ବନ୍ଧୁର ଉପହାର ପ୍ରୀତି ।

୩୦୭୮. ଉପରେ ଯାଉଚି ତନୁ ପାତଳୀ ମୋ,

ନଈରେ ପଡ଼ିଛି ନାଆ

ନବ ନାଗରୀଲୋ,

ଉଡ଼େଇ ନେଉଛି ବାଆ ।

୩୦୭୯. ଉପର ଶାଳରେ ପାଣି ବୋହୁଥିବ ,

ବୋଝ ବୋହୁଥିବ କପା (=କପାତୁଳା)

ତେଲ ଲଗାଇବ ଖାବାଡ଼ାବା (= ଯାହି ତାହି)

ମାଡ଼ି ବସିଥିବ ଚକା ( =ଚକା ପକେଇ ବସିବା) ।

ଫସଲ କିଆରୀକୁ ଶେଣାରେ ପାଣି ବୋହିବା ପାଇଁ ଅନେକ ଗୁଡ଼ିଏ ଶାଳ କରିବାକୁ ହୁଏ । ତଳଶାଳ ଅପେକ୍ଷା ଉପର ଶାଳର ପାଣି ବୋହିବା ସୁବିଧାଜନକ । ବେଶି ନଇଁବାକୁ ପଡ଼େ ନାହିଁ । ଯାହି ତାହି ଭାବରେ ତେଲ ଲଗାଇବା ଉଚିତ । ଚକା ପକାଇ ବସିଲେ ,ଅଧି କ ଜାଗା ମାଡ଼ି ବସନ୍ତି ।

୩୦୮୦. ଉପରେ ଉପରେ ଝଟାପଟା

କବାଟ କଣରେ ଛେନା ଚକଟା ଲଟା ପଟା ।

ଉପର ଦେଖାଣାକୁ ଝଟାପଟା ,ମାତ୍ର ଦୁହେଁ ଭିତରେ ଲୁଚି ଲୁଚି ମଉଜ ମାରିବା ।

୩୦୮୧. ଉପାସିଆ ନାଗର ,ପାରଣର ଠାକୁର ।

୩୦୮୨. *ଏକାର୍ଥରେ* - ଏକାଦଶୀର କିଛି ନାହିଁ ,ପାରଣର ଗୋସାଇଁ (=ଠାକୁର) ।

ଠାକୁରଙ୍କ ଅନୁକମ୍ପା ପାଇଁ ଲମ୍ପଟ ପ୍ରକୃତି ଲୋକର ଛଳନାତ୍ମକ ଉପବାସ ପ୍ରତି କଟାକ୍ଷ ।

୩୦୮୩. ଉତ୍ପନ୍ନାମା ପଦଂ ଯସ୍ତୁ ସମାଧତ୍ତେ ସେ ବୁଦ୍ଧିମାନ ।

ବାଣିଜୋ ଭାର୍ଯ୍ୟା ଜରଃ ପ୍ରତ୍ୟକ୍ଷେ ନିହ୍ନୁତୋ ତଥା ।

ବଣିକ ମାତ୍ରେ ଧୂର୍ତ୍ତ । ବଣିକର ସ୍ତ୍ରୀ ନିଜ ସ୍ୱାମୀଙ୍କ ଆଖି ଆଗରେ ତାର ଜାର ପୁରୁଷକୁ ଲୁଚାଇ ଦେଇପାରେ ଏବଂ ଉପସ୍ଥିତ ବିପଦକୁ ତତ୍କ୍ଷଣାତ୍ ସମାଧାନ କରିପାରେ । ତେଣୁ ସେ ହେଉଛି ବୁଦ୍ଧିମତୀ ।

୩୦୮୪. ‘ ଉପାୟ’ ଚିନ୍ତା କରିବା ସଙ୍ଗେ ସଙ୍ଗେ

‘ଅପାୟ’ ମଧ୍ୟ ଚିନ୍ତା କରିବା ଉଚିତ୍ ।

ଅବଲମ୍ବନ କୌଶଳ ,ପ୍ରତିକାର ବ୍ୟବସ୍ଥା କରିବା ସହିତ ସେଥିରୁ ଉତ୍ପନ୍ନ ହେଉଥିବା ବିପଦ ପ୍ରତି ସଜାଗ ରହିବା ବିଧେୟ ।

୩୦୮୫.  ଉପର ଦିଗରୁ ସରୁ କଲମ
ଭିତର ଦିଗର କମ
ଭୁଆସୁଣୀ ବୋଲି କିଏ ଗଢିଥିଲା
ତା' ଦିହ ପତର ଯମ ।

୩୦୮୬.  ଉପରେ କେଡ଼େ ସୁନ୍ଦର ,ଭିତର ପୋଡ଼ା ଅଙ୍ଗାର ।

ବାହାରେ ମିଷ୍ଟଭାଷୀ ଓ ଭିତରେ କପଟାଚାରୀ ବ୍ୟକ୍ତି ପ୍ରତି । ମହାକାଳ ଫଳ ଯେପରି ଉପର ଗାଢ଼ଲାଲ ଓ ସୁନ୍ଦର ଭିତରଟା କଳା କୁତ୍ସିତ ।

୩୦୮୭.  ଉପୁଠୁଲା(=ତର ତର) ଚାଷ, ଧୀର ବଣିଜ ।

୩୦୮୮.  *ଏକାର୍ଥରେ* -ଚାଷ ତର ତର ,ବଣିଜ ମଠ ।

୩୦୮୯.  ଉପର ହାତରେ ଦେବା । -ଦାନ ଦେବା ।

୩୦୯୦.  ଉପଚାର ଚାମରସେବକ ।

ମହାପ୍ରଭୁଙ୍କର ସେବାପାଇଁ ଅନୁମତି ପ୍ରାପ୍ତ ଚାମରସେବକ ।

୩୦୯୧.  ଉପର ମୁହାଁ ଓଟ ।- ଉଦ୍ଧତ ସ୍ୱଭାବ ଯୁକ୍ତ ।

୩୦୯୨.  ଉପଟାଙ୍ଗର ହେବା / ଉପୁଟାଙ୍ଗର ହେବା ।

ଥଟ୍ଟା କରିବା / ଢଗ ମେଲିବା ।

୩୦୯୩.  ଉପର ଆଖିଆ / ଉପର ଦୃଷ୍ଟିଆ ।

ଅମନୋଯୋଗୀ ବା ଅଧିକ ବ୍ୟୟ କରୁଥିବା ବ୍ୟକ୍ତି

୩୦୯୪.  ଉପର ପାଟିଆ ଖେଳ ।

ଏକ ପ୍ରକାର ଘର ଭିତରେ ଖେଳ । କୋରାପୁଟ,ଜୟପୁର ଅଞ୍ଚଳରେ ପ୍ରଚଳିତ ।

୩୦୯୫.  ଉର୍ଦ୍ଧ୍ୱନିଶ୍ୱାସ ବହିବା ।

ମରଣାସନ୍ନ ହେବା ବା ମରଣର ଲକ୍ଷଣ ଦେଖାଦେବା ।

୩୦୯୬.  ଉରଜ ଫଡ଼କିବା (ଫରକିବା) (=କମ୍ପନ) । କାମଭାବ ଉଦ୍ରେକ ହେବା ।

୩୦୯୭.  ଉଥଳ ପୁଥଳ କରିବା - ହଲଚଲ କରିଦେବା ବା ଆନ୍ଦୋଳନ କରିବା ।

୩୦୯୮.  ଉଗାଳିଲେ ଅନ୍ଧ
ଗିଳିଦେଲେ କୋଢ଼ି(= କୁଷ୍ଠ ରୋଗାକ୍ରାନ୍ତ ) ।

କୁହାଯାଏ -ଯେତେବେଳେ ସାପ ଛୁଚୁନ୍ଦ୍ରାକୁ ଧରେ ସେତେବେଳେ ସେ ବଡ଼ କଠିନ ପରିସ୍ଥିତିରେ ପଡ଼ିଯାଏ । ଯଦି ସେ ଛୁଚୁନ୍ଦ୍ରାକୁ ଓଗାଳି ଦେବ ତେବେ ଅନ୍ଧ ହୋଇଯିବ । ଗିଳିଦେଲେ କୁଷ୍ଠରୋଗାକ୍ରାନ୍ତ

ହେବ । ମନୁଷ୍ୟ କଠିନ ପରିସ୍ଥିତିରେ ଅର୍ଥାତ୍ ଦୋଧାଇରେ ପଡ଼ିଲେ ଏହି ଉକ୍ତିଟି ପ୍ରୟୋଗ କରାଯାଏ । ଉଦାହରଣ ସ୍ୱରୂପ - ତୁମକୁ ନିଜ ଘରେ ରଖି ବଡ଼ଭୁଲ କଲି । ଯଦି ତୁମକୁ ମୁଁ ବାହାର କରିଦିଏ ତେବେ ବନ୍ଧୁବାନ୍ଧବ ମାନେ ମୋର ବଦନାମ କରିବେ । ଯଦି ରହିବାକୁ ଦିଏ ତେବେ ତୁମେ ମୋର ସର୍ବନାଶ କରିଦେବେ ।

୩୦୯୯. ଉପରେ ଉପରେ ପାଣି ସିଞ୍ଚୁଛି ,ଭିତରେ ଭିତରେ ଶିଅ କାଟୁଛି ।

ଗଛ ଉପରେ ପାଣି ଢାଳି ଭିତରୁ ଶିଅ କାଟିଲେ ଗଛ ମରିଯାଏ । ସେହିପରି ଉପରେ ମଧୁରିଆ କଥା କହି ଗୋପନରେ ଅନିଷ୍ଟ ସାଧନ କରିବା ।

୩୧୦୦. ଉଭେଇଗଲେ ନଭୁ ଜ୍ୟୋତିଷ ଗଣ

ଜ୍ୟୋତି ଦେଖାଇଦେଲେ ଜ୍ୟୋତିରିଙ୍ଗଣ(=ଜୁକୁ ଜୁକିଆ ପୋକ) ।

ଜୁକୁଜୁକିଆ ପୋକ ଜ୍ୟୋତି ଦେଖାଇବାର ପ୍ରୟାସ କଲେ ଯାହା ହୁଏ ତାହା ଅନୁମାନ କରିବା କଥା ।

୩୧୦୧. ଉଭୟ ସଙ୍କଟରେ ପଡ଼ିବା ।

୩୧୦୨. *ଏକାର୍ଥରେ*- ଇଆଡୁ ମାଇଲେ ଗୋହତ୍ୟା

ସିଆଡୁ ମାଇଲେ ବ୍ରହ୍ମହତ୍ୟା ।

୩୧୦୩. ଉମ୍ଭେଇରେ (= ଉଠାଚୂଲି) ନ ଚଢେ ହାଣ୍ଡି ।

କଥାରେ ରାଜା ବାଦଶା ଖଣ୍ଡି (= ହାଣିବା) ।

୩୧୦୪. ଉମ୍ଭେଇ ମୁହାଁ ( = ଚୁଲି ମୁହାଁ ) ଦେବତା ,ତାର ଘଷି ପାଉଁଶ ନୈବେଦ୍ୟ ।

୩୧୦୫. ଉଭୟ ମୁଖୀ ଗାଈ ।

ଯେଉଁ ଗାଈକୁ ପ୍ରସବ କରୁଥିବା ସମୟରେ ବ୍ରାହ୍ମଣକୁ ଦାନ କରାଯାଏ

୩୧୦୬. ଉଭା ଅମା'ସ୍ୟା ।

ଆଷାଢ ଅମାବାସ୍ୟା । ଏହିଦିନ ଅଣସର ପରେ ସର୍ବସାଧାରଣ ଦର୍ଶନ ପାଇଁ ବଡ଼ଠାକୁରଙ୍କୁ ଅର୍ଥାତ୍ ଜଗନ୍ନାଥ,ବଳଭଦ୍ର ,ସୁଭଦ୍ରାଙ୍କୁ ଉଭା କରାଯାଏ ।

୩୧୦୭. ଉଟୁସ୍ ପୁଟୁସ୍ ଲାଗିବ । - ବହୁତ ଖାଇବା ହେତୁ ଆକଟା ଲାଗିବା ।

୩୧୦୮. ଉବୁ ନଦୀ ଶୋଳ କୋଶ ।

୩୧୦୯. *ଏକାର୍ଥରେ* - ଏକା ନଦୀ ବିଶ କୋଶ ।

୩୧୧୦. ଉମର ଢଳିଯିବା ।- ବୃଦ୍ଧାବସ୍ଥା

୩୧୧୧. ଉମର ଭର । - ମୃତ୍ୟୁ ପର୍ଯ୍ୟନ୍ତ ତଥା ଜୀବନସାରା ।

୩୧୧୨. ଉମର ବିତେଇବା ( =କଟେଇବା) ।- ଜୀବନ ବିତେଇବା ବା କଟେଇବା ।

୩୧୧୩. ଉମର କା ସଫର । - ଜୀବନ କାଳ ।

୩୧୧୪. ଉମର ରଙ୍ଗୀଲା ।

୩୧୧୫. *ଏକାର୍ଥରେ-* ଉପରେ ସୁନ୍ଦର ।

ଯୁବା ବା ଯୁବତୀ ବୟସରେ ଯେତେଇଚ୍ଛା ମୌଜ-ମସ୍ତି କରିଯାଅ ।

୩୧୧୬. ଉମାଦାସ ଜ୍ୟୋତିଷଙ୍କ ସାଇଁ
ସଭିଙ୍କୁ ନଚାଏ ରାମ ଗୋସାଇଁ ।

ଯେପରି କାଠ କଣ୍ଢେଇର ଖେଳ ଦେଖାଉଳାବାଲା କଣ୍ଢେଇକୁ ଆପଣା ଇଚ୍ଛାରେ ନଚାଏ, ସେହିପରି ମନୁଷ୍ୟକୁ ଈଶ୍ୱରଙ୍କ ଇଚ୍ଛାନୁସାରେ କାମ କରିବାକୁ ପଡ଼େ ।

୩୧୧୭. ଉତ୍ସାହ ସଂପନ୍ନମ ଦୀର୍ଘସୂତ୍ରମ୍
କ୍ରିୟାବିଧିଜ୍ଞଂ ବ୍ୟସନେ ଶ୍ୱଶକ୍ତଂ ।
ଶୂରଂ କୃତଜ୍ଞ ଦୃଢ଼ ସୌହୃଦଂଚ
ଲକ୍ଷ୍ମୀ ସ୍ୱୟଂ ଜାତି ନିବାସ ହେତୋଃ ।

ଉତ୍ସାହ ସଂପନ ବ୍ୟକ୍ତି ,ଯିଏ କାମକୁ ରଖେ ନାହିଁ ଅର୍ଥାତ୍ ଅଦୀର୍ଘସୂତ୍ରୀ,କାର୍ଯ୍ୟ କରିବା ନିୟମରେ ଯେ ଅଭିଜ୍ଞ ବୃଥା କାର୍ଯ୍ୟରୁ ଯିଏ ବିରତ ,ବୀର ,କୃତଜ୍ଞ,ଓ ଦୃଢ ସୁହୃଦ ଅର୍ଥାତ୍ ସ୍ଥାୟୀ ବନ୍ଧୁତ୍ୱ ,ସେହି ଭଳି ବ୍ୟକ୍ତିଙ୍କୁ ଲକ୍ଷ୍ମୀ ନିଜେ ଆଶ୍ରୟ କରିଥାନ୍ତି । ପୃଥିବୀର ଏକମାତ୍ର ଭାରତୀୟ ଆର୍ଯ୍ୟ ଜାତିର ନୀତରତ୍ନ ଭଣ୍ଡାରରେ ଏହି ନୀତି କଥା ସଂଚିତ ହୋଇ ରହିଛି ।

୩୧୧୮. ଉତ୍ସବେ ବ୍ୟସନେ ଯୁଦ୍ଧେ ଦୁର୍ଭିକ୍ଷେ ରାଷ୍ଟ୍ର ବିପ୍ଳବେ
ରାଜଦ୍ୱାରେ ଶ୍ମଶାନେ ଚ ଯସ୍ତିଷ୍ଠତି ସବାନ୍ଧ ବଃ ।

ଉତ୍ସବରେ ,ବିପଦରେ ,ଯୁଦ୍ଧରେ, ଦୁର୍ଭିଯରେ, ରାଷ୍ଟ୍ର ବିପ୍ଳବ ବେଳେ ,ବିଚାରାଳୟରେ ଓ ଶ୍ମଶାନରେ ଯେ ପାଖରେ ରହି ସାହାଯ୍ୟ କରେ ତାକୁ ବନ୍ଧୁ ବୋଲାଯାଏ ।

୩୧୧୯. ଉତ୍ସବ ଆପଦ ପୁଣି ଦୁର୍ଭିକ୍ଷ କାଳରେ,
ରାଜ ଦରବାରେ ଆଉ ଯୁଦ୍ଧ ସମୟରେ ,
ନିରପେକ୍ଷ ଭାବରେ ଯେ ସହାୟ ହୁଅଇ ,
ପ୍ରକୃତ ବାନ୍ଧବ ବୋଲି ତାହାକୁଟି କହି ।

୩୧୨୦. ଉତ୍ସର୍ଗ ଧନ ଯେହୁ ହରେ ।
ଅନ୍ତେ ନରକ ଭୋଗ କରେ । ( ଜଗନ୍ନାଥ ଭାଗବତ)

୩୧୨୧. ଉତ୍ସବରେ ,ଦୁଃଖରେ ,ଦୁର୍ଭିକ୍ଷ, ଶତ୍ରୁତାପେ,
ରାଜଦ୍ୱାରେ ,ମରଣରେ ପ୍ରବେଶିବ ଆପେ ।
ସେହିମାନେ ବନ୍ଧୁରେଟି ଅତିପ୍ରିୟ ବୋଲି
ଜାଣିବ ନିଶ୍ଚୟ ତଥ୍ୟ ବିଚାରି କହିଲି ।

ଯେଉଁମାନେ ଏହି ସମୟରେ ବିନା ନିମନ୍ତ୍ରଣରେ ଉପସ୍ଥିତ ରହନ୍ତି ସେହିମାନେ ଅତିପ୍ରିୟ ବାଂଧୁବୋଲି ବିବେଚିତ ହୁଅନ୍ତି।

୩୧୨୨. ଉଷୁମ ପାନି କାଏଁ ଘର୍ ପୁଡ଼୍ସି ।- ଉଷୁମ ପାଣିରେ କି ଘର ପୋଡ଼େ ?

୩୧୨୩. ଉଷୁନା ଧାନର ଚଷୁ
ଝଅଟ (=ଶୀଘ୍ର) ରା-ଆ-ନ୍ଧ
ଡ଼ାଳି ପୋହଳା-ଲୋ
(=ଲାଲ ଧାନ ଏହାର ଚାଉଳ ଅଳ୍ପ ହଳଦିଆ,ସୁନ୍ଦର ଭାତ ହୁଏ।)
ଗାଳିଦେବ ଆସି ଶାଶୁ।

୩୧୨୪. ଉଷୁନା ଧାନକୁ ବିରି ପିଠଉ
ମଦନ ଗୋଡ଼କୁ ଚୂଳି କଠଉ
ଧାରା ଶ୍ରାବଣକୁ ବହୁଛି ଲୁହ,
କାଖରେ କଳସୀ କୋଡ଼ରେ ପୁଅ ,
ଏଇ ବାପ ମାଆ କିସ ନ କଲେ,
ନିକୁଞ୍ଜ ବନକୁ ସେ ଝାସି ଦେଲେ,
ନିକୁଞ୍ଜ ବନରେ ଫୁଟିଛି ମଲ୍ଲୀ
ଯାହାର ମଲ୍ଲୀ ସେ ନେଲାଣି ତୋଳି।
ହାତ ବଢେଇଛି ତୋଳିବି ବୋଲି
ଯାହାର ଶାଢୀ ସେ ଗଲାଣି ଚିରି
ଟଙ୍କାକିଆ ଶାଢୀ ମୁଣ୍ଡରେ ମାର
କାଲିକି ଆସିବ ବୋଇତ ଭାର।

୩୧୨୫. ଉଷ୍ଣ ଲବଣ କଟୁତୀକ୍ଷ୍ଣ ,ଶାକ ଆମ୍ବିଳ ଯା ଭକ୍ଷଣ ,
ଜନନୀ ତାହାର କରଇ ,ସେ ରସେ ସର୍ବାଙ୍ଗ ପୀଡ଼ଇ।(ଜଗନ୍ନାଥ ଭାଗବତ)

୩୧୨୬. ଉଷୁନା ଧାନ ,ରାଣ୍ଡ ମାଇପର ସାତ ତିଅଣ (ଅଣ୍ଟିରେ ଧନ)।
ବିଧବାର ବିଳାସବ୍ୟସନ ପ୍ରତି।

୩୧୨୭. ଉଷ୍ଟ୍ର (ଓଟ) କଣ୍ଟକ ଭୋଜନ।
ଓଟ ଯେପରି କଣ୍ଟାଭରା ବୃକ୍ଷର କଣ୍ଟାରେ ନିଜକୁ କ୍ଷତବିକ୍ଷତ କରି ସ୍ୱାଦୁ ପତ୍ର ଖାଏ,ସେହିପରି ମଣିଷ ସୁଖଲାଭ ପାଇଁ ବହୁ ଦୁଃଖକଷ୍ଟ ସହ୍ୟକରେ।

୩୧୨୮. ଉଷୁନା ଧାନ କି ହୋଇବ ଗଜା ?
ପଖାଳ ଭାତକୁ କଦଳୀ ଭଜା,

ଏବେ ମାରୁଥିଲା ହେଣ୍ଡାରେ
ସୁନାଗୋରୀ ମୁଖେ ଦକ୍ଷିଣୀ ନୋଥ
ଝରା ଲଗା ପେଣ୍ଡା ପେଣ୍ଡାରେ ।

'ଉଷୁନାଧାନ ଗଜାହେବା' ନ୍ୟାୟଟି କୌଣସି ଅସମ୍ଭବ କଥା ସମ୍ଭବ ହେଲେ ପ୍ରୟୋଗ କରାଯାଏ । ଅର୍ଥର ଅସାମଞ୍ଜସ୍ୟତାଥିଲେମଧ,ସୁମଧୁର ପଦବାଚ୍ୟ ।

୩୧୨୯. ଉଷୁନା ଚାଉଳ ମଣ୍ଡା
ଆଗ ଦୁଆରିରେ ଦେଇଛୁ ବୋଉ
ଡ଼େଇଁ ପଡୁଥିବି ଦଣ୍ଡା ।

୩୧୩୦. ଉଷୁନା ଚାଉଳ ମଣ୍ଡା
ଗାଳି ନ ଦିଅନ୍ତି ମାଡ଼ ନ ମାରନ୍ତି (ଦିଅନ୍ତି)
ବଚନେ (କଥାରେ) କରନ୍ତି ଗୁଣ୍ଡା ।

ଦୁଃଖିନୀ ବୋହୂ କହୁଛି ଶାଶୁଘରେ ତାକୁ କେହି ଗାଳି ଦିଅନ୍ତି ନାହିଁ କିମ୍ବା ମାଡ଼ ମଧ ମାରନ୍ତି ନାହିଁ । କିନ୍ତୁ ଶାଶୁ ଓ ଶାଶୁଘରର ଲୋକମାନେ ଏପରି କଥା କହନ୍ତି ଯେ ସେଥିରେ ମର୍ମ ଗୁଣ୍ଡା ହୋଇଯାଏ । ଗାଳି ,ମାଡ଼ ଠାରୁ ଏହା ବେଶୀ କଷ୍ଟକର ।

୩୧୩୧. ଉଷୁମ ପାଣିରେ ଘର ପୋଡ଼ିବା ।- ଅସମ୍ଭବ କଥା ।

୩୧୩୨. ଉରୁ ସରୁ ,ମୋଟା ଅଣ୍ଟା,
ନଳି ଗୋଡ଼ର ରୋମ କଣ୍ଟା କଣ୍ଟା
ଉଚ୍ଚକପାଳି,କଇଁରୀ ଆଖି ( କହଁରା ଆଖି /ଚିଲ ଆଖିଆ)
କନ୍ୟା ନକର ଏସବୁ ଦେଖି ।

ପୂର୍ବେ ଆମ ସମାଜରେ ଅଲକ୍ଷଣୀ କନ୍ୟାର ଏହିପରି ଦୁର୍ଲକ୍ଷଣ ଥିଲେ କନ୍ୟାକୁ ବୋହୂ କରିବ ନାହିଁ ବୋଲି ଲୋକ ବିଶ୍ୱାସ ଥିଲା । ଏହା ସଂମ୍ପୂର୍ଣ୍ଣ ଅନ୍ଧ ବିଶ୍ୱାସ ।

୩୧୩୩. ଉରସ ଭେଦି ରକ୍ତ ବହେ
ଆଖିଫୁଟିଲା ବୋଲି କୁହେ ।

ହୃଦୟ ବିଦାରକ ଯନ୍ତ୍ରଣା ଫଳରେ ମନୁଷ୍ୟର ଚକ୍ଷୁ ଆପେ ଆପେ ମୁଦି ହୋଇ ଯାଏ । ପ୍ରବାଦଟି ଏହି କ୍ଷେତ୍ରରେ ପ୍ରଯୁକ୍ତ ।

୩୧୩୪. ଉଷୁନା ଧାନ କୁଲେଇ
ରାଜାଘର ଦୋଳି ବଡ଼ ଉଡ଼ଇ
ଗଡିଛି ଟୋକା ବଢେଇ ।

୩୧୩୫. ଉଷୁନା ଚାଉଳ ମଣ୍ଡା ,
ଗାଳି ନଦେବି ମାଡ଼ ନ ମାରିବି ,

ବଚନେ କରିବି ଥଣ୍ଡା ।

କଥାରେ ସ୍ତ୍ରୀକୁ ଶାସନ କରିବା ବିଧେୟ । ସ୍ତ୍ରୀକୁ ଗାଳି ମନ୍ଦ କରିବା ଓ ମାଡ଼ ମାରିବା ଲକ୍ଷ୍ମୀଛଡ଼ା ପ୍ରକୃତିବୋଲି ଅଭିହିତ ହୁଏ ।

୩୧୩୬. ଉତ୍ସାହରେ ପାଣି ପଡ଼ିବା ।

କୌଣସି କାରଣ ପାଇଁ ଉତ୍ସାହର ପରିସମାପ୍ତି । ଯେପରି କଲେଜରେ ଏଡ଼ମିଶନ ନପାଇବାରୁ ମୋର ଉତ୍ସାହରେ ପାଣି ପଡ଼ିଲା ।

୩୧୩୭. ଉଲ୍ଲୁ (=ବୋକା) ବନେଇବା ।

୩୧୩୮. ଉଲ୍ଲି ଉଲ୍ଲି ବଉଳୀରେ
ଛବିଳ ସାଏକେ ,ବାଜିଲା ଗୁଳି
କୁଡ଼ୋପାଲିର ମଝାଖୁର୍ଲିରେ ।

ବୀର ସୁରେନ୍ଦ୍ର ସାଏ ଓ ତାଙ୍କ ପିତୃବ୍ୟ ବଳରାମସିଂହ ବହୁ ଜମିଦାର ଓ ଗୌନ୍ତିଆମାନଙ୍କର ସାହାଯ୍ୟ ଓ ସହଯୋଗ ପାଇ ଇଂରେଜମାନଙ୍କ ବିରୁଦ୍ଧରେ ପ୍ରଥମ ସ୍ୱାଧୀନତା ସଂଗ୍ରାମ ଆରମ୍ଭ କରିଥିଲେ । ତାଙ୍କ ସହିତ ଇଂରେଜ ମାନଙ୍କର ସମ୍ବଲପୁରର ବୁଢା ରଜା ପାହାଡ଼ ପାଖରେ ଘମାଘୋଟ ଲଢେଇ ହେଲା । ଇଂରେଜମାନଙ୍କର ତୋପ ବନ୍ଧୁକ ଆଗରେ ସୁରେନ୍ଦ୍ରଙ୍କ ସେନା ପ୍ରାଣମୂର୍ଚ୍ଛା ଲଢି ଶେଷରେ ଛତ୍ରଭଙ୍ଗ ଦେବାକୁ ବାଧ ହେଲେ। ସୁରେନ୍ଦ୍ର ତାଙ୍କ ଭ୍ରାତା ଉଦନ୍ତ ଓ ବଳରାମ ସିଂ ,ଇଂରେଜ ଶାସକଙ୍କ ଦ୍ୱାରା ବନ୍ଦୀ ହୋଇ ହାଜାରୀବାଗ୍ ଜେଲକୁ ପ୍ରେରିତ ହେଲେ । ୧୮୫୭ ମିହାରେ ସିପାହୀ ବିଦ୍ରୋହ ହେଲା । ବିଦ୍ରୋହୀ ସିପାହୀମାନେ ହାଜାରୀବାଗ୍ ଜେଲଖାନା ଭାଙ୍ଗି ଜୁଲାଇ ୩୦ ତାରିଖ ଦିନ ବନ୍ଦୀମାନଙ୍କୁ ମୁକ୍ତ କରିଦେଲେ । ଜେଲରେ ବଳରାମ ସିଂହଙ୍କର ମୃତ୍ୟୁ ଘଟିଥିଲା । ସୁରେନ୍ଦ୍ର ଓ ଉଦନ୍ତ ଜେଲଖାନାରୁ ମୁକ୍ତ ହୋଇ ୧୮୫୭ ଅକ୍ଟୋବର ୭ ତାରିକ ସକାଳ ୮ଟା ବେଳେ ସମ୍ବଲପୁର ରେ ପଦାର୍ପଣ କଲେ । ତା ୩୦-୧୦-୧୮୫୭ ଦିନ ଏକ ବିରାଟ ସାଧାରଣ ସଭାରେ ଇଂରେଜ- ମାନଙ୍କ ବିରୁଦ୍ଧରେ ସଶସ୍ତ୍ର ସଂଗ୍ରାମ ଚାଲୁ କରିବା ପାଇଁ ସୁରେନ୍ଦ୍ର ସମ୍ବଲପୁର ଠାରେ ଘୋଷଣା କଲେ । ତା ପରେ ଜଙ୍ଗଲ ମଧ୍ୟରେ ଲୁଚି ଛପି ଗରିଲା ପ୍ରଣାଳୀରେ ଦୀର୍ଘଦିନ ଧରି ଯୁଦ୍ଧ କରି ଇଂରେଜ ସରକାରଙ୍କୁ ଅସ୍ତବ୍ୟସ୍ତ କରିପକାଇଲେ । ସୁରେନ୍ଦ୍ର ଏହି ବିପ୍ଲବ ବର -ପାହାଡ଼ର ଡ଼େବ୍ରିଗଡ଼ ଘାଟୀରୁ ପରିଚାଳନା କରୁଥିଲେ । ଏକ ଛୋଟ ପାହାଡ଼ ଉପରେ ଅବସ୍ଥିତ 'କୁଡ଼ୋପାଲି' ବିଦ୍ରୋହୀ-

ମାନଙ୍କର ମୁଖ୍ୟ ସାମରିକ କେନ୍ଦ୍ର ଥିଲା । ତା ୨୮-୧୨-୧୮୫୭ ଦିନ କେପ୍‌ଟେନ୍ ଉଡ୍ ଏକ ଅଶ୍ୱାରୋହୀ ସେନାବାହିନୀ ସହ ନାଗପୁରରୁ ବାହାରି ୨୯-୧୨-୧୮୫୭ ଦିନ ସମ୍ବଲପୁରରେ ସମସ୍ତ ବାଧାବିଘ୍ନ ହଟାଇ ପହଞ୍ଚିଲେ । ତା ପରଦିନ ଡ଼ିସେମ୍ବର ୩୦ ତାରିକରେ 'କୁଡ଼ୋପାଲିକୁ' ସେମାନେ ଅତର୍କିତ ଭାବରେ ଆକ୍ରମଣକରି ସୁରେନ୍ଦ୍ର ସାଏଙ୍କ ଭାଇ ଛବିଳ ସାଏଙ୍କୁ 'କୁଡ଼ୋପାଲି' ଯୁଦ୍ଧରେ ପଛପଟୁ ଗୁଳିକରି ହତ୍ୟା କରିଥିଲେ ।

ଏହି ଘଟଣାର ସ୍ମୃତି ବହନ କରି ଗ୍ରାମ୍ୟ କୁମାର କୁମାରୀମାନଙ୍କ କଣ୍ଠରେ ନିମ୍ନୋକ୍ତ ବଉଳୀ ଗୀତଟି ଏବେବି ଝଙ୍କୃତ ହୁଏ ।

୩୧୩୯.    ଉଲ୍ଲି ଉଲ୍ଲି, ଉଲ୍ଲଇ ଉଲ୍ଲି ବଉଳୀରେ
ଛବିଳ ସାଏକେ ବାଜିଲା ଗୁଲି
ଛବିଳ ସାଏକେ ବାଜିଲା ଗୁଲି
କୁଡ଼ୋପାଲିର ମଝାଖୁଁଲି ବଉଳୀରେ
କୁଡ଼ୋପାଲିର ମଝାଖୁଁଲିରେ ।

ସମୟକ୍ରମେ ଏହି ଗୀତଟି ସମ୍ବଲପୁରର ଲୌକିକ ପ୍ରବାଦରେ ପରିଣତହୋଇ ଅତୀତର ମୁକ୍ତି ସଂଗ୍ରାମୀଙ୍କ କଥା ସ୍ମରଣ କରାଇ ଦିଏ ।

୩୧୪୦.    ଉଲଟା ଗଧଚଢା(ଦଣ୍ଡ) ।

ମରହଟ୍ଟା ଅମଳରେ ପ୍ରଚଳିତ ରାଜ ଦଣ୍ଡ । ଚଢାଳିର ପିଠି ଗଧର ମୁଁହ ଆଡ଼କୁ କରି ଗଧ ଉପରେ ଚଢିବା ।

୩୧୪୧.    ଉଲୁପୀ ସୁଲୁପୀ । - ସବୁବେଳେ ସାଙ୍ଗ ହେବା ଦୁଇ ବାଳିକା ।

୩୧୪୨.    ଉଲୁପୀ ,ସୁଲୁପୀ, ବାଇଡ଼ଙ୍କ, ହାଣ୍ଡିକଳା,ପେଜନଳା,ଢଳଢଳା ।

ଏକାଠି ୫/୭ ଯୁବତୀଙ୍କୁ ଲକ୍ଷ୍ୟକରି ବର୍ଷୀୟସୀମାନେ ଏହ ବୋଲନ୍ତି ।

୩୧୪୩.    ଉଲୁରା ଘର ,ମୁକୁଳା ବାଳ ,ଏହା ନ ରଖିବ ବହୁତ କାଳ ।

ଘରର ଚାଳ କାଡିଦେବା ସଙ୍ଗେ ସଙ୍ଗେ ଛପର ନ କଲେ ବର୍ଷା ହୋଇ କାନ୍ଥ ନଷ୍ଟହୁଏ । କେଶ ଦୀର୍ଘକାଳ ମୁକୁଳା ରଖିଲେ ଯୁବତୀ ଓଢଣା ଦେଇପାରେ ନାହିଁ ଫଳରେ ମର୍ଯ୍ୟାଦା ହାନୀ ଘଟେ ଓ ତା ଉପରେ କୁ- ଦୃଷ୍ଟି ପଡ଼ିଥାଏ ।

୩୧୪୪.    ଉଲାରିଲା ଘର (=ଉଲୁରା ଘର ) ,ମଙ୍ଗୁଳିଲା ବର ,
ଯାକୁ ନରଖି ବ ବହୁତ କାଳ ।

ମଙ୍ଗୁଳିଲା ବରକନ୍ୟାକୁ ବିଭା ନ କରାଇ ରଖିବା କ୍ଷତି କାରକ ବୋଲି କଥାରେ ଅଛି ।

୩୧୪୫.    ଉଲିଆ ଗାଈ ,ବଉଁଶ (=ବଂଶ) ଖାଇ ।

ଓଲିଆ ଗାଈମାଲିକକୁ ନା ନା ବିପଦରେ ପକାଏ ଓ କ୍ଷତି ଘଟାଏ ।

୩୧୪୬.    ଉଲ୍ଲୁ କା ପଠ୍ଠା । - ଗଢ ମୂର୍ଖ ।

୩୧୪୭.    ଉଟୁଲ ଟୁଲିଆ । -ଟଳଟଳ ହେଉଥିବା ।

୩୧୪୮.    ଉଟୁସ୍ ପୁଟସ୍ ଲାଗିବା । - ବହୁତ ଖାଇବା ହେତୁ ଶ୍ୱାସରୋଧ ପରି ଲାଗିବା ।

୩୧୪୯.    ଉଜୁଡ଼ି ଯିବା ।- ବରବାଦ ହେବା ।

୩୧୫୦.    ଉଜାଡ଼ ବଣରେ ବିଲୁଆ ରଜା ।

ଉଜାଡ଼ ବଣରେ ବିଲୁଆ ରାଜା ହେଲା ପରି ଅଯୋଗ୍ୟ ସ୍ଥାନରେ ଅଯୋଗ୍ୟ ବ୍ୟକ୍ତି ହିଁ ଯୋଗ୍ୟ ବ୍ୟକ୍ତିର ସମ୍ମାନ ଲାଭ କରିଥାଏ ।

୩୧୫୧. ଉଜଳ ଅବନୀ ଆଲୋ ପୀନସ୍ତନୀ (= ସ୍ଥୂଳସ୍ତନ)
ଏହି ନିଶିରେ ଉଇଁଲେ
ହେମାଙ୍ଗୀ ତୋ ଭାବ ମନରେ ପଡ଼ିଲା
ଅରୁଣ ଉଦୟ ହେଲେ ।
ଚମକି ପଡ଼ିଲି ସପନେ ମୁଁ ନାଥ
ନିବି.ବନ୍ଧେ (=ନିବିଡ଼ ବନ୍ଧନ) ଦେଲି କର
ଚଞ୍ଚଳ ନୟନୁ କଜଳ ଲିଭିଲା
ବହିଣ ଲୋତକ ଧାର ।

୩୧୫୨. ଉତ୍ତମଂ ସ୍ୱାର୍ଜିତ ବିତ୍ତଂ,
ମଧ୍ୟମଂ ପିତ୍ରୁରର୍ଜିତ,
ଅଧମ ଭାତୃ ବିତ୍ତଂଚ,
ସ୍ତ୍ରୀ ବିତ୍ତମଧମାଧମମ୍ ।

ପଣ୍ଡିତ ନୀଳକଣ୍ଠ ,ପିତାଙ୍କର ଧନାଢ୍ୟ ବ୍ୟକ୍ତିର କନ୍ୟାର ବିବାହ ପ୍ରସ୍ତାବର ଯୌତୁକକୁ ପ୍ରତ୍ୟାଖ୍ୟାନ କରି ଏହି ପଦଟି କହିଥିଲେ । ସ୍ତ୍ରୀ ଜନିତ ଯୌତୁକ ଧନ /ବିତ୍ତ ଅଧମରୁ ଅଧମତର । ଭାଇର ଧନ ଅଧମ ,ପିତାଙ୍କର ଅର୍ଜିତ ଧନ ମଧ୍ୟମ ,ସ୍ୱ-ଉପାର୍ଜିତ ଧନ ସବୁଠାରୁ ଶ୍ରେଷ୍ଠ ଅଟେ ।

୩୧୫୩. ଉଭାତାଳ ,ପୋତା ଶାଳ,ରୁଅ ହେନ୍ତାଳ ,ଗଣ୍ଠି ବେତାଳ ,
ଘରଣୀ ଚେତାଳ ,ତେବେ ସେ ଘର ରହେ (ଯାଏ) ଅପାର କାଳ ।

ତାଳଗଛର ମଞ୍ଜକୁ ପୋତିଲେ ତାକୁ ମାଟି ଖାଇଯାଏ । ଏହା ଛେଣୀ ରୂପେ ବ୍ୟବହୃତହେବା ଭଲ । ଶାଳକାଠକୁ ମାଟି ଖାଏନାହିଁ ତେଣୁ ଶାଳକାଠ ଖୁଣ୍ଟ ବସିଲେ ଘରର ଭାର ଲସି ଯାଏ ନାହିଁ । ହେନ୍ତାଳର ରୁଅ ଓ ବେତ ଗଣ୍ଠି ବ୍ୟବହୃତ ହେଲେ ଘର ଟାଣ ରହେ । କିନ୍ତୁ ଏସବୁ ଥାଇ ଘରଣୀ ଯଦି ତୀକ୍ଷ୍ଣ ଦୃଷ୍ଟିସମ୍ପନ୍ନ ହୁଅନ୍ତି ଅର୍ଥାତ୍ ଚେତନାଶୀଳ ରହନ୍ତି ତାହାହେଲେ ଘର ତଥା ପରିବାରର ଉତ୍ତରୋତ୍ତର ଉନ୍ନତି ହୋଇଥାଏ ।

୩୧୫୪. ଉତ୍ତମ ପରିବା ସୁସିଝା କରବା
(= ଖାଦ୍ୟ ଆଳୁ ପରି ଏକ ମୂଳ,ଶିଝାଇ ଖିଆଯାଏ)
ଯାହା ମା' ରାନ୍ଧିଜାଣେ ତା ଝିଅକୁ ବରିବା ।

'କରବା' ଏକ ଭଲ ପରିବା ,ସେହିପରି ଯାହାର ମା' ରାନ୍ଧିଜାଣେ ତା ଝିଅ ମଧ୍ୟ ଭଲ ରାନ୍ଧିଜାଣେ, ତେଣୁ ସେପରି ଝିଅକୁ ବାହାକରେଇବା ଭଲ ।

୩୧୫୫. ଉନ୍ନକା କ୍ଷେତ୍, ଉନ୍ନକା ଗାଈ

କୌନ ପାପୀ ହାଙ୍ଗାନେ ଯାଇ,
ଉନ୍‌କି କ୍ଷେତି, ଉନ୍‌କି ଗାଏ,
ଆଜବ୍ ପାପୀ ହାଙ୍କନେ ଯାଏ ।

ପରକ୍ଷେତ ପର ଗାଈ ଖାଇଲା । ପରକ୍ଷେତରୁ ପର ଗାଈକୁ ଅଡ଼େଇ ଦେବା ମୋର ଦରକାର ନୁହେଁ । ମୁଁ କିଆଁ ଗାଈର ଦାନାମାରି ପାପ ଅର୍ଜିବି ?

୩୧୫୬. ଉଲଟ ଦେଶେ ଖେଳୁଛି ଲୋଟଣି ପାରା
ଅଠାକାଠି ପଞ୍ଜୁରୀରେ ନ ପଡ଼େ ଧରା ।

# ପୁରୀ ବୋଲି

୩୧୫୭. ଏହି ପେଟ
ଏହି ପେଟ ଲାଗି ବଙ୍ଗଳା ବାଟ ।

ପୁରୀରେ ବାଟକୁ ଯିବା ଅର୍ଥ ବିଦେଶ ବା ଦୂରବର୍ତ୍ତୀ ସ୍ଥାନକୁ ଯାତ୍ରୀ ସଂଗ୍ରହ ନିମନ୍ତେ ଯିବା । ପୁରୀକୁ ରେଳପଥ ନଥିଲା ସମୟରେ ଅଧିକାଂଶ ଯାତ୍ରୀଗୁମାସ୍ତା ବଙ୍ଗଦେଶକୁ ଯାଉଥିବାରୁ ଏମାନଙ୍କ ପରିଭ୍ରମଣାର୍ଥ ବିଦେଶ ବାସକୁ ବଙ୍ଗଳାବାଟ ବୋଲି କୁହାଯାଇଛି ।

୩୧୫୮. ଏଁ ନାଇଁ ଗାମାଟେ ।
ଧିଅରେ ପଛେ କାୟା ନାଇଁ, କହୁଚି ନଡ଼ିବ
ଫୁଙ୍କିଦେଲେ ଅଠର ନଳାଟି ପଡ଼ିବ ।
ଭିପ କାଠି ତୋର ବାହାର କରୁଚି ।

ମଲ୍ଲବୀର ବା ପହିଲମାନ ଭାବରେ ଏକଦା ଖ୍ୟାତି ଅର୍ଜନ କରିଥିଲେ ଗୁଲାମ ମହମ୍ମଦ ଡାକ ନାମ ଗାମା (ଖ୍ରୀ:୧୮୮୨) ପୁରୀର ଏହି କିମ୍ବଦନ୍ତୀ ପୁରୁଷକୁ ନେଇ ଏହି ବୋଲିଟି ପ୍ରଚଳିତ ।

୩୧୫୯. ଏଁ ନେତା !
ନେତା ମୁଣ୍ଡେଇବ ବେତା ।

ପୁରୀର ଅଧିକାଂଶ ଲୋକେ ଖିଆଲି, ବେପରୁଆ, ରକ୍ଷଣଶୀଳ ଓ ଅନେକାଂଶରେ ଅକୃତ୍ରିମ । ଏମାନେ ଭୋଗବାଦୀ । ଶ୍ରୀକ୍ଷେତ୍ର ଓ ଶ୍ରୀମନ୍ଦିର ଅର୍ଥୋପାର୍ଜନର ଏକ ପ୍ରତିଶ୍ରୁତି ପତ୍ର । ଶ୍ରୀଜଗନ୍ନାଥଙ୍କ ଛତ୍ରଛାୟାଶ୍ରୀତ ଏମାନେ । ଧନାଢ଼୍ୟ ଓ କ୍ଷମତାସୀନର ଗାରିମା ଏମାନେ ସହ୍ୟ କରିପାରନ୍ତି ନାହିଁ । ଏହି ଉକ୍ତିଟି କ୍ଷମତାସୀନ ବ୍ୟକ୍ତିଙ୍କର ଉଦ୍ଦେଶ୍ୟରେ ଶାଣିତ କଟାକ୍ଷ ।

୩୧୬୦. - *ଏକାର୍ଥରେ* - ମାଲିକ କିଏ ମ ବାଇ !
ମଲିକ ତ ତୋମାକ ବଡ଼ଦେଉଳରେ ।

୩୧୬୧. - *ଏହନ* - ମାଲିକ ତ ଦାମା କାଚରା (= କାଚ ବ୍ୟବସାୟ)

୩୧୬୨. ଏମ୍ତି ଏମ୍ତି
ମଲ୍ଲୀଫୁଲିଆ ନିଶାରେ
ପାହି ଯାଏ ରାତି ।

ପୁରୀରେ କୋମଳ ଭାଙ୍ଗନିଶାକୁ ମଲ୍ଲୀଫୁଲିଆ ନିଶା କହନ୍ତି ।

୩୧୬୩. ଏମାର ହାଣ୍ଡି ।

ଦୁଇ ସେରିଆ (=ଦେଢ଼କେଜି) ଚାଉଳର ଅନ୍ନ ମହାପ୍ରସାଦ ଦେବା ଭଳି ହାଣ୍ଡି

୩୧୬୪. ଐନ୍ଦ୍ରବାରୁଣିକା । - କଇଁଚି କାକୁଡ଼ି ।

୩୧୬୫. ଉଲିଆ ପଣିଆଁ । - ଖାଦ୍ୟଦ୍ରବ୍ୟ ପ୍ରତି ଅତିମାତ୍ରାରେ ଲାଳସା ।

୩୧୬୬. ଉଲିଆ ଛାଡ଼ିବା / ଉଲି ଛାଡ଼ିବା । - ଲାଳସା ନିବୃତ୍ତି ।

୩୧୬୭. ଉଲୁକୁ ପାତିଆ ।- ଅତ୍ୟାଚାରୀ ,ଅଥୟ ,ଉଚ୍ଛୃଙ୍ଖଳ ।

୩୧୬୮. ଉଲମ୍ ବିଲମ୍ ।-ଓଲଟ ପାଲଟ ,ଗୋଳମାଳ,ଅନିୟମିତ ।

୩୧୬୯. ଉଲାଗି ।-ବଡ଼ଠାକୁରଙ୍କର ବେଶପୋଷାକ ମାଳଚୂଳ ଆଦି କଢାଯିବା ।

୩୧୭୦. ଉଲ୍ଲାଖ /ଉଲାଖ-କନା ।

ଶ୍ରୀ ନଅରକୁ ଯିବା ବାଟରେ ବନ୍ଧାଯାଇଥିବା କନା ବିଶେଷ । ପାଟଛତ୍ରରେ ଖଞ୍ଜାଯାଇ ଲମ୍ବିଥିବା କନା ବିଶେଷ ।

୩୧୭୧. ଉତୁରୀ । - ଉତ୍ତରୀୟ ।

୩୧୭୨. ଉତ୍ତର ପାର୍ଶ୍ୱ ରୋଷ । - ଶ୍ରୀମନ୍ଦିର ରୋଷ ମଧ୍ୟରେ ଉତ୍ତର ପାର୍ଶ୍ୱମଠର ରୋଷ

୩୧୭୩. ଉଦିଷ୍ଠାଣି । - ବଡ଼ ଦେଉଳ (ଶ୍ରୀମନ୍ଦିର) ଉପରେ ଥିବା କଳଶ ।

ଶୋଚନୀୟ ପରିଣତି ପାଇଁ ସେମାନଙ୍କୁ ଭର୍ତ୍ସନା କରାଯାଇଛି ।

୩୧୭୪. ସାଗ୍ରୀ -ଚାନ୍ଦୁଆ ।

କାଞ୍ଚୁଲି ବିଶେଷ ଭାଦ୍ରବ ପୂର୍ଣ୍ଣମାଦିନ ଇନ୍ଦ୍ର ଗୋବିନ୍ଦ ପୂଜାରେ ବ୍ୟବହୃତ ହୁଏ ।

୩୧୭୫. ଇନ୍ଦ୍ରଦ୍ୟମ୍ନ ।

ଇନ୍ଦ୍ରଙ୍କ ଭଳି ତେଜୀୟାନ୍ ଓ ଶକ୍ତିଶାଳୀ ଉତ୍କଳର ଜଣେ ନରପତି ଯେକି ଶ୍ରୀ ଜଗନ୍ନାଥ ମନ୍ଦିରର ପ୍ରତିଷ୍ଠାତା । ଇନ୍ଦ୍ରଦ୍ୟମ୍ନଙ୍କ ନାମରେ ଏକ ପୁଷ୍କରିଣୀ ରହିଛି । ମାର୍ଗଶୀର ଶୁକ୍ଳ ପ୍ରତିପଦ ଦିନ ଇନ୍ଦ୍ରଦ୍ୟମ୍ନଙ୍କ ନିମନ୍ତେ ଏକ ଶ୍ରାଦ୍ଧନୀତି କରାଯାଏ । କାରଣ ସେ ଶ୍ରୀ ଜଗନ୍ନାଥଙ୍କୁ ଶ୍ରୀମନ୍ଦିରରେ ପ୍ରତିଷ୍ଠା କରାଇ ତାଙ୍କର ବଂଶ ତାଙ୍କ ଅନ୍ତେ ଲୁପ୍ତ ହେଉ ବୋଲି ବର ପ୍ରାପ୍ତ ହୋଇଥିଲେ । ଭୋଇ ବଂଶର ପ୍ରଥମ ରାମଚନ୍ଦ୍ର ଦେବ ଶ୍ରୀ ଜଗନ୍ନାଥଙ୍କ ମୂର୍ତ୍ତି ପୁନଃ ପ୍ରତିଷ୍ଠା ଓ ସଙ୍ଖୁଡ଼ି ଭୋଗର ପୁନଃ ପ୍ରବର୍ତ୍ତନ ପାଇଁ ତାଙ୍କୁ ' ଦୁତୀ/ଦ୍ୱିତୀୟ ଇନ୍ଦ୍ରଦ୍ୟମ୍ନ' ବା ନବିନ ଇନ୍ଦ୍ରଦ୍ୟମ୍ନ' ବା 'ଅଭିନବ ଇନ୍ଦ୍ରଦ୍ୟୁମ୍ନ' ବୋଲି କୁହାଯାଏ ।

୩୧୭୬. ଇନ୍ଦ୍ରଧ୍ୱଜ ।

ଭାଦ୍ରବ ଶୁକ୍ଳ ଦ୍ୱାଦଶୀ ସୁନିଆଁ ଦିନ ଇନ୍ଦ୍ରଧ୍ୱଜ ପୂଜା ହୁଏ । ଏହା ଏକ ସୁରକ୍ଷା କବଚ ରଙ୍ଗମଞ୍ଚ ଆଗରେ ଜର୍ଜର ଦଣ୍ଡ ବା ଇନ୍ଦ୍ରଧ୍ୱନି ସ୍ଥାପନର ବିଧି ରହିଛି । କୁହାଯାଏଯେ -

" ରାଜା ଏପରି ପୂଜେ ଦେବ ପୁରନ୍ଦର ସସାଗରା ବସୁନ୍ଧରା ହେବ ସେ ଈଶ୍ୱର " ।

୩୧୭୭. ଇନ୍ଦ୍ରନୀଳମଣି ପୁରାଣ ।

ଦଇତାଙ୍କ ଏକ କୌଳିକ ପୋଥି । ଏହା ସଂସ୍କୃତରେ ରଚିତ । ଏଯାବତ୍ ଅପ୍ରକାଶିତ ।

୩୧୭୮. ଇନ୍ଦ୍ରହାତୀ ।

ଭାଦ୍ରବ ପୂର୍ଣ୍ଣମା ଦିନ ଇନ୍ଦ୍ରଗୋବିନ୍ଦ ପୂଜାରେ ବାସେଳି ସାହୁ ହାତୀ ବେଶରେ ଜଣେ ବ୍ୟକ୍ତି ।

୩୧୭୯. ଇମାର ହାଣ୍ଡି ।

ଏ ହାଣ୍ଡିରେ ପୂର୍ବେ ଏମାର ମଠର ଅନ୍ନ ରହୁଥିଲା ।

( ଦୁଇକିଲୋ ଚାଉଳର ଅନ୍ନ ମହାପ୍ରସାଦ ରହିବା ଭଳି ହାଣ୍ଡି )

୩୧୮୦. ଇନ୍ଦ୍ର ଗୋବିନ୍ଦ ଚାନ୍ଦୁଆ ।

ଏକ ପ୍ରକାର ଉତ୍କୃଷ୍ଟ କାର୍ଯ୍ୟ ଖଚିତ ଦୋରଙ୍ଗାକନାର ଚାନ୍ଦୁଆ ।

(୧) ଉଡ଼ାସିଂହ- ଦେଉଳ ଅଗ୍ର ଭାଗରେ ଥିବା ଉଡ଼ନ୍ତା ସିଂହ ।
(୨) ଉଚ୍ଛନ୍ନ - ନଷ୍ଟ ଭ୍ରଷ୍ଟ -
(୩) ଓହୋରି- ଅଧିକ
(୪) ଉଜ- ପ୍ରତିଷ୍ଠା
(୫) ଇଟିକାର- ଅସ୍ତ୍ରଧାରୀ
(୬) ଏସ୍ଥଧର- ଅବଶିଷ୍ଟ
(୭) ଉଚ୍ଛାଦି- ବାଦଯାଇ
(୮) ଓଲାବନ୍ଦି - ନଅର ଘରୁ
(୯) ଉଣା- କମ
(୧୦) ଉହାଡ଼ିଲେ - ଲୁଚାଇଲେ
(୧୧) ଉତାଳ-ଥାଡୁଆଳ
(୧୨) ଉଚ୍ଛୁଡ଼ି- ଛଡ଼ାଇ
(୧୩) ଉଞ୍ଚୁନୁଣି- ଲୁଣିଆ
(୧୪) ଋଷଭ- ବୃଷ .
(୧୫) ଏ ଉଭାରୁ - ଏହାପରେ ।

(୧୬) ଉତ୍‌ପତି- ଉତ୍ପତ୍ତି
(୧୭) ଏଥୁଂ-ଏଥୁ
(୧୮) ଉପୁଜାଇ-- ଜାତ କରି
(୧୯) ଉପସ୍ଥ- ପୁରୁଷର ଇନ୍ଦ୍ରିୟ ବା ଲିଙ୍ଗ
(୨୦) ଏକଛତ୍ର- ଦିଗ୍ ବିଜୟ
(୨୧) ଉଲ୍ଲର- ଗୋଳମାଳ
(୨୨) ଇନ୍ଦ୍ରହାତୀ- ପୃଥୁଳ
(୨୩) ଉଦିଷ୍ଟାଣି - ଶୁଭ ଯୋଗ
(୨୪) ଉଦିଷ୍ଟାଣି-ଉତ୍ସାହ ଓ ପ୍ରେରଣା
(୨୫) ଉଦୁନଙ୍ଗଳା- ସମ୍ପୂର୍ଣ୍ଣ ଉଲଗ୍ନ ।

୩୧୮୧. ଇଲେଇତି- ମଧୁର ଭର୍ତ୍ସନା କରିବା ,ଅପ୍ରସ୍ତୁତ ଅବସ୍ଥାରେ ପଡ଼ିବା

୩୧୮୨. ଉଆଁସ ଦାଣ୍ଡ ।

ବାଲି ସାହି ଦାଣ୍ଡ । ଏହି ଦାଣ୍ଡ ବାଟଦେଇ ଅମାବାସ୍ୟାରେ ଅମାବାସ୍ୟା-ନାରାୟଣ ସାଗରକୁ ବିଜେ କରୁଥିଲେ ।

୩୧୮୩. ଉଗ୍ରବେଳା ।- କାମୋତ୍ତେଜିତ,ନିଶାରେ ଉନ୍ମତ୍ତ ,କ୍ଷୁଧାର୍ତ୍ତ ଅବସ୍ଥା ।

୩୧୮୪. ଉଡ଼ିଆ-ଉଡ଼େଇ ହୋଇ ଆସିବା ।

ରାଜିରୁଜାହୋଇ ପୁରୁଷ ଓ ନାରୀ ସ୍ଥାନାନ୍ତର ଯିବା ।

୩୧୮୫. ଉଡ଼ିକରି ଆସିବା- ସଫଳ ହେବା ।

୩୧୮୬. ଉନ୍ମେଇ ବାଉଳି -ଯୌନୋନ୍ମାଦ ବ୍ୟକ୍ତି।(ଉନ୍ମେଇ ଯୌନର ପ୍ରତୀକ)

୩୧୮୭. ଏକା ଏକା ସେବକ ।

ଶ୍ରୀମନ୍ଦିରର କୌଣସି ଗୋଷ୍ଠୀ ମଧ୍ୟରେ ନଥାଇ ଏକା ସେବା କରୁଥିବା ବ୍ୟକ୍ତି ତଥା ଏକାକୀ ସେବକ ।

୩୧୮୮. ଏକାଦଶୀ ମହାପ୍ରଭୁ -

ଶ୍ରୀକ୍ଷେତ୍ରରେ ନିଶାତଳେ ସ୍ଥାପିତ ଏକ ଅତି କ୍ଷୁଦ୍ର ମନ୍ଦିରରେ ଉପାସିତ ପ୍ରତିମା । ଏହି ଠାକୁରଙ୍କ ମୂର୍ତ୍ତି ଉପରେ ସିନ୍ଦୁର ବୋଳାହୋଇ ତହିଁରେ ଦୁଇଟି ଆଖି ଥାପି ଦିଆହୋଇଥିବାରୁ ମୂର୍ତ୍ତିଙ୍କ ସ୍ୱରୂପ ଜାଣି ହୁଏ ନାହିଁ । କିମ୍ବଦନ୍ତୀ କୁହେ ଯେ ,ମୂର୍ତ୍ତିଙ୍କ ହାତ ଦୁଇଟି ପଛକୁ ଅଛି । କାରଣ ତାହା ବନ୍ଧା ହୋଇଛି । ଏକାଦଶୀ ମହାପ୍ରଭୁ ଶ୍ରୀକ୍ଷେତ୍ରରେ ହାରି ଯାଇଥିବାରୁ ତାଙ୍କୁ ବନ୍ଦୀ ଅବସ୍ଥାରେ ରଖାଯାଇଛି । ତେଣୁ ଏକାଦଶୀ ଦିନ ମହାପ୍ରସାଦ ସେବନଦ୍ୱାରା ଏକାଦଶୀବ୍ରତ ଭଙ୍ଗ ହୁଏ ନାହିଁ । ଏହା ମହାପ୍ରସାଦର ମହତ୍ତ୍ୱ ପ୍ରତିପାଦିତ କରେ ।

୩୧୮୯. ଏକାନ୍ତ ।

ଗୁରୁବାର ରାତ୍ରରେ ଲକ୍ଷ୍ମୀ ଓ ଶ୍ରୀଜଗନ୍ନାଥଙ୍କ ପ୍ରତୀକାତ୍ମକମିଳନରୀତି । ଗୁରୁବାର ଦିନ ଏକାଦଶୀ ପଡ଼ିଲେ ଓ କେତେକ ନିର୍ଦ୍ଦିଷ୍ଟ ଦିନରେ ଏକାନ୍ତ ମିଳନ ହୁଏ ନାହିଁ । 'ଏକାନ୍ତ' ଅର୍ଥାତ୍ ମିଳନଦିନ ସନ୍ଧ୍ୟାଧୂପ ପରେ ଲକ୍ଷ୍ମୀ ଓ ମଦନମୋହନ ଆଜ୍ଞାମାଳ ପାଇ ଝୁଲଣ ମଣ୍ଡପତଳେ ବିମାନରେ ବିଜେ କରନ୍ତି । ଏହାପରେ ଛାମୁଦିହୁଡ଼ି ,ଘଣ୍ଟଛତା ସହ ବିମାନ ନିଶାନ୍ନସିଂହଙ୍କ ପାଖରେ ଓହ୍ଲାଏ । ମହାଜନମାନେ ଏଠାରୁ ଉଭୟଙ୍କୁ ମହାଲକ୍ଷ୍ମୀ ମନ୍ଦିରକୁ ନିଅନ୍ତି । ସେଠାରେ ପୂଜା,ଆଳତି ଅକ୍ଷତ ବନ୍ଦାପନା ମାଧ୍ୟମରେ ଏହି ନୀତି ବଢେ ।

୩୧୯୦. ଏକା ଏକା ପହଣ୍ଡି ହେବା ।

ପୁରୀରେ ମଲ୍ଲୀ ଫୁଲିଆ ଭାଙ୍ଗ ନିଶା ଭୋଳରେ ନିଜକୁ ନିଜେ ଶ୍ରୀବିଗ୍ରହ ଭାବି ବଡ଼ ଦାଣ୍ଡରେ ଆପଣା ଖିଆଲ ଓ ଆପଣାବାଗରେ ଝୁଲିଝୁଲି ବୁଲନ୍ତି । ଯେଉଁମାନେ ଏପରି ହୁଅନ୍ତି ,ସେମାନଙ୍କ ପ୍ରତି ଏହି ବୋଲିଟି ପ୍ରୟୋଗ କରାଯାଏ ।

୩୧୯୧. ଏରା ପକ୍ଷୀ କେରା
କେରା ବାନ୍ଧେ ତୋରା ।

ପୁରୀର ନାଗାମାନଙ୍କର ପହରଣର ଏକ ଉପକରଣ ହେଲା - ଏରା ପକ୍ଷୀପରରେ ତିଆରି ଏକ ଆବରଣ ଯାହାକୁ 'କଳିଙ୍ଗ' କୁହାଯାଏ । ଏହା ବାହୁମୂଳକୁ ରକ୍ଷା କରେ । ପୁଣି କାନ୍ଧ ର ପହରଣ ହେଲା ପରତାରା ଅର୍ଥାତ୍ ବାଘଛାଲର ହୃଦା ଆକର୍ଷଣୀୟ ପହରଣ ପିନ୍ଧିବା ଲୋକ ପ୍ରତି ଏହି ପୁରୀ ବୋଲିଟି ପ୍ରୟୋଗ ହୁଏ ।

୩୧୯୨. ଐରାବତଂ ଗଜେନ୍ଦ୍ରାଣାଂ ନରାଣାଂ ଚନରାଧବପମ୍ ।

ଗଜମାନଙ୍କ ମଧ୍ୟରେ ମୁଁ ଶ୍ରେଷ୍ଠ ଐରାବତ । ନରମାନଙ୍କ ମଧ୍ୟରେ ଶ୍ରେଷ୍ଠ ନରାଧିପ ସଦୃଶ । ଏହା ଗୀତାରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଥିଲେ । ଅର୍ଥାତ୍ ଶାସକକୁ ଦେବତାର ସମ୍ମାନ ଦେବାର ବିଚାରଧାରା ସମାଜରେ ଅତି ପ୍ରାଚୀନ । ଈଶ୍ୱରତ୍ୱ ଓ ରାଜତ୍ୱର ସମୀକରଣ ପ୍ରକ୍ରିୟା ଫଳରେ ଈଶ୍ୱର ରାଜା ଓ ରାଜା ଈଶ୍ୱର ଭାବରେ ଚିହ୍ନିତ ହୁଅନ୍ତି । ଜଗନ୍ନାଥଙ୍କର ରାଜତ୍ୱ ଓ ଗଜପତିଙ୍କର ଦେବତ୍ୱ ଏହାର ଏକ ବିଶିଷ୍ଟ ଉଦାହରଣ । ତେଣୁ ଗଜପତିଙ୍କୁ ଠାକୁର ରାଜା ତଥା ଚ ଳନ୍ତି ବିଷ୍ଣୁ କୁହାଯାଏ ।

୩୧୯୩. ଓଝା ମହାରଣା ।

ଶ୍ରୀମନ୍ଦିରର କମାର ସେବକ । ମନ୍ଦିରର ସମସ୍ତ ଲୁହାକାମ ନିଜେ ଓ ଅନ୍ୟମାନଙ୍କ ସାହାଯ୍ୟ ନେଇ କରନ୍ତି । ବିମଳାଙ୍କ ତିନି ପୂଜାରେ ବଳି ଦିଅନ୍ତି । (ଓଝା ହେଉଛି ବଢେଇ କମାରଙ୍କ ସଂଜ୍ଞା)

୩୧୯୪. ଓଡ଼ିଆ ରୋଷ ।

ଶ୍ରୀ ମନ୍ଦିର ରୋଷ ପରିସରରେ ଓଡ଼ିଆମଠର ଏକ ରୋଷ ।

୩୧୯୫. ଓଡ଼ିଆଣୀ । - କଟି ମେଖଳା । ଓଡ଼ିଆ ଜାତିର ସ୍ତ୍ରୀ,ଶୁଦ୍ର ଜାତୀୟା ସ୍ତ୍ରୀ ।

୩୧୯୬. ଓତରା ।

ସେବକ ବିଶେଷ । ଏମାନେ ପ୍ରତିଦିନ ସକାଳେ ବୁଲି ଶ୍ରୀମନ୍ଦିରରେ କିଏ କେଉଁଠି ରହିଲା । ପଦାର୍ଥ ସବୁ ଠିକ ଭାବରେ ଲାଗୁଛିକି ନାହିଁ ତଦାରଖ କରିବେ । (ସଂପ୍ରତି ବିସ୍ମୃତ)

୩୧୯୭. ଓରିଆ ।– ଏକ ଘୃତାନ୍ନ ।

୩୧୯୮. ଓଳମାଳ ।– ବାହୁରେ ଓହଳା ଯାଉଥିବା ବସ୍ତ୍ରଖଣ୍ଡ ।

୩୧୯୯. ଓଲାର । – ଏକ ପ୍ରକାର ଛତ୍ର ।

୩୨୦୦. ଓଷୁଅ ।

ଝୁଣା ,ରାଶିତେଲ ଓ ପାଣିରେ ପ୍ରସ୍ତୁତ ଏକ ଅଠା । ସୁଦସୁଆର ଓଷୁଅ ପ୍ରସ୍ତୁତ କରନ୍ତି । ଏହା ଅଣସର ଓ ନବ କଳେବରରେ ଶ୍ରୀଅଙ୍ଗରେ ,ରାହୁରେଖା ଓ ଚିତାଲାଗିରେ ଶ୍ରୀମୁଖରେ ବ୍ୟବହୃତ ହୁଏ ।

୩୨୦୧. ଉଠରେ ଉଠରେ ଉତ୍କଳ ସନ୍ତାନ
ଉଠିବୁ ତୁ କେତେ ଦିନେ,
ପୂର୍ବ ଗୌରବ ପୂର୍ବ ମହିମା
ପଡ଼ିବ କି ତୋର ମନେ ।

୧୯୧୮ ମସିହାରେ ‘ ଦି ଓରିୟା’ ସମ୍ବାଦ ପତ୍ରର ଶିରୋନାମାରେ ମଧୁସୂଦନ ଦାସଙ୍କରଚିତ ପଦ ।

୩୨୦୨. ଉଠିଲା ମୂଳ ,ପତ୍ତନରୁ (= ମୂଳଦୁଆରୁ) ଜଣାପଡ଼େ ।

୩୨୦୩. *ଏକାର୍ଥରେ* – ତୁଳସୀ ଦୁଇ ପତ୍ରରୁ ବାସେ,
ବିଛୁଆତି ଦୁଇ ପତ୍ରରୁ କୁଣ୍ଢେଇ ହୁଏ ।

ଇଂରାଜୀରେ ଅନୁରୂପ ପ୍ରବାଦଟି ହେଲା - Morning shows the day.

୩୨୦୪. ଶାଶୁ କହୁଛି - ଉଠଲୋ ବୋହୂ ବଅସ (=ବସିବା) ।
ମୋର ଗୋଦର ଗୋଡ଼କୁ ଘଅସ ।
ବୋହୂ କହୁଛି - ଉଠିବି ନାହିଁ କି ବସିବି ନାହିଁ ।
ଗୋଦର ଗୋଡ଼କୁ ଘଷିବି ନାହିଁ ।

ଶାଶୁର ଆଦେଶ ଓ ବୋହୂର ଅବାଧତା,ଏବଂ ତଥାକଥିତ ଶାଶୁ ବୋହୂ ସମ୍ପର୍କ । ଉଭୟଙ୍କର ସଂଳାପରୁ ସୂଚିତ ହେଉଛି ।

୩୨୦୫. ଉଠିଲା ବଳଦ ଶୋଇଲା ଠେଇଁ,
ଉଠେଇବ କିଏ ଶୋଇଲେ ଚେଇଁ ।

୩୨୦୬. ଉଠା ଚୂଲି ଫଟା, ଅଠାଫଳ ଲଟା

ଧନଙ୍କ ପାଖରେ ରହିଛି ମନ
ପାଟ ସଙ୍ଗେ ଦେବ ମଠା ।

କନ୍ୟାର ବରପ୍ରତି ଆକର୍ଷଣ ଓ ପହିଲିପାକି ଯିବାବେଳେ ଦାମିକା ଦ୍ରବ୍ୟ ପାଇଁ ଅଳି କରିବା ।

୩୨୦୭. ଉଠି ଯାଉଥିଲି କୋପେ
ଧରି ପକାଇଲେ ପଣତ କାନି
ସବୁ ଦୋଷ ମାଫ୍ ଦିଅ ମୋତେ ।

ଦାମ୍ପତ୍ୟ ପ୍ରେମର ଚିତ୍ର । ସ୍ତ୍ରୀର ମାନ ଓ ସ୍ୱାମୀର ମାନଭଞ୍ଜନ ।

୩୨୦୮. ଉଠିଲେ ବୋଲନ୍ତି ଖୁମ୍ବ ଡ଼େରା ହୋଇଛି,
ଶୋଇଲେ ବୋଲନ୍ତି ଡିଙ୍କି ପଡ଼ିଛି,
ନଇଁଲେ ବୋଲନ୍ତି ଲାଠି ଗୋଡ଼ିଟା,
ବସିଲେ ବୋଲନ୍ତି ଚକା ପଥର ଏଟା ।
ହସିଲେ ବୋଲନ୍ତି ଦାରୀ ହେଲାଣି
କାନ୍ଦିଲେ ବୋଲନ୍ତି କିଏ ମଲାଣି ।
ପେଜ କଂସାଏ ଲୋ ଦିଅନ୍ତି ବାଢି,
ବୋଲନ୍ତି ଦେଉଳ ସରି ବସିଲା ମାଡ଼ି ।
ପେଜ କଂସାକ ଲୋ ଦିଶେ ଅଧିକ
ହଳଦୀ ମାଲପା(=ତେଲ) କଥା ତେଣିକି ରଖ ।

ବୋହୂ ଶାଶୁଘରକୁ ଆସିଲାମାତ୍ରେ ଶାଶୁ ନଣନ୍ଦ ଓ ଅନ୍ୟାନ୍ୟ ସ୍ତ୍ରୀଲୋକମାନଙ୍କର ଗଞ୍ଜଣା ଅତ୍ୟାଚାର ଆରମ୍ଭ ହୋଇଯାଏ ଏପରି ନିଦାରୁଣ ବ୍ୟବହାରରେ ଜର୍ଜରିତ ହୋଇ ବୋହୂ ନିଜ ବାପଘର ସ୍ନେହାସ୍ପଦମାନଙ୍କ ପାଖରେ କରୁଥିବା ବିଳାପ ।

୩୨୦୯. ଉଠ-ବସ ହେବା ।-ଉଠାବସାର କସରତ ,ହଇରାଣ, ଧାଁ ଧପଡ଼ ,ଦଣ୍ଡ ମଧ ।

୩୨୧୦. ଉଠିବା-ବସିବା ।- ଯିବା ଅସିବା, ସାଥିହେବା ।

୩୨୧୧. ଉଠା-ପଟକା - ଲଢେଇ ବା ଝଗଡ଼ା ।

୩୨୧୨. ଉଠିପଡ଼ି ମୁହଁ ଚାହିଁବା ।

ସକାଳୁ ଉଠି ସର୍ବ ପ୍ରଥମେ ଯାହାର ମୁହଁ ଚାହିଁବ ,ସେ ଦିନର ଭଲମନ୍ଦ ତାହାର ମୁହଁରୁହିଁ ସୂଚିତ ହୋଇଥାଏ ବୋଲି ଲୋକ ବିଶ୍ୱାସ ।

୩୨୧୩. ଉଠନ୍ତା ଯବାନି (=ଯୁବାକାଳ) ।

ଯେପରି କୁହାଯାଏ - ହେ ! ଯୁବକଗଣ ,ଉଠନ୍ତା ଯବାନିରେ କର୍ମତତ୍ପର ହୋଇ କିଛି କରିଯାଅ ।

୩୨୧୪. ଉଠିପଡ଼ି ଧାଇଁ ଥିବି (ଥେବି)

ସୁନ୍ଦର ବଦନ ଚାହିଁ ଥିବି (ଥେବି)।

କଷ୍ଟ ଓ ଦଣ୍ଡ ପାଇ ସୁଦ୍ଧା ପ୍ରମିକାକୁ ଛାଡ଼ିବାକୁ ନାରାଜ। ଏପରି ପ୍ରେମୋକ୍ତି ପ୍ରକାଶ କରୁଥିବା ବ୍ୟକ୍ତି।

୩୨୧୫. ଉଠରେ ବୁଢୀ ଦାନ୍ତୁନ କରୁ(=ଦାନ୍ତଘସୁ)
ବାସୀଭାତକୁ ହେତ(=ନାହିଁ) କରୁ
ନ ଯା ବୁଢୀ ପାଣି କେ,
କୁକୁଡ଼ା ଖାଇସି ଖୁଦକେ ,
ତୁଛା ତୁଛା ନିନ୍ଦା କରିବେ ଠେଙ୍ଗୁଆ ପିଲାମାନକେ।

୩୨୧୬. ଉଠ୍ ଦେଢ଼ଶୁର ପଳା, ମୁହଁରେ ଲାଗିବ କଳା।

ଦେଢ଼ ଶୁର ବୋହୂମାନଙ୍କ ପାଖରେ ସମ୍ମାନସ୍ପଦ। କିନ୍ତୁ ଦେଢ଼ଶୁର ହାଣ୍ଡିଶାଳ ଘରେ ଅର୍ଥାତ୍ ବୋହୂମାନଙ୍କ ପାଖରେ ନସର ପସର ହେଲେ, ବୋହୂମାନଙ୍କର ଅସୁବିଧା ହୁଏ। ଫଳରେ ବୋହୂମାନେ ଦେଢ଼ଶୁରର ଇଜ୍ଜତ ଉପରେ କାଳି ବୋଳିଦିଅନ୍ତି।

୩୨୧୭. ଉଠ୍ ଦେଢ଼ଶୁର ବାହାରକୁ
ନଳିଗୋଡ଼ୀ ଯିବେ ଘରକୁ।

ବୋହୂର ବିକଳାଙ୍ଗ ଅଙ୍ଗ ପ୍ରତି।

୩୨୧୮. ଉଠିଲେ ବାଇ ,ଦିନରେ ଧାଇଁ,
ଚଲୋ ଚାଚା ମକ୍କା ଯାଇ।

ସଂସାରିକ କର୍ମ ଓ ଜଞ୍ଜାଳ ମଧରେ ମନୁଷ୍ୟ ଶ୍ରାନ୍ତକ୍ଳାନ୍ତ ହୋଇ ଦେହର ଅବସାନ ଘଟିବା ପୂର୍ବରୁ କଷ୍ଟ ସ୍ୱୀକାରକରି ମକ୍କା ପରି ତୀର୍ଥସ୍ଥାନକୁଯାଇ ଈଶ୍ୱରଙ୍କର ଶରଣାପନ୍ନ ହେବା ବାଞ୍ଛନୀୟ

୩୨୧୯. ଉଠିଲେ ଚଷା ବ୍ରାହ୍ମଣ ଖାଏ।
ପଡ଼ିଲେ ଚଷା ଗୋରୁ ଖାଏ।

ଚଷାର ଉନ୍ନତି ଘଟିଲେ ,ସେ ବ୍ରାହ୍ମଣପୁରୋହିତକୁ ବି ମାନେ ନାହିଁ। ପୁଣି ଅବସ୍ଥାର ବୈଗୁଣ୍ୟ ଘଟିଲେ ସେ ଗୋରୁକୁ ମଧ ବିକ୍ରି କରି ଥାଏ। ଅନ୍ୟର୍ଥେ -ଚଷାମଲେ ତା ଘରେ ବ୍ରାହ୍ମଣ ଭୋଜନ ହୁଏ। ଚଷାର ଖରାପ ଯୋଗ ପଡ଼ିଲେ ତା ବଳଦ ମରିଯାଏ ବା ଅକର୍ମଣ୍ୟ ହୁଏ।

୩୨୨୦. ଉଠିଆ ପିଠିଆ -ପାଖାପାଖି ଜନ୍ମିଥିବା ଦୁଇ ସନ୍ତାନ ବା ଜ୍ୟେଷ୍ଠ ଓ କନିଷ୍ଠ।

୩୨୨୧. ଉଠୁଣ ବସୁଣ - ହର ଘଡ଼ି ,ସବୁବେଳେ।

୩୨୨୨. ଉଠିଲା ଗଛ ପତ୍ରରୁ ଜାଣି।

ପତ୍ର ଦେଖି ଉଠିଲା ଗଛ ଚିହ୍ନିଲା ପରି ପିଲା ଦିନରୁ ମଣିଷର ଭବିଷ୍ୟତ ଜାଣି ହୁଏ।

୩୨୨୩. ଉଠରେ ମଲୁ,ପଥ୍ କରିବୁ ,ଶିଳପୁଆ ଉଳି ଗୁଣ୍ଡା ବଳିବୁ ।

ଖାଇଲା ବେଳକୁ ଗେଫା ମାରିବା ,କାମ କଲାବେଳକୁ ରୋଗୀ ବୋଲି ଛଳନା କରିବା । ରୋଗୀ ଭାବରେ ସୁଖଭୋଗୁଥିବା ଅଳସୁଆ ଠକମାନଙ୍କ ପ୍ରତି ।

୩୨୨୪. ଉଠି ନପାରି ମାରେଙ୍ଗା (ମାରୁଙ୍ଗା)
ଛଡ଼ା ଡ଼ାଙ୍ଗ ବାଡ଼ି କରେଙ୍ଗା ।

ମୁହଁ ଖୋର ଲୋକ ପ୍ରତି ବିଦ୍ରୁପ ।

୩୨୨୫. ଉଠିଆରୀ ଖାଇବା । -ମାଗଣା ଖାଇବା ।

୩୨୨୬. ଉଠିଆରି ଗାଧୁଆ / ଉଠିଆରି ଗାଧୋଇବା ।

ଶିଶୁ ଜନ୍ମ ହେବାର ୭ମ ବା ୮ମ ଦିନ ଶିଶୁ ଓ ମା'ର ପ୍ରଥମ ସ୍ନାନ ।

୩୨୨୭. ଉଠିଲା ମାଛ ମୁହଁରେ ପାହାର ।

ଆଗୁଆ ନେତୃସ୍ଥାନୀୟ ବ୍ୟକ୍ତିଙ୍କ ମୁଣ୍ଡରେ ଆଗେ ପାହାର ବାଜିଥାଏ । ଯେପରି ସୁଅ ମୁଁହଁରେ ଉଠିଲା ମାଛକୁ ଲୋକେ ମାରିଥାନ୍ତି ।

୩୨୨୮. ଉଠ କହିଲେ ଉଠିବା ,ବସ କହିଲେ ବସିବା ।

ଏକାନ୍ତ ଆଜ୍ଞାନୁବର୍ତ୍ତି ବ୍ୟକ୍ତି ବା ଭୃତ୍ୟ ।

୩୨୨୯. ଉଠିପଡ଼ି ଲାଗିଲେ ଖରେ ,ସିଦ୍ଧିମିଳେ ଆପଣା ଘରେ ।

୩୨୩୦. ଉଠ ନେହିଶକତା ,ନହୀ ଜଗନ୍ନାଥ ଯାତ୍ରା ।

ଶାରିରୀକ ଶକ୍ତି ନଥିଲେ ଶ୍ରୀ ଜଗନ୍ନାଥ ଦର୍ଶନ ପାଇଁ ଯାତ୍ରା କରି ହୁଏ ନାହିଁ ।

୩୨୩୧. ଉଠ ଛଣ୍ଡୀ (= ପ୍ରାପ୍ତ ବୟସ୍କା ବାଳିକା) ତୋର ବାହା(=ବିବାହ ) ।

ଅସତର୍କ ଅବସ୍ଥାରେ ଅର୍ଥାତ୍ ହଠାତ୍ କୌଣସି ଗୁରୁତର କାର୍ଯ୍ୟ କରିବା ପାଇଁ ସୂଚନା ମିଳିଲେ ଏହି ପଦଟି କୁହାଯାଇଥାଏ ।

## କ୍ଷତ୍ରିୟ ବିଦ୍ୟା ପଦାବଳୀ

୩୨୩୨. ଉଠା କଟାରୀ ଖୋ'ସେ ପେଟୀ,
ଖଣ୍ଡା ତଲବାର ଭେଟାଭେଟି ।
ଶାହାଣ ଖାମଣ ବାଙ୍କ କାଠି,
ପରଞ୍ଜ ମୁହଁକୁ ଘାଗୁଡ଼ି ଘଣ୍ଟି ।
ତୋତର ଶିକୁଳି ଲଗା ବାହୁଟି
ସୁନଚିରା କୁନ୍ତ ଶୂନ୍ୟେ ଉଠି ।
ମାନ ମୁନ ଧରି ଖଣ୍ଡା ମୁଠି

ଯାଦବ ପୁତ୍ର ମାରେ କୁହାଟି
ସେବା କରିଥିବୁ ତୁ କାଇମାଟି ।

୩୨୩୩. ଉଠିଥିଲେ ଉଠିଯା ,ବାହି ବାଜିବ ତି
ମା ଦେଇଛି ସିନ୍ଦୁର ଟୀକା ବୋହି ପଡ଼ିବ ତି ।-( ପୁଚିଖେଳ ପଦ)

୩୨୩୪. ଉ'ଠୁ ମନ୍ଦିର ଧ'ର ମନ୍ଦିର
ସଂସାର ସାର ଖେଳିବା
ଏଇ ଜୀବନକୁ ଚୁଆ ଚନ୍ଦନ ଲୋ
ଅବଶେ ଥରେ ମରିବା ।

୩୨୩୫. ଉହୁଁ ଉହୁଁ ଉହୁଁ ,କାହା କଥା କହୁଁ ।

୩୨୩୬. ଉଇ ହୁଙ୍କା ତୋଳା ରୀତି ଗୋ !
ଅନସରି ନୀତି ଚଳିବ ଜୀବନ
ଉଠି,ପଡ଼ି,ବୁଡ଼ି ,ତିନ୍ତି ଗୋ ।

## ଊ-ଊ-ଊ

୩୨୩୭. ଊନ ଚାଳିଶେ ଗୁଣ ବୃଦ୍ଧ ।
ଊନ୍ତର ଅଟନ୍ତି ସୁହୃଦ ।- ( ପ୍ରାଚୀ ପୂର୍ଣ୍ଣ ତମ ଚନ୍ଦ୍ରୋଦୟ)

୩୨୩୮. ଊଷାଯୋଗରେ ,ଯେ ଜନ ଯାଏ ।
ଡ଼ାକବୋଲେ -ସିଦ୍ଧି ସେ ପାଏ ।- (ଶୁଭ ଯାତ୍ରାର ଲକ୍ଷଣ -ବଡ଼ିଭୋର)

୩୨୩୯. ଊନ କୋଟି( ଊନକୁଟି ) ।-( କୋଟିଏରୁ ଗୋଟିଏ କମ ପ୍ରାୟ ଏକକୋଟି)
ଚୌଷଠି( ଚୌକୁଟି) ।

ପ୍ରାୟ ପୂର୍ଣ୍ଣ ସଂଖ୍ୟା ,ଯେଉଁ ଆୟୋଜନରେ ବା ସଂଗ୍ରହରେ କୌଣସି କିଛି ବାଦ ପଡ଼େନାହିଁ । ଯେପରି ଏହି ସଙ୍କଳନରେ ପ୍ରବାଦ ସଂଗ୍ରହ ଊନକୋଟି ଚୌକୁଟି ।

୩୨୪୦. ଊନ (ଊଣା) ପଞ୍ଜରା ବାର୍‌ହା (= ବରାହ) ମୁହାଁ ।

ଅଲକ୍ଷଣା ଗୋରୁ ,ଯାହାର ଗୋଟିଏ ପଞ୍ଜରା କମ ଓ ବରାହ ପରି ମୁହଁ । ଅଲକ୍ଷଣା ମନୁଷ୍ୟକୁ ମଧ ଏହି ପଦଟି କହି ଭର୍ତ୍ସନା କରାଯାଇ ଥାଏ । ଯେପରି - ଊଣା ପଞ୍ଜରା ଲକ୍ଷ୍ମୀଛଡ଼ା ବାର୍‌ହା ମୁହାଁର ଗୋଠ ।

୩୨୪୧. ଊନ (=ଊଣା) ବର୍ଷାରେ ଦୁନି (=ଦ୍ୱିଗୁଣ) ଶୀତ ।

୩୨୪୨. ଊଣା ଲୋକ ପଦ ପାଏ ,ହଗିଗଲେ ଗୀତ ଗାଏ ।

ନିମ୍ନ ସ୍ତରର ଲୋକ ଆସନ ପାଇଲେ ,ତାର ଗର୍ବ ଅହଂକାରର ସୀମା ରହେ ନାହିଁ ।

୩୨୪୩. ଉଣା ଲୋକର ଦୁଇଗୁଣ ସରେ । କୃପଣ ଲୋକର ମାଇପ ମରେ ।

ଅଳ୍ପ ଅଳ୍ପ ଖର୍ଚ୍ଚ କରୁଥିବା ନିମ୍ନସ୍ତରରର ଲୋକର ଦୁଇଗୁଣ ଖର୍ଚ୍ଚ ହୋଇଥାଏ । କାମି ଲୋକର ସ୍ତ୍ରୀ ଭଲ କରି ଗଣ୍ଡାଏ ଖାଇବାକୁ ନପାଇ ଶୁଖିଶୁଖି ମରେ ।

୩୨୪୪. ଉଣା ହିଡ଼ ଯେଉଠି ,ପାଣି ଗଡ଼େ ସେଇଠି ।

ନୁଆଣିଆ/ଅନୁଚ୍ଚ ହିଡ଼ ଉପରେ ବିଲ ପାଣି ଗଡ଼ିଗଲା ପରି ,ଦୁର୍ବଳତାର ସୁଯୋଗ ନେଇ ଲୋକେ ତା ପ୍ରତି ଦୁର୍ବ୍ୟବହାର କରନ୍ତି ।

୩୨୪୫. ଉଣା ଭାତରେ ଦି ଗୁଣା ବଳ
ଭରାପେଟ ରସାତଳ ।

## ର-ର-ର

୩୨୪୬. ଋଣଂ କୃତ୍ୱା ଘୃତଂ ପିବେତ ।

ଦାର୍ଶନିକ ଚାର୍ବାକଙ୍କ ମତରେ ଯେ କୌଣସି ମନୁଷ୍ୟ ଜୀବଦ୍ଦଶାରେ ସୁଖରେ ଜୀବନ କଟାଇବା ବାଞ୍ଛନୀୟ କାରଣ ମୃତ୍ୟୁ ପରେ କ'ଣ ହୁଏ ବା ହେବ ତାହା ଅଜଣା ତେଣୁ ସୁଖୀ ଜୀବନ ଯାପନ କରିବାପାଇଁ ଋଣ କଲେ ମଧ ତାହା ଦୋଷାବହ ନୁହେଁ ।

୩୨୪୭. ଋଣ ଦିଏ ଯିଏ ,ଡ଼ରୁଥାଏ ସିଏ ,

୩୨୪୮. *ଏକାର୍ଥରେ*- ଋଣ ଦାତାର ଡ଼ର ବେଶି ।

କରଜ ଦେଲେ ତାହା ବୁଡ଼ିଯିବାର ସମ୍ଭାବନା ବେଶି । ତେଣୁ ଋଣ ଦାତା କରଜ ଅସୁଲ ନ ହେଲା ପର୍ଯ୍ୟନ୍ତ ଛଟପଟ ହେଉଥାଏ ।

୩୨୪୯. ରୂପଂ ଦେହି ,ଜୟଂ ଦେହି ,ଯଶୋ ଦେହି,ଦ୍ୱିଷୋ ଜହି ।

ମତେ ରୂପ ଦିଅ ,ଜୟ ଦିଅ , ଯଶଃ ଦିଅ ,ମୋ ଶତ୍ରୁମାନଙ୍କୁ ନାଶ କର ସପ୍ତସତୀ ଚଣ୍ଡୀପାଠ ପୂର୍ବରୁ ପଢାଯିବା ଦେବୀସ୍ତୋତ୍ର ଶ୍ଳୋକମାନଙ୍କର ଶେଷ ଧାଡ଼ି ।

୩୨୫୦. ଋତେ ଜ୍ଞାନାଦ୍ ନ ମୁକ୍ତିଃ ।

ଜ୍ଞାନଂ ବିନା ମୁକ୍ତିଲାଭ ଅସମ୍ଭବ । ଏହା ଶଙ୍କରାଚାର୍ଯ୍ୟଙ୍କର ବାଣୀ ।

୩୨୫୧. *ଏକାର୍ଥରେ* - ଜ୍ଞାନୀତ୍ୱାତ୍ମୈବ ମେ ମତମ ।

ଜ୍ଞାନୀ ମୋର ଆତ୍ମା ସ୍ୱରୂପ ,ଏହା ଶ୍ରୀକୃଷ୍ଣ କହିଛନ୍ତି ।

୩୨୫୨. ରଷ୍ୟ(=ମୃଗ) ଚିହ୍ନିବ ବେଗରୁ ।
ବ୍ରାହ୍ମଣ ଚିହ୍ନ କାଛାରୁ ।

୩୨୫୩. ରୁକ୍ମିଣୀ ,ସତ୍ୟଭାମା ,ସତୀ , ଭଦ୍ରା, କାଳିନ୍ଦୀ ,ଜାମ୍ବବତୀ ।
ଲକ୍ଷଣା ,ସତ୍ୟା ,ମିତ୍ରବିନ୍ଦା । ଶ୍ରୀକୃଷ୍ଣଙ୍କ ଅଷ୍ଟ ପ୍ରମଦା । -(ଜଗନ୍ନାଥ ଭାଗବତ)

ଅନ୍ୟ ମତରେ - ଶ୍ରୀକୃଷ୍ଣଙ୍କର ଅଷ୍ଟ ପାଟବଂଶୀ ଯଥା-ଗୋପରେ ଲଳିତା,ବିମଳା,
ଶ୍ରୀଧନ୍ୟା,ଶ୍ରୀମତୀ,ହରିପ୍ରିୟା,କନ୍ୟା,ସୁଚଳାସୁନ୍ଦରୀ ଓ ପଦ୍ମା ।

୩୨୫୪. ରକୁଣା ରଥ ଅଣ ଲେଉଟା ।

ଅଶୋକାଷ୍ଟମୀ ଦିନ ଲିଙ୍ଗରାଜଙ୍କର ଯେଉଁ ରଥ ଯାତ୍ରାରେ ଯାଏ ତାହା ଆଉ ଫେରେ ନାହିଁ । ଏହି ରଥଯାତ୍ରା ଭୁବନେଶ୍ୱରସ୍ଥ ଲିଙ୍ଗରାଜଙ୍କ ପୀଠରେ ଅନୁଷ୍ଠିତ ହୁଏ ।

୩୨୫୫. ଋଷି ଗୋଡ଼ କୁକୁର ଚାବିବ (=କାମୁଡ଼ିବ) ବୋଲିକି
ଋଷି କୁକୁରର ଗୋଡ଼ ଚାବିବ ?

ଜଣେ ନୀଚ ବ୍ୟକ୍ତି କୌଣସି ମହଦ୍ ବ୍ୟକ୍ତିଙ୍କୁ ଅପମାନ କଲେ ମହଦ୍ ବ୍ୟକ୍ତି ଯେସାକୁତେଷା ନ ୀତିରେ ତାହାକୁ ଅପମାନ କରିବା ତାଙ୍କ ମହତ୍ତ୍ୱର ପରିଚାୟକ ନୁହେଁ ।

୩୨୫୬. ଋଷିଙ୍କୁ ଭାର ବୁହାଇବା ।

ଯେପରି ଭାଗବତରେ କୁହାଯାଇଛି- 'ଅଳପ ଲୋକେ ଅଧିକାର । ଋଷିଙ୍କୁ ବୁହାଇଲେ ଭାର ।' ଅର୍ଥାତ୍, ନୀଚ ଲୋକମାନଙ୍କର ପାଷାଣ୍ଡ ପଣିଆ ।

୩୨୫୭. ଋଷି ଜଟା (=ବାଳ) ଛିଣ୍ଡାଇ ମରିବା ।

ଏପରି କଥା ଶୁଣିଲେ ଋଷିଙ୍କ ପରି ଧୀର ,ପ୍ରଶାନ୍ତ ଓ ଅକ୍ରୋଧୀ ବ୍ୟକ୍ତି ମଧ କ୍ରୁଦ୍ଧ ହୋଇ ସ୍ୱହସ୍ତରେ ନିଜ ମୁଣ୍ଡର ଜଟା (ବାଳ) ଛିଣ୍ଡାଇ ପକାଇବା ।

୩୨୫୮. ଋଷି ଘରକୁ ମହାଋଷି ଗଲେ
ଜୀରା ଭିତରୁ ଶିରା କାଢିଲେ ।

ସମସ୍ତଙ୍କ ଦୋଷ ଦୁର୍ବଳତା ଯେ ଦେଖାଏ, ତାର ଦୋଷ ଦୁର୍ବଳତା ଦେଖାଇବାକୁ କେହି ହେଲେ ବାହାରେ ।

୩୨୫୯. ଋଣିଆ (= ଯେ ଋଣ କରିଥାଏ ) କୁ ଋଣଯେତେ,
କହୁଣିଆ (=କହୁଣୀମାଡ଼ଖିଆ)କୁ କହୁଣୀ ତେତେ (ସେତେ) ।

ଯେ ବହୁତ ଋଣ ବାରମ୍ବାର କରେ,ତାକୁ ଋଣ ଚିନ୍ତା କଷ୍ଟ ଦିଏ ନାହିଁ । ସେହିପରି ବହୁତ କହୁଣୀ ମାଡ଼ଖିଆକୁ ଗୋଟାଏ କହୁଣୀମାଡ଼ କିଛିନୁହେଁ ,ତେଣୁ ଉଭୟ ନିର୍ଲଜ ।

୩୨୬୦. ଋଣ ଶେଷ ,ବ୍ୟାଧି ଶେଷ ,ଅଗ୍ନିଶେଷ ,ଶତ୍ରୁ (=ଭଗାରି)ଶେଷ
ଏ ଚାରିଙ୍କି ନରଖିବ ଲେଶ ।

ଏଗୁଡ଼ିକ ସମୂଳେ ଉତ୍ପାଟିତ ନହେଲେ ପଛକେ ଘୋର ବିପଦର ସମ୍ଭାବନା ଆସେ ।

୩୨୬୧. ଋଣ କରି ଖାଇ ପିଇ ଆଜୀବନ ସୁଖରେ ରହ ।

ଇହଲୋକ ସର୍ବସ୍ୱ,ପରଲୋକ କଥା ତ କେହି ଜାଣେ ନାହିଁ । ତେଣୁ ସୁଖ-ବାଦୀ (ଚାର୍ବାକ୍ ପନ୍ଥୀ) ଲୋକେ କହନ୍ତି କରଜ କରି ଖାଇ ପିଇ ବଞ୍ଚିବା ପର୍ଯ୍ୟନ୍ତ ସୁଖରେ ରହ ।

ସଂସ୍କୃତରେ - ଋଣଂ କୃତ୍ୱା ଘୃତଂ ପିବେତ୍ ।
ଯାବତଜୀବେତ୍ ତାବଦ୍ ସୁଖଂ ଭୋଗେତ୍ ।

୩୨୬୨. ଋଣ ବଢୁଛି ନା ପୁଅ ଝିଅ ଶୁଝିବେ ।

୩୨୬୩. ଏକାର୍ଥରେ - ବାପ ଖାଇବ ତାଳ, ପୁଅକୁ ହୋଇଛି କାଳ ।

୩୨୬୪. -ଏଜନ -ଉଧାର ମିଳିଲେ କିଣନ୍ତି ହାତୀ ,ଶୁଝିଲେ ଶୁଝିବ ପୁଅର ନାତି ।

ପୁଅଝିଅଙ୍କ ମୁଣ୍ଡରେ ଋଣ ବୋଝ ନଦିଦେବା ଏକ ଦାୟିତ୍ୱହୀନତାର ପରିଚାୟକ ।

୩୨୬୫. ଋଣ୍ଟୁଝୁଣ୍ଟୁ ହୋଇ ଯାଉଛି ଚାଲି ( ଯାଏ ଛଟକି) ,
ଦେଖିଲା ବେଳକୁ କାଳି କୋତରୀ ( = ତ୍ରିପଣ୍ଡ କାଳି) ଖଣ୍ଡିଆ ନାକୀ ।

ଅଳଙ୍କାର ପିନ୍ଧି ଛଟକ କାଢୁଥିବା କାଳିସ୍ତ୍ରୀ । ଅସୁନ୍ଦରୀ ସ୍ତ୍ରୀ ପ୍ରତି କଟାକ୍ଷ । ସ୍ତ୍ରୀ ଲୋକ ଯେତେ ଅଳଙ୍କାର ଓ ବେଶ ଭୂଷାରେ ମଣ୍ଡିତ ହେଲେ ମଧ ତାର ପ୍ରାକୃତିକ ସୌନ୍ଦର୍ଯ୍ୟରେ ପୁରୁଷ ଆକୃଷ୍ଟ ହୋଇଥାଏ । ଯେପରି ଗ୍ରହଣ ଖଣ୍ଡିଆନାକ ଥିବା ଛଟକୀ ସ୍ତ୍ରୀ ଯେତେ ସଜେଇହେଲେ ମଧ ପୁରୁଷର ଦୃଷ୍ଟି ଆକର୍ଷଣ କରି ପାରେ ନାହିଁ ।

୩୨୬୬. ଋଷ୍ୟଶୃଙ୍ଗ ମୁନି ଅଇଲେ, ଯେମିତି କୃଷ୍ଣଙ୍କ ଦୂତ ।

ଋଷ୍ୟଶୃଙ୍ଗ କଶ୍ୟପ ପୁତ୍ର 'ବିଭାଣ୍ଡକ ମୁନିଙ୍କ' ଔରସରେ ଦ୍ୱାଦଶାଦିତ୍ୟ ମଧ୍ୟରୁ ଏକତମ ଭଗଙ୍କର କନ୍ୟା ମୃଗରୂପିଣୀ ସ୍ୱର୍ଣ୍ଣମୁଖୀଙ୍କ ଗର୍ଭରୁ ଜନ୍ମିଥିଲେ । ମୃଗର ଶିଙ୍ଗ ଭଳି ତାଙ୍କର ଶିଙ୍ଗ ଥିଲା । ସେ ପିଲାଦିନୁ ପିତାଙ୍କ କୌଶିକୀ ନଦୀ ତରୀସ୍ଥ ଆଶ୍ରମରେ ବଢ଼ି ପିତାଙ୍କ ଛଡ଼ା ଆଉ କୌଣସି ମନୁଷ୍ୟକୁ ଦେଖି ନଥିଲେ । ଅଙ୍ଗଦେଶରେ ବାରବର୍ଷ ବର୍ଷା ନହେବାରୁ ବ୍ରାହ୍ମଣମାନଙ୍କ ପରାମର୍ଶରେ ରାଜା'ଲୋମପାଦ' ଏହାଙ୍କୁ ଅଣାଇବାରୁ ସେ ରାଜ୍ୟରେ ଇନ୍ଦ୍ର ବୃଷ୍ଟି କଲେ । ରାଜା 'ଦଶରଥ' ତାଙ୍କ କନ୍ୟା ଶାନ୍ତାଙ୍କୁ ରାଜା ଲୋମପାଦଙ୍କୁ ପାଳିବାକୁ ଦେଇଥିଲେ । ଲୋମପାଦ ଉକ୍ତ କନ୍ୟାଙ୍କୁ ଋଷ୍ୟଶୃଙ୍ଗଙ୍କୁ ଦାନ କଲେ । ଅପୁତ୍ରିକ ଦଶରଥଙ୍କ ପୁତ୍ରେଷ୍ଟି ଯଜ୍ଞରେ ଦଶରଥଙ୍କ ଆମନ୍ତ୍ରଣ କ୍ରମେ ଋଷ୍ୟଶୃଙ୍ଗ ଉପସ୍ଥିତ ହେଲେ । ଏହାଙ୍କ ଆଶୀର୍ବାଦ ଫଳରେ ଯଜ୍ଞଚରୁ ଭକ୍ଷଣ କରି ଦଶରଥଙ୍କର ତିନିରାଣୀ ଚାରି ପୁତ୍ର ଜନ୍ମକଲେ । ପୁରାଣ ବର୍ଣ୍ଣିତ ଏହି ସମସ୍ତ ଅଲୌକିକ କାର୍ଯ୍ୟପାଇଁ ତାଙ୍କୁ ସ୍ୱୟଂ ଭଗବାନ ଶ୍ରୀକୃଷ୍ଣଙ୍କର ଦୂତ ବୋଲି ପ୍ରବାଦରେ କୁହାଯାଇଛି ।

୩୨୬୭. ଋଣ କଳନ୍ତର ପରି,
ରୂପା ସୁନା ପରି ନେବୁ ତଉଲି
ରୁଆଏ ନଯିବ ସରି ।

୩୨୬୮. ଋଷି ତପସ୍ୟା କରି ଉଇହୁଙ୍କା ହେଲେ ,
ସେତ ହରିଙ୍କ ଦର୍ଶନ ନ ପାଇଲେ ।
ମୁଁ ତ ସେହିପରି ମାଟିରେ ମିଶିବି ।

କାହା ଦରଶନ କେଭେ ନ ପାଇବି
ମଲେତ ରହିବି ବସୁଧା ତଳେ
ଥିଲେ ତ ରହିବି ଯେ ଯମପୁରେ ।

୩୨୬୯. ଋଷଭଗଜ ବିଳସିତ - ଷୋଡ଼ଶାକ୍ଷର ଛନ୍ଦ ବିଶେଷ ।

## ଏ-ଏ-ଏ

୩୨୭୦. ଏ ଅହଂକାର ତିନିଗୁଣ । ବୁଦ୍ଧି ଇନ୍ଦ୍ରିୟ ଦିବ୍ୟଜ୍ଞାନ ।।
ଏ ଆତ୍ମା ଏ ମୋହର ପର । ଏ ଭେଦ କରେ ଅହଂକାର ।।
ଏ ଦେହ ବହି ଅହଂକାରେ । ଜୀବ ପରମ ବୁଦ୍ଧି ହରେ ।।
ଏ ଅଟେ ଅନିତ୍ୟ ସଂସାର । କିମ୍ପା ଏ କପଟ ବେଭାର ।। (ଜଗନ୍ନାଥ ଭାଗବତ)

୩୨୭୧. ଏ ଅଟେ ମୁକ୍ତ ସେମାନେ ପୁଣି ସାରସ୍ୱତ
ସତ୍ୟ ବାକ୍ୟ ସତ୍ୟ ମନ ସତ୍ୟ ବ୍ୟବହାର ।
ସବୁ ସତ୍ୟ ସବୁକାଳେ ବୈଷ୍ଣବ ସମ୍ବଳ ।
ସକଳ ସମାନ ଦେଖି ନ କରିବ ଦ୍ୱନ୍ଦ
ନକରିବ ପର କିମ୍ଵା ଆପଣାର ଭେଦ ।।
କ୍ରିୟା ବୁଦ୍ଧି ବୈଷ୍ଣବର ଅଟେ ମୂଳଧନ ।
ଅହରହ ଘୋଷୁଥିବ ମୁଖେ ରାମ ନାମ । (ବୈଷ୍ଣବ ଧର୍ମର ତତ୍ତ୍ୱ)

୩୨୭୨. ଏ ଅଟେ ମାୟାର ସଂସାର । କାହାର ନାହିଁ ଅଧିକାର ।
ସର୍ବେ ଆସିବେ ସୁଖ ମନେ । ପୁଣି ଗମିବେ ନିଜସ୍ଥାନେ ।(ଜଗନ୍ନାଥ ଭାଗବତ)

୩୨୭୩. ଏ ଅଟେ କାନ୍ତ ମୋହର
ତୁଣ୍ଡ ବାରିକରି ଜାଣି ଦେଲିଣି,
ଚାଲିଟି ତାଙ୍କର ଖର ।

୩୨୭୪. ଆଗେଇଲେ ରାମ, ପଛେଇଲେ ରାବଣ ।
ଦାନ ନେଲା ରାମ ।

୩୨୭୫. ଏଇ କଥାକୁ ,ନାଆ (ନାହା) ପେଲିଦେଲି କଲିକତାକୁ ।

ସାମାନ୍ୟ କଥାପାଇଁ ବଡ଼ ଧରଣର ଆୟୋଜନ କରିବା କିବା ଘଟଣା ବା ଉପଲକ୍ଷକୁ ଶ୍ରୋତା ପସନ୍ଦ ନକରି ଉଡ଼ାଇ ଦେବା । କହିଲାବାଲା ପାଖରେ କୌଣସି ଘଟଣା, ଉପଲକ୍ଷ ବା କଥାର ଯେତେ ଗୁରୁତ୍ୱ ଥିଲେ ମଧ ଯାହାକୁ କୁହାଗଲା ସେ ନାପସନ୍ଦକରି ଏହି ଉକ୍ତିଟିକୁ କହି ଉଡ଼ାଇଦେବା ।

୩୨୭୬. ଏଇଟା ନୋଳା ପରଘର ,ଥାରେ ନୋଳା ସମ୍ଭାଳି କର ।

ନୋଳା ଅର୍ଥାତ୍- ବେତ ମାଡ଼ରେ ଦେହରେ ବସିଥିବା ଲମ୍ୱା ଲମ୍ୱାନେଳି ଦାଗଥିବା ଲୋକ ଅର୍ଥାତ୍ ମାଡ଼ୁଆ ।

୩୨୭୭. ଏକାର୍ଥରେ - ଆରେ ନୋଳା ,ଭାଜଣ( ଖଇ ଇତ୍ୟାଦି ଭାଜିବା ପାତ୍ର)ଖୋଲା ।

୩୨୭୮. ଏଜନ - ନୋଳା ହୁଏ ସକ୍ ସକ୍ ,ଏ ନୋଳା ସମ୍ଭାଳି କର ।
ଆଗେ ଗଲେ ପରଘର ,ତେବେ ଖାଇବୁ ଦୁଧ ସର ।

## ( ଶିଶୁ ମନୋରଞ୍ଜନ ପଦାବଳୀ)

୩୨୭୯. ଏଇ କାକୁଡ଼ିଟି କାଟନା
ମଞ୍ଜି ରଖିଛି ,
ସେ ଦୁଆରକୁ ଯାଅନା
ବନ୍ଧୁ ଆସିଛି ।
ବନ୍ଧୁର ପାନ ଖାଅନା
ଭାବ ଲାଗିଛି ,
ଧାରି ଧାରି ମଲ୍ଲିଫୁଲ
ଫୁଟି ଉଠିଛି ।
ସାରି ସାରି ମେଘମାଳା
ଭାସି ଯାଉଛି ,
ଝର ଝର ଚପ୍ ଚପ୍
ବର୍ଷା ହେଉଛି ।

୩୨୮୦. ଏଇ ବାରିର ବୁଞ୍ଚ ଗଛଟି
ବୁଞ୍ଚ ଝୁରୁ ଝୁରୁ ହୁଏ ।
ତାରି ତଳେ ଚଉରା ମୂଳେ
ବୋଉ ଆମର ସଞ୍ଜବତୀ ଜାଳେ ।
ବୋଉ ଆମର ସ୍ନେହମୟୀ
ଘର ଲିପୁଛନ୍ତି ।
ବାପ ଆମର ସଦାଶିବ
ଗାଈ ଦୁହୁଁଛନ୍ତି ।
ଭାଇ ଆମର ରାଜେଶ୍ୱର

ତେଣ୍ଡା ବାହୁଛନ୍ତି ।
ଅଇଲେ ଆମ ପେଖନା ବିବି
ଫେଁକ୍ ଫେଁକ୍ ଫେଁକ୍
ଭାଇହେ ଦେଖ୍ ଦେଖ୍ ଦେଖ୍ ।

୩୨୮୧. ଏଇ ଦେଶର ଜନମ ଆମ
ଏଇଠି ଆମ ଗାଁ
ଏଇ ମାଟିରେ ଗଢ଼ିବୁ ଆମେ
ଏଇ ଆମରି ମାଆ ।
ଆମେରେ ଯେତେ ଛୋଟିଆ କଢ
ମାନିବୁ ନାହିଁ ଝଞ୍ଜା-ଝଡ଼
ପତାଇ ଦେବୁ କଅଁଳ ଛାତି
ରଖି ବୁ ତାର ନାଆଁ
ଏଇ ଆମରି ମାଆ ।
ମା'ର ପାଇଁ ଜୀବନ ଦେଇ
ଯୁଗ ଯୁଗରେ ଅମର ହୋଇ
ଗାନ୍ଧୀ ,ଯୀଶୁ ସୁ-ଜ୍ଞାନୀ ଯେତେ
ରଖିଗଲେରେ ନାଆଁ
ଏଇ ଆମର ମାଆ ।

୩୨୮୨. ଏଇ ମାଟିରେ ଜନମ ଆମ , ଏଇ ମାଟିରେ ବଢ଼ି,
ଏଇ ମାଟିରେ ମିଶିବୁ ଆମେ, ଏଇ ମାଟିରେ ସଢ଼ି
ଏଇ ମାଟିକୁ ଦେହରେ ବୋଳି ଖେଳିବୁ କେତେ ଖେଳ
ଏଇ ମାଟିର ରଖିବୁ ଟେକ ଥିବୁ ଯେତେକ କାଳ,
ଏଇ ମାଟିକୁ ତିଳକ କରି ମଥାରେ ଆମେ ରଖୁଁ ,
ଏଇ ମାଟିର ବନ ଶଇଳ ସରସ ଛବି ଦେଖୁଁ,
ଏଇସେ ମାଟି ଜନମ ଭୂମି ଯା ଲାଗି ଆମ ଟାଣ
ଏଇ ସେ ମାଟି ଆମ ମାଆଟି ଯା ଲାଗି ଦେବୁ ପ୍ରାଣ ।

୩୨୮୩. ଏ ରାଇଜରେ ଧୂଆ ମୂଳା ଅଧୂଆ ମୂଳା ଏକା ଭାଉ।

ଯେଉଁଠାରେ ଗୁଣୀ ଓ ନିର୍ଗୁଣର ବାଛ ବିଚାର ନାହିଁ।

୩୨୮୪. ଏଇ ରୋଗରେ ଘୋଡ଼ା ମରେ ।

ଘୋଡ଼ାଶାଳରୁ ଗୋଟିଏ ଘୋଡ଼ା ଆତ୍ମସାତ୍ କରିନେଇ ମଲା ଗୋରୁର ମୁଣ୍ଡକୁ ଦେଖାଇ ଘୋଡ଼ାଟି ମରିଛି ବୋଲି କହେ। ଘୋଡ଼ାର ମାଲିକ ଯେତେବେଳେ ଦେଖେ ଯେ ଘୋଡ଼ାର ଦାନ୍ତ ଏପରି ହୁଏନାହିଁ ସେତେବେଳେ ଘୋଡ଼ା ଏହିପରି 'ଦନ୍ତ ବିକୃତି ରୋଗରେ ' ମରିଛି ବୋଲି ବୁଝାଇ ଦେଉଥାଏ।

୩୨୮୫. ଏଇଠୁ ମାଇଲି ତୀର (ସର) ,ବିନ୍ଧିଲା କଦଳୀ ଗଛର ।

୩୨୮୬. ଏଇ ପିଣ୍ଡ (=ଗର୍ଭସ୍ଥ ଭ୍ରୁଣ) ଜନ୍ମରୁ ଶୁଦ୍ଧ ।

ମନୁଷ୍ୟର ଶରୀର ଅପବିତ୍ର ହୋଇପାରେ ,ମାତ୍ର ଗର୍ଭସ୍ଥ ଭ୍ରୁଣ ସର୍ବଦା ଶୁଦ୍ଧ ଅଟେ।

୩୨୮୭. ଏଇସା ଦିନ ନେହି ରହେଗା ।- ଖରାପ ସମୟ ସବୁଦିନ ରୁହେ ନାହିଁ।

୩୨୮୮. ଏଇ ବ୍ରତରେ ଏଇ ମନ୍ତ୍ର
ଘଟରେ ଥୁଅ ବେଲ ପତ୍ର ।

୩୨୮୯. ଏଇ ଦୁଇ ଭେଡ଼ାର ଭେଡ଼ି, (=ନିର୍ବଂଶର ପୁଅ) ସବୁ ନିଅ କାଢି ।

୩୨୯୦. ଏଇ ଲୁଗା ପିନ୍ଧି କି ବାଟ ଚାଲିବି
ବଇଶାଖ ମାସ ଖରା
ପାଖକେ ପଡ଼ିଛି ବଉଦ ଛାଇଲୋ
ପାଖକେ ପଡ଼ିଛି ଖରା ।

୩୨୯୧. ଏଇ ବାପ ମାଆ କିସ ନ କଲେ
ନିକୁଞ୍ଜ ବନକୁ ସେ ଝାସି ଦେଲେ ।
ନିକୁଞ୍ଜ ବନରେ ଫୁଟିଛି ମଲ୍ଲୀ
ଯାହାର ମଲ୍ଲୀ ସେ ନେଲାଣି ତୋଳି ,
ହାତ ବଢେଇଛି ତୋଳିବି ବୋଲି
ଯାହାର ତ ଶାଢୀ ଗଲାଣି ଚିରି
ଟଙ୍କାକିଆ ଶାଢୀ ମୁଣ୍ଡରେ ମୋର (ମାର)
କାଲି ଆସିବ ବୋଇତ ଭାର ।

୩୨୯୨. ଏଇତା ମାଗୁଛି ତୋତେ
ହାତେ କାଚ ଥିବ
ତୁଣ୍ଡେ ମାଛ ଥିବ
ଦେବୀ ଗୋ'
ଅହ୍ୟ ଢ଼େଙ୍ଗରା ବାଜିବ ମୋତେ । ( କ୍ଷେତ୍ର ଲାଭ ହେବ ମୋତେ । )

ପ୍ରତ୍ୟେକ ସ୍ତ୍ରୀ ସ୍ୱାମୀଙ୍କର ଜୀବିତାବସ୍ଥାରେ ମୃତ୍ୟୁ କାମନାକରି ମା' ଦୁର୍ଗାଙ୍କୁ ପ୍ରାର୍ଥନା କରେ । କାରଣ ସ୍ତ୍ରୀ ଅହିଅହୋଇ ପ୍ରାଣତ୍ୟାଗକଲେ ମୋକ୍ଷ ହୋଇଥାଏ । ଅନ୍ୟ ପକ୍ଷରେ ବୈଧବ୍ୟର ଦୁଃଖ ,କଷ୍ଟ ଓ ଯନ୍ତ୍ରଣାରୁ ମୁକ୍ତି ପାଏ ।

୩୨୯୩. ଏଇ ମନ ଯେବେ ପ୍ରସନ୍ନ ହୁଅଇ
ଦିଅଇ ଅଭୟ ବର
ଏଇ ମନ ଯେବେ ଅବୁଝ ହୁଅଇ
କରୁଥାଏ ନାର ଖାର ।

୩୨୯୪. ଏଇ ଠେଇଁ ଯେବେ ପାଇଲି କଳି,ଆଉ କିଆଁ ଯିବି ସାରଙ୍ଗ ଯୋଡ଼ି ?

ନିକଟରେ ଉଦ୍ଦେଶ୍ୟ ସାଧନହେଲେ ଦୂରକୁ ଯିବାର ପ୍ରୟୋଜନ ନ ଥାଏ ।

୩୨୯୫. ଏଇ ମଳ ଦିହକୁ ବଳ , ଏଇ ମଳ ଦିହକୁ କାଳ ।

ଝାଡ଼ା ପରିଷ୍କାର ହେଲେ ଦେହ ସୁସ୍ଥ ଓ ସବଳରହେ, ପୁଣି ଝାଡ଼ା ପରିଷ୍କାର ନହେଲେ ବା ହଇଜା ହେଲେ ମଣିଷ ହଗିହଗି (ମଳ ପାଇଁ ) ମୃତ୍ୟୁ ବରଣ କରେ ।

୩୨୯୬. *ଏକାର୍ଥରେ-* ମଳ ଗଲା ,ବଳ ଗଲା ।

ବହୁତ ଝାଡ଼ା ହେଲେ ଦେହରୁ ବଳ ଚାଲିଯାଏ. ଅର୍ଥାତ୍ ହାଲିଆ ଲାଗେ ।

୩୨୯୭. ଏଇଲୋ'ବାପ ,ଘରେ ପଶିଗଲା ଢେବଣା(ଢେମଣା) ସାପ ।

କାହାଘରେ କିଛି ବିପଦ ଘଟିଲେ ଏହିପରି କହନ୍ତି ।

୩୨୯୮. ଏଇ କଥା , ସେଥିପାଇଁ କି ମନ ବ୍ୟଥା ।

ଧୈର୍ଯ୍ୟ ନଥିବା ଡ଼ରୁଆଲୋକ ,ଯାହାର ମୁଣ୍ଡ ଅତି ସାମାନ୍ୟ କଥାରେ ବଥାଏ ।

୩୨୯୯. ଏଇ କଥା ,କି କଥାର ଲେଖା ?
ଆଉ କଥାଥିଲେ ଦାଣ୍ଡରେ ପକା (ଦେଖା)।

ଅତି ଛୋଟଛୋଟ କଥା ବାହାର କରି ଲୋକଙ୍କୁ ଯେପରି ନିନ୍ଦିତ କରାଯାଇ ନପାରେ ତାର ଚେଷ୍ଟା ।

୩୩୦୦.　ଏଇ ଯଦି ତୋର ଥିଲା ମନେ ,ତେବେ ସାଗର ବାନ୍ଧିଲୁ କେନେ (କାହିଁକି) ।

କପଟତାରେ ପ୍ରଲୋଭିତ କରାଇ ବିପଦରେ ପକାଇବା ବ୍ୟକ୍ତି ପ୍ରତି ଦୋଷାରୋପ ।

୩୩୦୧.　ଏଇ ଯେ ଦାନ୍ତ ଜୋର ବନ୍ତ , ପଡ଼ିଲେ ହବ ବୁଢୀ ।
ଏଇ ଯେ କେଶ ଦିଶେ ବେଶ୍ ,ପାଚିଲେ ଧଳା ଖଡ଼ି ।

ସାମାନ୍ୟ କଥା ପାଇଁ ବଡ଼ ଧରଣର ଆୟୋଜନ କରିବା । ଅର୍ଥାତ୍ ଅତି ସାମାନ୍ୟ କର୍ମ ପାଇଁ ଏଡ଼େ ବଡ଼ ଆୟୋଜନ ଯେ ,କଲିକତାକୁ ଡ଼ଙ୍ଗା ପଠାଇ ଜିନିଷ ପତ୍ର ଆଣିବା ପାଇଁ ବ୍ୟବସ୍ଥା କରିବା ଏ କଥା ସାଧାରଣରେ ପ୍ରକାଶ କରିବା । ଫଳରେ ଶ୍ରୋତା ପ୍ରକୃତ ଘଟଣାଟି ଜାଣି ଏହାକୁ ନାପସନ୍ଦ କରି ହସି ଉଡ଼ାଇ ଦେବା । ଅର୍ଥାତ୍ ବାହାପିଆ କଥା କହି ଫୁଟାଣି ମାରିବା ।

୩୩୦୨.　ଏ ଉଆଁସ ନିଶିରେ ଉଦୟ ହୋଇଅଛି ଚାନ୍ଦ
ଉଜାଣି ଟେକିଲେ କିଛି ତହିଁ ନାହିଁ ଛନ୍ଦ
ଉର୍ଦ୍ଧ୍ୱ ମୁଖେ ହଂସ ଜପୁଅଛି ନାମ
ଅର୍ଦ୍ଧମାତ୍ରା ପରେ ମୂଢ ରେ ମନାଇଁ
ବିଜୟ ନବଘନ । - 　　- 　(ଶଗଡ଼ିଆ ପଦ)

୩୩୦୪.　ଏଇ ବାଟେ ଯାଉ କଥାଟୁ ନ କହୁ ,କଥା କି କାମୁଡ଼ି ଖାଇବ !
ନାଲି ଗୁଲୁ ଗୁଲୁ ନୂଆ ଯଉବନ ,ସବୁ ଦିନେ ଏକି ରହିବ !

୩୩୦୫.　ଏଉଡ଼ି ମାରିବା । - ହାକୁଟି ମାରିବା ।

୩୩୦୬.　ଏଇଟି କହିଲା ( କାଣି ଆଙ୍ଗୁଠି ) । - ଖେଚିଡ଼ି ଖାଇବା ।
ଏଇଟି କହିଲା (ଅନାମିକା) । - କାହୁଁ ଆଣିବା ?
ଏଇଟି କହିଲା (ମଧ୍ୟମା) । - ଋଣ କରିବା ।
ଏଇଟି କହିଲା (ବିଣି ଆଙ୍ଗୁଠି)। - କାହୁଁ ଶୁଝିବା?
ବୁଡା ଥିଲାଥିଲା କହି । । - ଖାଇବାପିଇବା ଫୁର୍ କିନା ଭିଡ଼ିଯିବା ।

ପାଞ୍ଚ ଆଙ୍ଗୁଠି ପଦ । କାଣି ଆଙ୍ଗୁଠି ଠାରୁ ବୁଢା ଆଙ୍ଗୁଠି ପର୍ଯ୍ୟନ୍ତି ।

୩୩୦୭.　ଏଇ ବିରାଡ଼ି ବଣକୁ ଗଲେ ବାଘ ହୁଏ ।
ଏଇ ମଣିଷ ବଣକୁ ଗଲେ ବଣ -ମଣିଷ ହୁଏ ।

୩୩୦୮.　ଏଇ ଟିକିଲି କିଏ ନ ନାଏ ,
କପାଳ ଗୁଣରେ ଟିକିଲି ଝଲମଲ ହୁଏ, ।

ନାରୀମାନଙ୍କ ସାଜସଜ୍ଜାରେ କପାଳର ଟିକିଲି ଏକ ଅପରିହାର୍ଯ୍ୟ ବସ୍ତୁ । କିନ୍ତୁ ଆଧେୟ ନୁହେ ।

ଆଧାରର ଗୁଣରେ ଆଧେୟ ଗୌରବାନ୍ୱିତ ହୁଏ ଅର୍ଥାତ୍ ନାରୀ ଭାଗ୍ୟବତୀ ହେଲେ ତା କପାଳର ଟିକିଲି ଝଟକେ ,ଅନ୍ୟ ପକ୍ଷରେ ନାରୀ ଭାଗ୍ୟହୀନା ହେଲେ, ଟିକିଲିର ଝଲକ ନଥାଏ । କପାଳ ଗୁଣରେ ମନୁଷ୍ୟ ଶୋଭାପାଇଥାଏ ,ଚାକଚକ୍ୟ ବା ସାଜସଜ୍ଜାରେ ନୁହେଁ ।

୩୩୦୯. ଏଇ ଡ଼ିମିରି ଗୁମାନ( =ଗର୍ବ) କରେ ।
ପାଚିଲେ ଡ଼ିମିରି ଝଡ଼ି ପଡ଼େ ।

ଡ଼ିମିରି ଅତି ନଗଣ୍ୟ ପଦାର୍ଥ ଅଥଚ ସୁନ୍ଦର ଦେଖାଯାଏ । କିନ୍ତୁ ତାହା ଅଳ୍ପ ସମୟରେ ପାଚି ଝଡ଼ି ପଡ଼େ । ତେଣୁ ତାର ସୌନ୍ଦର୍ଯ୍ୟ ଜନିତ ଗର୍ବ କ୍ଷଣସ୍ଥାୟୀ । ପ୍ରକୃତିର ଏହି ଦୃଷ୍ଟାନ୍ତରୁ ମନୁଷ୍ୟର ଗର୍ବ ଓ ଅହଂକାର ଯେ କ୍ଷଣସ୍ଥାୟୀ ତାହା ସୂଚିତ ହୋଇଛି ।

୩୩୧୦. ଏଇ ଟୋକାଟା କିଏ ରେ ।
ମୋ ନଡ଼ିଆ ପୁଞ୍ଜାକ(ପୁଞ୍ଜିକ) ନେ'ରେ
ନଡ଼ିଆ ପୁଞ୍ଜାକ (ପୁଞ୍ଜିକ) ସରିଗଲା,
ଏ ଟୋକାଟି ମରିଗଲା । - - ପିଲାଙ୍କୁ ଚିଡ଼େଇବା ପଦ ।

୩୩୧୧. ଏଇ ପଦକ ଶୁଣୁଥିବି ,ସୁନ୍ଦର ବଦନ ଚାହୁଁଥିବି
ଲୁଣ ଘିନି ଭାତ ଖାଉଥିବି ।

ରୂପର ମୋହରେ ଏବଂ କଥାର ଚାତୁରୀରେ ସର୍ବଦା ବଶୀଭୂତକରି ରଖିବା ଅସମ୍ଭବ । ସମସ୍ତେ କଳାକର୍ମକୁ ଭଲ ପାଆନ୍ତି । ତେଣୁ ଏହିପରି ଭାବରେ 'ଦେଖା ସୁନ୍ଦର କଥାରୁ ବଡ଼ି' ଲୋକଙ୍କ ପ୍ରତି ବ୍ୟଙ୍ଗ ।

୩୩୧୨. ଏଇ ପିଲାଟାଏ କାହାର ବେଟା ? - ପିଲାଟି ପ୍ରତି ବ୍ୟଙ୍ଗ ।

୩୩୧୩. ଏଇ (= ଏହି) ଟୋକାଟି ଝଲକ ଝାଇଁ
ଆସୁଥିଲା ପାନ ଖିଲକ ପାଇଁ
ମୁଦି ହଜା (ଜେ) ଇଲା କାଦୁଅ ଠେଇଁ
ଖୋଜି ଖୋଜି ଏବେ ପାଇଲା ନାହିଁ ।

ଦାୟିତ୍ୱହୀନ ,ଫୁଲାଫାଙ୍କିଆ ବ୍ୟକ୍ତି ପ୍ରତି ବ୍ୟଙ୍ଗ

୩୩୧୪. ଏଥର ବ୍ରାହ୍ମଣୀ ହାତକୁ ଅଦାଗଲା ।

ବ୍ରାହ୍ମଣୀ ହାତରେ ଅଦା ରହିଲେ ଦୁର୍ଭିକ୍ଷ ପଡ଼େ ବୋଲି ଜଉତିଷମାନେ ମତ ଦିଅନ୍ତି । ଏହା ଏକ ଲୋକବିଶ୍ୱାସ ।

୩୩୧୫. ଏହିମନ ଗୋଟିକ ଯେ ସ୍ୱର୍ଗ ନର୍କ ହୋଇ
ଏହିମନ ଗୋଟିସିନା ବୈଷ୍ଣବ ବୋଲାଇ ।

୩୩୧୬. ଏହି ମନଗୋଟି ଭୋଗୀ
ଏହି ମନଗୋଟି ଯୋଗୀ
ଏହି ମନଗୋଟି ମତ୍ତହସ୍ତୀ
ଏହି ମନଗୋଟି ବଇରାଗୀ ।- ମନର ବିଭିନ୍ନ ଅବସ୍ଥାର ବର୍ଣ୍ଣନା ।

୩୩୧୭. ଏ ପାରିରେ ସୁନରୀ ଗଛ
ସେ ପାରିରେ ଛାଇ
ମିଛରେ ଛଅଘଡ଼ି ଛିଡ଼ା କରିଲା
ଏଇ କଥାଟା ପାଇଁ ।

ଅତି ତୁଚ୍ଛ କଥାରେ ସମୟ ନଷ୍ଟ ହେବାର ଅନୁଶୋଚନା ।

୩୩୧୮. ଏକୋଇଶି ଦିନ ଭାତ (ଅନ୍ନ) ନ ଖାଇଲେ ମରି
ଜଳ ବିନେ କ୍ଷଣେ ପ୍ରାଣ ନ ପାରଇ ଧରି ।

୩୩୧୯. ଏମନ୍ତ ଯେ କରି, ଦିନେ ଜୀଇଁଥିଲେ ଜୀଇଁଲା (ବା) ପରି ।

୩୩୨୦. ଏ ଜୀବ ହେବାକୁ ଉଦ୍ଧାର । କେବଳ ନାମ ମାତ୍ର ସାର ।।

୩୩୨୧. ଏଇ ପେଟ ,
ଏଇ ପେଟଲାଗି ଲାଗିଛି ନାଟ,
ଏଇ ପେଟ ଲାଗି ଛଟପଟ,
ଏଇ ପେଟଲାଗି ବଙ୍ଗଳା ବାଟ,
ଏଇ ପେଟ ଲାଗି ଢିଙ୍କି (ଧାନ)କୁଟ,
ଏଇ ପେଟଲାଗି ନଟ କୁଟ,
ଏଇ ପେଟ ଲାଗି ମୁଣ୍ଡ (ତଣ୍ଡି)କାଟ ।
ଏଇ ।ପେଟ ଲାଗି ତେନ୍ତୁଳି ଛାଟ,
ଏଇ ପେଟଲାଗି ଦେଖ ସୁକୁଟ,
ଏଇ ପେଟଲାଗି ବଦନ ହେଠ,
ଏଇ ପେଟଲାଗି ଯମର ଭେଟ ।

ପେଟ ଚାଖଣ୍ଡକ ପୋଷିବା ପାଇଁ ଅନେକ ପ୍ରକାର ଉପାୟ ଓ ବ୍ୟବସ୍ଥା କରିବାକୁ ପଡ଼ିଥାଏ ତା ନହେଲେ ଛଟପଟ ହେବାକୁ ପଡ଼େ । ଏଇ ପେଟ ପାଇଁ ଓଡ଼ିଶାରୁ ବହୁଲୋକ ବଙ୍ଗଳା ତଥା କଲିକତାକୁ କାମ ଧନ୍ଦା ପାଇଁ ଯାଆନ୍ତି ।୧୮୬୬ ନଅଙ୍କ ଦୁର୍ଭିକ୍ଷ ଠାରୁ ଏହି ସଂଖ୍ୟା ବଢିଥିଲା । ବହୁ ସ୍ତ୍ରୀ ଲୋକ ଢିଙ୍କିରେ ଅନ୍ୟ ଲୋକର ଧାନ କୁଟି ପେଟ ପୋଷୁଥିଲେ । ଏମାନଙ୍କୁ 'କୁଟୁଣୀ'/ 'କୁଟୁଣୀ' କୁହାଯାଉଥିଲା । କେତେକ ପେଟ ପୋଷିବା ପାଇଁ ଡ଼କେଇତ ବୃତ୍ତି /କାର୍ଯ୍ୟ ଅବଲମ୍ବନ

କରୁଥିଲେ ।କେତେକ ଲୋକଙ୍କୁ ମାଡ଼ ମାରୁଥିଲେ ଓ ନିଜେ ମାଡ଼ ଖାଉଥିଲେ । ହଟହଟ । କରୁଥିଲେ ,କ୍ଷତି କରୁଥିଲେ ,ଖାଇ ଖାଇ ନିଜ ଜୀବନ ମଧ ଦେଉଥିଲେ ।

୩୩୨୨. ଏଇ ମନ ଯେବେ ପ୍ରସନ୍ନ ହୁଅଇ
ଦିଅଇ ଅଭୟ ବର ।
ଏଇ ମନ ଯେବେ ବିମୁଖ ହୁଅଇ
କରିଦିଏ ନାର ଖାର ।

ମଣିଷ ମଣିଷର ଉପକାର କରେ ,ପୁଣି କ୍ଷତି ମଧ ଘଟାଇ ଥାଏ । ଯେପରି ବନ୍ଧୁ ହେଲେ ଉପକାର, ଶତ୍ରୁ ହେଲେ ଅପକାର ହୁଏ ।

୩୩୨୩. ଏଇ କଥାକୁ ହାର ନାହିଁ
ଚାକୁଣ୍ଡା ଶାଗକୁ ମେଥି ପରଜା(= ମେଥିବ୍ଲୁକ ହୋଇଥିବା)
କହୁଣିଖିଆକୁ ଡ଼ର ନାହିଁ ।

ଅକାଳରେ ଲୋକେ ଚାକୁଣ୍ଡାଶାଗ ପରି ତୁଚ୍ଛ ପଦାର୍ଥ ଖାଇଥାନ୍ତି । ଏଇ ଶାଗକୁ କେହି ବ୍ଲୁକ କରେ ନାହିଁ । ସେହିପରି ମାଡ଼ ଖାଇଖାଇ ଯାହାର ଅଭ୍ୟାସ ପଡ଼ିଛି , ସେ ମାଡ଼କୁ ଡ଼ରେ ନାହିଁ ।

୩୩୨୪. ଏଇ ମାଇଁ ଭାତ ପରଷେ- ଘିଅ ସର ସର ,
ଏଇ ମାଇଁ ଭାତ ପରଷେ - ପିହାଣ (=ମାଟି ପଲମ) ଖଡ଼ ଖଡ଼,
ଏଇ ମାଇଁ ଏଇ ମାମୁଁ - ଏଇ ଡ଼ିହର ଘର ।

ଯେଉଁସ୍ଥାନରେ ଦିନେ ଆଦର ଅଭ୍ୟର୍ଥନା ,ସ୍ନେହ ଶ୍ରଦ୍ଧା ଏବଂ ଉତ୍ତମ ଭୋଜନ ମିଳୁଥିଲା ,ସେ ସ୍ଥାନରେ ଏବେ ତାହା ଦୁର୍ଲଭ । କେବଳ ବିଧିରକ୍ଷା ମାତ୍ର ହେଉଛି ।

୩୩୨୫. ଏଇ ହାତ ନେଇ ଜାଣେ ,ଦେଇ ଜାଣେନି ।- ଲାଞ୍ଚଖୋରମାନଙ୍କ ପ୍ରତି ।

୩୩୨୬. ଏଇ ହାତଟି ସବୁ ଜାଣେ ,ମାଛ ନ ଆଣି କଣ୍ଟା ଆଣେ ।- କୃପଣଙ୍କ ପ୍ରତି ।

୩୩୨୭. ଏଇ ପରା ତୁମ ଡ଼େଙ୍ଗା ଉଆସ
ଚିଲ ପଶି ବିଲ ଯାଉଛି
ଏଇ ପରା ତୁମ ସୁଆଗୀ ମାଇପ
ଲୁଣ ନାହିଁ ପେଜ ପିଉଛି ।

ଚାଳରେ ଛପର ନାହିଁ । ଘରେ ଚିଲ ପଶି କଣା ଚାଳ ବାଟେ ପଦାକୁ ଉଡ଼ି ଯାଉଛି । ତୋରାଣୀକୁ ଲୁଣ ନାହିଁ । ନିଜର ଦୁର୍ଭାଗ୍ୟ ଓ ଦୁରବସ୍ଥାକୁ ଲୁଚାଇ ବାହାପିଆଙ୍କପରି ନିଜ ବିଷୟରେ ବଡ଼ବଡ଼ କଥା କହିବା ।

୩୩୨୮. ଏଇ ବାଟେ ଯାଉ , କଥା ତୁ ନକହୁ
କଥା କି ମଣିଷ ଖାଇବ ?
ରଙ୍ଗ ଟହଟହ, ଶିମୁଳି ଫୁଲ
ସେକି ସବୁଦିନେ ରହିବ ?

ଖିମିଳି ଫୁଲର ଗରିମା ଅସ୍ଥାୟୀ ପରିମଣ୍ଡଳ ମଣିଷ ମଧ୍ୟରେ ମାନ ଅଭିମାନ ,କଳହ ଅସ୍ଥାୟୀ ହେବା ବିଧେୟ ।

୩୩୨୯. ଏଇ ବାଟେ ଗଲା, କଥା ନ କହିଲା
ଦହିଲା ମୋ ପଞ୍ଚ ମନ
ସବୁ ସରିଯିବ, କଥା ତ ରହିବ
କେତେ ଦିନର ଏ ଜୀବନ !

ଅଯଥା କଳିରେ ସମୟ ନଷ୍ଟ କରିବା ଅନୁଚିତ, ବୋକାମି ମଧ । କାରଣ ଜୀବନ ଅସ୍ଥିର ଓ କ୍ଷଣସ୍ଥାୟୀ ।

୩୩୩୦. ଏଇ ଚଣ୍ଡାକୁଣୀ ଯେବେ
ଟେକି ଦେବ ଅନ୍ନ
କାଳିଆ ସାଆନ୍ତ ତେବେ
କରିବେ ଭୋଜନ ।

ଲକ୍ଷ୍ମୀ ପୁରାଣର ଗୋଟିଏ ପଦ । ଶ୍ରୀ ଲକ୍ଷ୍ମୀ ,ଚଣ୍ଡାକୁଣୀ ହେଲେ ବି ସାଧାରଣ ଘରଣୀର ପ୍ରତୀକ କାଳିଆ ସାଆନ୍ତ ,ଶ୍ରୀ ଜଗନ୍ନାଥ ହେଲେବି ସାଧାରଣ ଗୃହସ୍ଥର ପ୍ରତୀକ । ଘରଣୀର ହାତରନ୍ଧା, ପରିବେଷଣ ଏବଂ ସ୍ନେହ ଓ ମମତାପୂର୍ଣ୍ଣ ଭାବର ମାଧୁରୀ ଗୃହସ୍ଥର ଏକାନ୍ତ ଉପଭୋଗ୍ୟ ।

୩୩୩୧. ଏଇସା ବୋଲି ବୋଲ
କୋହି ନେହିଁ ବୋଲେଗା -ଝୁଟ୍ ।
ଏଇସା ଜାଗା ମେ ବଇଠୋ
କୋହି ନେହିଁ ବୋଲେଗା - ଉଠ୍ ।

ଏପରି କଥା କହିବ ଯେପରି କେହି ମିଛ ବୋଲି କହିବେ ନାହିଁ । ଏପରି ଜାଗାରେ ବସିବ , କେହି ଯେପରି ଉଠିଯା ବୋଲି ନ କହନ୍ତି ।

୩୩୩୨. ଏଇ ମାଇପର ସାତ କାମ
ଧାନ କାଟେ ଆଉ ଚୁଷେ ଆମ (= ଆମ୍ବ) ।

ସାମାନ୍ୟ କାର୍ଯ୍ୟ କରି ନିଜକୁ କର୍ମଚଞ୍ଚଳ ବୋଲି ଦେଖେଇ ହେଉଥିବା ସ୍ତ୍ରୀ ପ୍ରତି ବ୍ୟଙ୍ଗ ।

୩୩୩୩. ଏଇ ବାଟେ କିଏ ଗଲା ଦେଖିଛକି ସହି
ମୁହିଁ ପକ୍ଷୀ ଜଟାୟୁ କିଛି ନ ଜାଣଇ
ଆହାର ନିମନ୍ତେ ଜଳକୁ ଥିଲି ଚାହିଁ
ରଥ-ବିମାନରେ ଯାଉଛି ଲଙ୍କାକୁ ବଇଦେହୀ (=ସୀତା) ।

୩୩୩୪. ଏଇ ଦୁଃଖରେ ଦୁଃଖୀ ମୁହିଁ
ନଈ କତାରେ(କୂଳରେ) ରହି ।

ଏଇ ଦୁଃଖରେ ଦୁଃଖୀ ମୁହିଁ
ପିଲା କାଳରୁ ରାଣ୍ଡି ।
ଏଇ ଦୁଃଖରେ ଦୁଃଖୀ ମୁହିଁ
ଚଳୁଛି ଉଧାର ନେଇ ।
ଏଇ ଦୁଃଖରେ ଦୁଖୀ ମୁହିଁ
ଶେଷରେ ବାହା ହୋଇ ।

୩୩୩୫. ଏକ ଚିଲମରେ ଏମିତି(ଯେମିତି) ସେମିତି
ଦୁଇ ଚଲମରେ ମଜା
ତିନି ଚିଲମରେ ଉଜୀର ଅମୀର
ଚାରି ଚିଲମରେ ରଜା । - ଗଞ୍ଜାଖୋରମାନଙ୍କର ଉକ୍ତି

୩୩୩୬. ଏକ ବୋଲରେ ଉଠେ ନା,
ପାଞ୍ଚ ବୋଲରେ ଯାନାଆନା (=ଯିବା ଆସିବା)।

୩୩୩୭. ଏକ କଥାରେ ମାନେ ନା,
ପାଞ୍ଚ କଥାରେ ଆନମନା ।

୩୩୩୮. ଏ ବାହାରେ ନ କରିବଟି ଆତ୍ମବନ୍ଦା ( =ଆତ୍ମ ପ୍ରଶଂସା)।
କାହାକୁ ମୁଖରେ ନ କହିବ ନିନ୍ଦା ।

୩୩୩୯. ଏକବାର ଯୋଗୀ , ଦୁଇବାର ଭୋଗୀ ,ତିନିବାର ରୋଗୀ ।
ଯୋଗୀ - ଥରୁଟିଏ ,ଭୋଗୀ - ଦୁ ଇଥର,ରୋଗୀ- ତିନିରୁ ଅଧିକ ଥର ଝାଡ଼ାଯାଏ ।

୩୩୪୦. ଏକ ଦୁଇ ତିନି ଚାରି ପାଞ୍ଚ ପନ୍ଦର
ଫୁର୍‌କିନା ଉଡ଼ିଗଲା ରାମ ଚନ୍ଦର ।
ରାମଚନ୍ଦ୍ର ନାମକ ବାଳକକୁ ଏ ପଦକ କହି ଚିଡ଼ାନ୍ତି ।

୩୩୪୧. ଏକଇ ଫଳ ଏକେ ଦେବା
ଆରେକ ମନ ନ ପାଇବା ।

୩୩୪୨. ଏକି ମୁହଁର ଥାଟ,
ମୁହଁ ଯେବେ ଅଛି ,ଆଇନା ସାତ ଆଠ ।

୩୩୪୩. ଏକି ଝିଅର ଶିରୀ
ବାଉଁଶ ବଣର ପ୍ୟାରୀ ।

୩୩୪୪. ଏକି ଝିଅର ରାହା
ରୂପ ପଡ଼ିଲେ ବାହା
ଏକି ବାହାରେ ବାହା ।
ଜଳୁଛି ସାତଟା ଦିଆ ।(=ଦୀପ)

୩୩୪୫. ଏକି ଦେଶର ଗୁଣ,
ଗୋଟିଏ ଗଛରେ ପାନ ସୁପାରି
ଗୋଟିଏ ଗଛରେ ଚୂନ ।

୩୩୪୬. ଏକି ଶାଗ ରାନ୍ଧିଲୁ ଖେନ୍ଦୀ
ପାଟ ଶାଗର ଝୋଳ
ଖେନ୍ଦା ନାକରେ ଘଡ଼ଘଡ଼ାଣୀ
ସାହି ସାହିରେ ଗୋଳ ।

୩୩୪୭. ଏକରେ ଏକ ,ପାପଡ଼ ଶେକ୍
ପାପଡ଼ କଟୋ (କଟେ) ,ଗୁରୁକୁ ମାରୋ । (ମାରେ)

ମହାତ୍ମା ଗାନ୍ଧୀ ପିଲାଦିନେ ଚାଟଶାଳୀରେ ବହୁକଷ୍ଟରେ କେଇକ ପଣିକିଆ ଶିଖିଥିଲେ ଏବଂ ଶିକ୍ଷକମାନଙ୍କୁ ଗାଳିଦେବା ମଧ ଶିଖିଥିଲେ । ସେତେବେଳେ ଉଲ୍ଲିଖିତ ପଦ୍‌ଟି ଶିକ୍ଷକଙ୍କ ଉଦ୍ଦେଶ୍ୟରେ ବୋଲୁଥିଲେ । ଏହା ମହାତ୍ମା ନିଜ ଆତ୍ମ ଜୀବନୀରେ ଲେଖିଛନ୍ତି ।

୩୩୪୮. ଏକପତ୍ନୀ ବ୍ରତ ପାଳିବ
ଏକପତି ବ୍ରତ ପାଳିବ ।

ହିନ୍ଦୁଶାସ୍ତ୍ରାନୁସାରେ ସ୍ୱାମୀ ଓ ସ୍ତ୍ରୀ ଉଭୟଙ୍କର ଏକମାତ୍ର ବ୍ରତ - ଯାହାପାଳନ କରିବା ବିଧେୟ ।

୩୩୪୯. ଏ ଅମୋଘ ଅସ୍ତ୍ର ଯାହାଠି ବାଜିଥିବ,ସେ ବୁଝିଥିବ ।

ମହାତ୍ମା ଗାନ୍ଧୀ ୧୫/୧୬ ବୟସରେ ଯେଉଁ ମର୍ମସ୍ପର୍ଶୀ ଅନୁଭୂତି ହାସଲ କରିଥିଲେ ତାହା ସେ ତାଙ୍କ ଆତ୍ମଜୀବନୀରେ ଲିପିବଦ୍ଧ କରିଛନ୍ତି । ତାହାହେଲା ବିଡ଼ିଖାଇବା, ଚୋରି କରିବା,ଓ ମାଂସ ଖାଇବା ପ୍ରଭୃତି ଯେ ଦୋଷାବହ ତାହା ଗାନ୍ଧୀଙ୍କୁ ଜଣାଥିଲା । ମାତ୍ର ସେ ଏ ଅପକର୍ମ କରି ଥିବାରୁ ଶୁଦ୍ଧ ହେବାପାଇଁ ନିଜର ଦୋଷ ସ୍ୱୀକାର ପୂର୍ବକ କ୍ଷମାପ୍ରାର୍ଥନା କରି ତାଙ୍କର ଶଯ୍ୟାଶାୟୀ ପିତାଙ୍କ ହାତରେ ପତ୍ରାକାରରେ ଲେଖି ଶାସ୍ତିବିଧାନ ପାଇଁ ତାଙ୍କ ନିକଟରେ ନତମସ୍ତକରେ ଦଣ୍ଡାୟମାନ ହୁଅନ୍ତେ ; ତାଙ୍କ ପିତା ପତ୍ରଟି ପଢି ଚିରି ଦେଲେ , ମୁକ୍ତା ବିନ୍ଦୁ ପରି ଆଖିରୁ ଝରିପଡ଼ିଲା ଆନନ୍ଦାଶ୍ରୁ । ଗାନ୍ଧୀଙ୍କୁ ଏହି ମୁକ୍ତାବିନ୍ଦୁର ପ୍ରେମବାଣ ବିଦ୍ଧ କରିଥିଲା, ସେ ଶୁଦ୍ଧ ହେଲେ । ସେ ସ୍ୱୀକାର କରିଥିଲେ ଯେ - ଏ ପ୍ରେମ ଯେ ଅନୁଭବକରିଥିବ ସେ ଜାଣିଥିବ । ତେଣୁ ମହାତ୍ମାଙ୍କ ମତରେ ଶୁଦ୍ଧଅହିଂସା ଯେତେବେଳେ ବ୍ୟାପକ ରୂପ ଧାରଣ କରେ ସେତେବେଳେ ତା' ସ୍ପର୍ଶରୁ କିଏ ଅଲିପ୍ତ ରହିପାରେ ? ଏପରି ବ୍ୟାପକ ଅହିଂସାର ବଳକୁ କଳନା କରିବା ଅସମ୍ଭବ ।

୩୩୫୦. ଏକ ସ୍ୱପ୍ନକୁ ରାତି କାହିଁ ?

ଗୋଟାଏ ସ୍ୱପ୍ନ ଦେଖୁ ଦେଖୁ ରାତି ପାହିଗଲା ପରି ମନୁଷ୍ୟର ଆଶା ବା କାମନା ପୂର୍ଣ୍ଣ ହେବା ଆଗରୁ ଜୀବନ ସରିଯାଏ ।

୩୩୫୧. ଏକ ପା'ନ ଖାଏ ଭୋଗୀ,
ଦୁଇ ପା'ନ ଖାଏ ରୋଗୀ.
ତିନି ପା'ନ ଖାଏ ମୂଲିଆ ବାପୁଡ଼ା

୩୩୫୨. ଏକେ ଶୁଇ ମାଇପ ,ତହିଁକି ବୟସରେ ବଡ଼ା

ବୃଦ୍ଧାବସ୍ଥାରେ ଯୁବତୀ ସ୍ତ୍ରୀର ବେଶବିନ୍ୟାସ ଓ ଛଇ ସ୍ୱାମୀକୁ ଦୁଃଶ୍ଚିନ୍ତାର ପକାଇଥାଏ ।

୩୩୫୩. ଏତ ବାପ ,ତହୁଁ ବୟସରେ ବଡ଼ ।

୩୩୫୪. ଏ କଥା କହିବି କାହାକୁ ?
ଛୁଆଙ୍କ ପେଇଁକି ଆଧାର ଆଣିଲି
ଆଧାର ଗିଳିଲା ଛୁଆକୁ ।

୩୩୫୫. କିଏ ବା ଉଠୁଛି କିଏ ବା ପଡୁଛି ତୁମ୍ଭନାମେ ଆଠ ପହର ।

୩୩୫୬. ଏକତାରେ ସ୍ଥିତି, ବିଭେଦରେ ବିଲୁପ୍ତି ।

*ଏକାର୍ଥରେ* - ଇଂରାଜୀ ପ୍ରବାଦ-United we stand ,devided we fall.

୩୩୫୭. ଏକଣା (=ଏକଲା)ଘରକୁ କିଏ ସେ ମାରେ ଟେକା
କାନ୍ତ ଯାଇଛନ୍ତି ବିଦେଶ ସପନେ ନାହିଁ ଦେଖା । -( ଚାଷୁଣୀ ଢମାଳି)

୩୩୫୮. ଏକେଣିକା (=ଏକାକି)ଯାଉଛୁ କାହାଘର ବୋହୂ
ମୁଣ୍ଡରେ ଉଢୁଣା (=ଓଢଣା) ଯେ କଥାଏ ନ କହୁ
ଏକି କଥା କହିବି ପିଲାରେ ଦିଅର
କଥା କୁହା ଯେ ବେଳ ନୁହଇ ନଣନ୍ଦ ସଙ୍ଗତର ।

୩୩୫୯. ଏକାଳ ମହରଗ ଯୁଗରେ ଲକ୍ଷେ ଅର୍ଜିଲେ ପକ୍ଷେ ଅଣ୍ଟୁ ନାହିଁ ।

୩୩୬୦. ଏ କଥା ସତ ,ହେଲେ ମନକୁ ପାଇ ନାହିଁ ।

୩୩୬୧. ଏକାଦଶ ବୃହସ୍ପତି ।

ଜନ୍ମଲଗ୍ନଠାରୁ ଏକାଦଶ ସ୍ଥାନରେ ବୃହସ୍ପତିଙ୍କ ଅବସ୍ଥାନ ସମୃଦ୍ଧି ସୂଚକ ।

୩୩୬୨. ଏ ରୋଗକୁ ଔଷଧ ନାହିଁ ।

୩୩୬୩. *ଏକାର୍ଥରେ*- ଏ ରୋଗର ଏଇ ଔଷଧ ।

୩୩୬୪. *-ଏଜନ* - ଭିନ୍ନ ରୋଗର ଭିନ୍ନ ଔଷଧ ।

୩୩୬୫. -ଏକନ- ଯେମିତି ରୋଗ ସେମିତି ଔଷଧ । - ଗୁଣି/ଓଝାର କଥନ ।

**ଶିଶୁମନୋରଞ୍ଜନ ପଦାବଳୀ**

୩୩୬୬. ଏକ ଯେ ଥିଲା ବହୁରୂପୀ
ସେ ଥାଏ ତାଳ ଗଛେ ଲୁଚି ।
ଦାନ୍ତ ଦିଟା ତାର ମୂଳା ପରି
ପିଠିଟା ତାର କୁଳେଇ ସରି ।
କାନ ଦିଟା ତାର ନୋଚା କୋଚା
ଆଖି ଦିଓଟି ଉଲ୍ମେଇ ଶିଖା ।
ଅଣ୍ଟାରେ ପୂରେଇ ପାଳ ଡ଼ୋର
ବୁଲୁଥାଏ ସେ ଘରକୁ ଘର ।
ଯେଉଁ ପିଲାଟି କାନ୍ଦେ
ତାକୁ ଝୁଲିରେ ପୂରେଇ ବାନ୍ଧେ ।
ଗଛଉପରେ ଚଢି
ଦିଏ ତାକୁ କଚାଡ଼ି ।

୩୩୬୭. ଏକ ଯେ ରାଜା
ସେ ଖାଏ ଖଜା ।
ଏକ ତା' ରାଣୀ
ସେ ଖାଏ ଫେଣି ।
ଏକ ତା' ପୁତା
ସେ ଖାଏ ଗୁଆ ।
ଏକ ତା' ବୋହୂ
ସେ ଖାଏ ମହୁ
ଏକ ତା' ଝିଅ
ସେ ଖାଏ ଘିଅ
ଏକ ତା' ଚାକର
ସେ ଖାଏ ବାଖର

ବମ ଫୁଟିଲା ଗୁଡୁମ
ନଡ଼ିଆ ପଡ଼ିଲା ଦୁମ୍ ।

୩୩୬୮. ଏକ ଯେ ରାଜା
ସେ ଖାଏ ଖଜା,
ତାର ଯେ ରାଣୀ
ସେ ଖାଏ ଫେଣି,
ତାର ଯେ ବେଟା
ସେ ଖାଏ ପିଠା,
ତାରଯେ ବୋହୂ
ସେ ଖାଏ ମହୁ ,
ତାର ଯେ ଝିଅ
ସେ ଖାଏ ଘିଅ,
ତାର ଯେ ଚାକର
ସେ ଖାଏ ବାଖର,
ନିକମା ଘୁମା
ଧୁମୁସା ବାଜେ ଧୁମ ଧୁମା ।

୩୩୬୯. ଏପାରିର ଗବ ଗଛଟି ,ବହୁ ଜଡ଼ା ଫଳେ
ଛଟ ପଟ ହେଲି ମୁହିଁ ,ଖାଇ ଜଡ଼ା କଳେ ।
ପ୍ରାଣ ହେଲା ତାଇ ତାଇ , ଗଳା ହେଲା କାଠ,
କେତେକ୍ଷଣ ଲାଗିବ ଭାଇ,ହରଗୌରୀ ହାଟ ।
ହରଗୌରୀ ହାଟରେ ଭାଇ , ପାକୁ ପାକୁ ପାନ ,
ପାନ କିଣିଲି ଚୂନ କିଣିଲି, ଭୁଲି ଗଲା ମନ.
ପାନ ଗୋଟିକ ହଜିଗଲା, ଭାଇ ହେ ତମେ ଆଣ,।
ଭାଇ ଭାଇ କୁହାଟିଲି, ଭାଇ ନାହାନ୍ତି ଘରେ ,
ସୁବଳ, ସୁବଳ ଡ଼ାକ ଛାଡ଼ିଲି,ସୁବଳ ଥିଲା ଘରେ ।
ଆଜି ସୁବଳର ମଙ୍ଗଳନ, କାଲି ସୁବଳର ବାହା;
ରାଜନଗର ଦେଇ ଯିବି, କେହି ନାହିଁ ତାର ସାହା ।

ରାଜ ନଗର ନଈ ତୁଠରେ ଝିଅଟିଏ ଗାଧୋଉଛି,
ଚିକଣ ଚାକଣ କେରିକେରିବାଳ ,ନଇଁପଡ଼ି ସେ ଝାଡୁଛି ।
ହାତରେ ତାର ଦେବ ଶଙ୍ଖା, ମେଘ ଘୋଟିଛି,
କଣ୍ଠରେ ତାର ତଣ୍ଡି ମାଳା,ରକ୍ତ ଝରୁଛି ।
ପିନ୍ଧିଛି ସେ ତୁରିଆ ଶାଢୀ,ଫେରି ଚାହିଁଛି ;
ଦୁଇ ପଟେ ଦୁଇଟି ଭାକୁର ଭାସି ଉଠିଛି ।
ଗୋଟିଏ ନେଲେ ଗୁରୁ ଗୋସାଇଁ ,ଆରଟି ନେଲା କିଏ ?
କିଏ? ଡ଼ାକିଲା ଯିଏ ,ସେ କଷାଗାମୁଛା ନିଏ ।
ଅଷ୍ଟପଟର ଧନିଆଁ ,ଗୌରୀ ବେଟୀ କନିଆଁ ।
ନେକା ଟୋକା ବର
ଡମ କୁଡୁ କୁଡୁ ବାଇଦ ବାଜେ ,ଧଡ଼ ଧଡ଼ ହୁଏ ଘର ।

୩୩୭୦. ଏକା ଆସିଛି ,ଯିବି ମୁଁ ଏକା,
କାହା ସାଙ୍ଗରେ କାହାର ଦେଖା ।

୩୩୭୧. ଏକେତ ଭାତ ରାଣ୍ଡର ,ତହିଁକି ଡ଼ାଲି ମସୁର ।

ମସୁରଡ଼ାଲିକୁ ଆମିଷ ବୋଲି ଧରାଯାଏ । ତେଣୁ ଏହି ଡ଼ାଲି ବିଧବା ସ୍ତ୍ରୀ ପକ୍ଷରେ ଗ୍ରହଣଯୋଗ୍ୟ ନୁହେଁ ।

୩୩୭୨. ଏକା ଗଲା ପାଣି ଆଣିବାକୁ
ସାଥିରେ ଆଣିଲା ପ୍ରାଣକାନ୍ତକୁ ।

୩୩୭୩. ଏକାଦିନେ କି କେହି ହୋଇଛି ବଡ଼ ?
ଏକା ହୋଇ କି କେହି ଜିଣିଛି ଗଡ଼ ?

୩୩୭୪. ଏକ କାର୍ଯ୍ୟେ ଦୁଇ ତିନି ମାଲିକ ହେଲେ
ସେ କାର୍ଯ୍ୟ ନାଶ ଯାଏ ବିରୋଧ ଘଟିଲେ ।

୩୩୭୫. ଏକ ପୁଅ ,ସୁନା ଦାନା
ପାଞ୍ଚ ପୁଅ ,ଗାଣ୍ଡି ଟଣା ।

୩୩୭୬. ଏକ ମରେ ଜିଦ୍‌ରେ ,ଆରକ ମରେ ବାଦରେ ।

୩୩୭୭. ଏକେତ ବିଲେଇ କଳା,
ତେଣୁ ଗାଣ୍ଡି ପହଁରା ଦେଲା ।

୩୩୭୮. ଏକେତ ବିଲେଇ କଳା,
ଧୂଳିରେ ଗଡ଼ି ଗଡ଼ି ରୂପ ଫିଟିଲା ।

୩୩୭୯. ଏ'କର (ଜଣକର) ଘା'
ଆରକର (ଅପରର) ବ୍ୟଥା ।

୩୩୮୦. ଏ'କର (ଜଣକର) ବୋଝ ,ଦଶର ବାଡ଼ି ।

୩୩୮୧. *ଏକାର୍ଥରେ*--ଦଶଜଣର ବାଡ଼ି ,ଜଣକର ବୋଝ ।

୩୩୮୨. ଚେଙ୍ଗ ଯାଏ ବେଙ୍ଗ ଯାଏ
ଚୂନା ପୁଣ୍ଟି (=ପୁଣ୍ଟିମାଛ) ଫରଫରାଏ(ଫଡ଼ ଫଡ଼ ହୁଏ) ।

ନୀଚ ଲୋକ ସାମାନ୍ୟ ଅବସ୍ଥାପନ୍ନହେଲେ ଖୁବ୍ ବଡ଼ିମା କରେ । କିନ୍ତୁ ଉଚ୍ଚ ଶ୍ରେଣୀର ଲୋକ ସର୍ବଦା ବିନୟୀ ହୋଇ ଥାଆନ୍ତି ।

୩୩୮୩. *ଏକାର୍ଥରେ* - ବାମୁଣ (=ବ୍ରାହ୍ମଣ) ,କରଣ ,କ୍ଷେତ୍ରିଙ୍କ ସଭ୍ୟ ହେବା ଦେଖି
ହାଡ଼ି ,ଡ଼ମ ,ମୁଚି ବସିଲେ ଯେ ଅଡ଼ି ।

୩୩୮୪. ଏକେତ କେଉଟ ପୁଅ ,ପୁଣି ଗାଣ୍ଡିରେ ଗୁହ ।

୩୩୮୫. ଏକେତ ମଧୁ ପର୍କର ( =ଦୁଧ ,ଦହି, ମହୁ,ସର୍କରା ଜଳ ମିଶ୍ରିତ ନୈବେଦ୍ୟ)
ବାଟି ତହିଁକି ଅଛି ଅଣେଇ । - ମୂଲ୍ୟବାନ ପଦାର୍ଥର ଅଯତ୍ନ ।

୩୩୮୬. ଏକେ (=ଜଣେ) ଧରନ୍ତି ଯାହାକୁ ,
ଦଶେ (= ଦଶ ଜଣ) ବେଢ଼ନ୍ତି ତାହାକୁ ।

୩୩୮୭. ଏକେନ ପାପ ,ଶତେନ ପାପ ।- ଗୋଟିଏ ପାପ ଯାହା ,ଶହେ ପାପ ତାହା ।

୩୩୮୮. ଏ କେବଳ ତଷୁ କୁଟିବା ।- ନୀରର୍ଥକ କାର୍ଯ୍ୟ କରିବା ।

୩୩୮୯. *ଏକାର୍ଥରେ*-ଏ କେବଳ ତଷୁ ସାଉଁଟିବା କଥା ।

୩୩୯୦. *ଏକାର୍ଥରେ* - ଏ ଖାଲି ତଷୁ କୁଟିବା ସାର ।

୩୩୯୧. ଏକା ଚୋଟରେ ଗଛ ପଡ଼େନି ।

୩୩୯୨. ଏକାଖିଆ ହରିଣ ।

ଅନ୍ୟ ଚକ୍ଷୁରେ ଦେଖିପାରେ ନାହିଁ ବୋଲି ସହଜରେ ତାକୁ ବଧ କରିହୁଏ । ତୀକ୍ଷ୍ଣ ଦୃଷ୍ଟି ନଥିବା ଲୋକକୁ ବ୍ୟଙ୍ଗ ।

୩୩୯୩. ଏକ (=ଗୋଟିଏ) ଚକରେ ରଥ ଚାଲେନା ।

୩୩୯୪. *ସଂସ୍କୃତରେ* - ଏକ ଚକ୍ରେନ ରଥଃ ନ ଗଚ୍ଛତି/ଧାବତି ।

୩୩୯୫. ଏକ କଳସୀ ଦୁଃଖରେ ଏକ ଛିଟା ଗୋବର ।

୩୩୯୬. ଏକା ଖାଏ ଆଉ ଚାହେଁ ,

ଚାହୁଁ ଚାହୁଁ ମଶାଣି ଯାଏ ।

୩୩୯୭. ଏକ ଗୋଛାତୃଣ ଦି' ଗୋଛା ହେଲା ,
ସୁନାର ସଂସାର ପାତାଳେ ଗଲା ।

୩୩୯୮. ଏ ଗଛର ଛାଲ (=ବକଲ) ,ଆର ଗଛରେ ଯୋଡ଼ି ହୁଏନା ।

୩୩୯୯. ଏକା ଖୁରରେ ମୁଣ୍ଡ ଟାଙ୍ଗର ।

୩୪୦୦. ଏକା ଚାହେଁ ଆଉ ପାଏ,
ଭଙ୍ଗା ଡ଼ଙ୍ଗା ଦି' ହାତରେ ବାହେ ।

୩୪୦୧. ଏକେତ ଚାଳିଆ ,ତହିଁକି ପରଚାଳି (=ଲଙ୍ଗଳ ଯୁଆଳିର ବାକୁଲି) ।

ଦରିଦ୍ର ଲୋକର ବାହାଦୁରୀ ପ୍ରତି କଟାକ୍ଷ ।

୩୪୦୨. ଏକ ଶିରା ପାନ୍ ଦି' ଶିରା ହେଲା,
ସୁନା ପାଟରେ ଭାଗ ବସିଲା ।

୩୪୦୩. ଏକ ଚାନ୍ଦରେ ଜଗତ ଆଲ (=ଆଲୁଅ) ।

୩୪୦୪. *ସଂସ୍କୃତରେ-* ଏକଃ ଚନ୍ଦ୍ର ତମଃହନ୍ତି , ନ ଚ ତାରା ଶତୈର୍ପି ।

ଚନ୍ଦ୍ର ଏକାକୀ ଜଗତରୁ ଅନ୍ଧକାର ଦୂର କରିବା ପାଇଁ ସକ୍ଷମ । ଅଥଚ ଶତ ତାରା ଏଥିପାଇଁ ଅକ୍ଷମ । ସେହିପରି ଏକମାତ୍ର କରିତକର୍ମାବ୍ୟକ୍ତି ସଂସାରରୁ ଅନ୍ୟାୟ ଅବିଚାର ଦୂରକରି ପାରେ କିନ୍ତୁ ଶହ ଶହ ବିଚାରଶୂନ୍ୟ ବ୍ୟକ୍ତି ପକ୍ଷରେ ତାହା ଅସମ୍ଭବ ।

୩୪୦୫. *ଏକାର୍ଥରେ-* ଏକ ଚାନ୍ଦ ଆଲୋକିତ କରଇ ଜଗତ
ଶହ ଶହ ତାରାପକ୍ଷେ ତାହା ଅସମ୍ଭବ ।

୩୪୦୬. ଏକଛଡ଼ା ଦୁଇ ନାହିଁ ।

୩୪୦୭. *ଏକାର୍ଥରେ* -ଏକ ବ୍ରହ୍ମ ଦ୍ୱିତୀୟ ନାସ୍ତି ।

୩୪୦୮. *-ଏଜନ-* ଏକ ମେବାଦ୍ୱିତୀୟମ୍ (= ଏକ ବ୍ରହ୍ମ,ଦ୍ୱିତୀୟ ନାହିଁ )

୩୪୦୯. *-ଏଜନ-* ଏକମେବ ଅଦ୍ୱିତୀୟ ବ୍ରହ୍ମ ।

ବ୍ରହ୍ମ ସତ୍ୟ ,ଜଗତ ମିଥ୍ୟା,ଈଶ୍ୱର ହିଁ ଏକ ,ଦ୍ୱିତୀୟ ନାସ୍ତି ।- ଜଗତ ଗୁରୁ ଶଙ୍କରାଚାର୍ଯ୍ୟଙ୍କ ବାଣୀ ।

୩୪୧୦. *-ଏଜନ-* ଏକକୁ ଛାଡ଼ି ଦୁଇ ନାହିଁ ।- ଏକ ବ୍ରହ୍ମ ଦ୍ୱିତୀୟ ନାସ୍ତି ।

୩୪୧୧. ଏକ ଛଡ଼ା ନାହିଁ ଗତି,
ସେଇ ମୋର ପ୍ରାଣପତି ।

୩୪୧୨. ଏକ ଜାଗାରେ ଖାଲ ଖୋଳି,
ଆଉ ଏକ ଜାଗାରେ ଖାଲ ପୋତିବା ।

୩୪୧୩. ଏକ ଗୁଣ ପୁଅର ,ତିନିଗୁଣ ବିକ୍ରମ ।

୩୪୧୪. ଏକ ଗୁଣ ଦେଲେ ,ସାତ ଗୁଣ ପାଇ ।

୩୪୧୫. ଏକ ଗୁଣ ରାମାୟଣ ,ତାର ତିନିଗୁଣ ଭାବାୟନ ।

୩୪୧୬. ଏକା (ଗୋଟିଏ) ଗୁହାଳର ଗୋରୁ ।

୩୪୧୭. ଏକା (ଗୋଟିଏ) ଗୁଳିରେ ଦୁଇଟି ବାଘ ମାରିବା ।

୩୪୧୮. *ଏକାର୍ଥରେ* -ଏକା (ଗୋଟିଏ) ଟେକା (ବାଟୁଳି) ରେ ଦୁଇଟି ପକ୍ଷୀ ମାରିବା

ଇଂରାଜୀରେ ଏହାର ପ୍ରତିବିମ୍ବିତ ପ୍ରବାଦ ହେଲା - To kill two birds at a stone .ପାପ କରିବା ପାଇଁ ମନରେ ଇଚ୍ଛା ପ୍ରକଟ ହେଲେ ,ପୂର୍ବକୃତ ପାପପାଇଁ ଅନୁତାପ କରିବା । ପ୍ରବାଦଟି ଏହିପରି କ୍ଷେତ୍ରରେ ପ୍ରଯୁକ୍ତ ।

୩୪୧୯. ଏକ ଘର ପାପରେ
ଚାଳିଶ ଘର ଶାପରେ(=ଅଭିଶାପ) ।

୩୪୨୦. ଏକ ଘରେ ତିନି ଘରଣୀ
କାନ୍ଦି କାନ୍ଦି ମଲା ରାନ୍ଧୁଣୀ ।

୩୪୨୧. ଏକ ଘରେ ଜଣେ ଚତୁର,
ଜଣେ ମଲେ ପାଞ୍ଚ ଜଣ ଫତୁର(=ଦରିଦ୍ର) (ଆତୁର) ।

୩୪୨୨. ଏକ ବ୍ୟଞ୍ଜନ ଭାତ ,ତହିଁକି ଲୁଣରେ ବିଷ ।

୩୪୨୩. ଏକ ଭରି (ରତି) ସୁନା,ସତର ଜଣ ବଣିଆ ।

୩୪୨୪. ଗୋଟାଏ ମୁହଁ ,ସୁନାଦେଲେ ପୁରେ,
ପାଞ୍ଚ ମୁହଁ ,ପାଉଁସ ଦେଲେ ବି ପୁରେ ନି ।

୩୪୨୫. ଏକ ରତିର ମଣିଷ ନୁହେଁ , ସାତ ରତିର ଆଳାପ ।

୩୪୨୬. ଏକଲା ମାଆର ଝିଅ,ଗର୍ବ କରିବ ନିତ କହ ?

୩୪୨୭. ଏକା ରକ୍ତର ବନ୍ଧନ,
ତହିଁରେ ନାହିଁ ଘୃଣା,
ସାଇ ପଡ଼ିଶା ଲୋକଙ୍କର
( ଖାଲି) ମୁହଁ ଚିକକ ଜଣା ।

୩୪୨୮. ଏକା ହାଟରେ ପିଆଜ ବିକିଲୁ ଟଙ୍କା, ମୌଲା ହେଲୁ କେବେ ?

୩୪୨୯. ଏକ (ଗୋଟିଏ) ଦୁଆର ମୁଦା,ହଜାର ଦୁଆର ଖୋଲା ।
( ଭିକାରୀମାନଙ୍କ ସମ୍ପର୍କରେ ଉକ୍ତି)

୩୪୩୦. ଏକେ ବୁଢିର ଫଟ ଫଟ ,ନାକ ଉପରେ ବିଷ ଫୋଟ ।

୩୪୩୧. *ଏକାର୍ଥରେ* - ଏକେ ମାତାଲର ତିନି ଦୋଷ,
ନାକ ଅଗ୍ରେ ହେଲା ଖସ ( =କୁଣ୍ଡିଆ) ।

୩୪୩୨. ଗୋଟିଏ ଭଲ ଗୋରୁ ଯାହାର,ଗାଁଟା ଯାକ ତାହାର ।

୩୪୩୩. ଏକ ବେଲିଆ (=ରସିକ) ଏକାଇ ହଜାରେ ,
ଏକଲା କରେ ଗାଁ ଉଜାଡ଼ ।
ଘର ଭିତରେ ନ କୁହେ କଥା,
ବାହାରେ ଗଲେ ଠେଙ୍ଗା ମାଡ଼ ।

୩୪୩୪. ଏକ ତାଡ଼ିଆ ( = ମଧ ଭଳିଆ ହାଣ୍ଡି ) ତେଲ , ଅଣେଇଲେ ଗଲ ।

୩୪୩୫. ଏକ ରାତିର ଦେଖା,ତୁମେହିଁ ପ୍ରାଣ ସଖା ।

ଜଣେ ପୁରୁଷ ଓ ସ୍ତ୍ରୀ ଏକାଠି ଗୋଟିଏ ରାତ୍ରିଯାପନ କଲେ ପୁରୁଷ ଉକ୍ତ ସ୍ତ୍ରୀକୁ ପତ୍ନୀ ରୂପେ ଓ ସ୍ତ୍ରୀ ପୁରୁଷକୁ ସ୍ୱାମୀ ରୂପେ ଗ୍ରହଣ କରିବାର ପ୍ରଥା ପୂର୍ବେ ପ୍ରଚଳିତ ଥିଲା । ପୁରାଣରୁ ଏହା ସୂଚିତ ହୁଏ ।

୩୪୩୬. ଏକ ରାସ୍ତାରେ ସଭିଏ ଯାନ୍ତି ,
କିଏ ବା ଯାଏ ଭଲରେ ,କିଏବା ପଡ଼େ ଝୁଣ୍ଟି ।

ଜୀବନ ଯାତ୍ରାର ରାସ୍ତା ସମସ୍ତଙ୍କ ପାଇଁ ଗୋଟିଏ । କିଏ ଭଲ ବାଟରେ ଧାବିତ ହୁଏ ତ କିଏ ବିପଥଗାମୀ ହୋଇଥାଏ ।

୩୪୩୭. ଏକ ଲକ୍ଷ ପୁତ୍ର ତୋର ଅସୁମାରି ନାତି ,
ନ ରହିଲେ କେହି ଜଣେ ଜାଳିବାକୁ ବତୀ ।

ଈଶ୍ୱରଙ୍କୁ ବେଖାତିର କରି ପାପକର୍ମ ତଥା ଅନୀତିରେ ଲିପ୍ତରହିଲେ ମହାପଣ୍ଡିତ ହେଲେ ମଧ ସେ ସବଂଶରେ ନିପାତ ହୋଇଥାଏ । ରାମାୟଣର ଲଙ୍କାକାଣ୍ଡରେ ରାବଣ ସମ୍ପର୍କରେ ଏହି ଉକ୍ତିଟି ପ୍ରଯୁକ୍ତ ।

୩୪୩୮. ଏ ବଂଶରେ (କୁଳରେ) ବତୀ ଦେବା ।

କୁଳକୁ ଉଜ୍ଜ୍ୱଳ କରିବା ଅର୍ଥରେ ପ୍ରଯୁକ୍ତ ।

୩୪୩୯. *ଏକାର୍ଥରେ* - ଦି କୁଳେ ଦେଇ ବତୀ , ଜୀବନ ତେଜିଲା ସତୀ ।

୩୪୪୦. ଏକଲା ଘରେ ମେକଲା
ଖାଇବା ବଡ଼ ସୁଖ୍
ମରିତେ ଗଲେ ଧରିତେ ନାହିଁ
ଏଇଟା ବଡ଼ ଦୁଃଖ ।

ଏକୁଟିଆ ଅବିବାହିତ ଲୋକ ଆନନ୍ଦରେ ଖାଇପିଇ ନିଶ୍ଚିନ୍ତରେ ଜୀବନ ବିତାଏ । ମାତ୍ର ବୃଦ୍ଧାବସ୍ଥାରେ ତାର ଦୁଃଖ ବୁଝିବାକୁ ପାଖରେ କେହି ନଥାନ୍ତି ।

୩୪୪୧. ଏକଲା ଘରର ବୋହୂ ହେବି (ହେବ),
କୁଣ୍ଡିକାଠି ଝୁଲେଇ ଗାଧୋଇ ଯିବି (ଯିବ) ।

ବହୁ କୁଟୁମ୍ବି ପରିବାରର ଝିଅଟିଏ ଦୈବ କ୍ରମେ ଶାଶୁ ,ଶ୍ୱଶୁର ,ନଣନ୍ଦ ,ଭାଉଜ,ଦିଅରବିହୀନ ପରିବାରର ବୋହୂଟିଏ ହୋଇଗଲେ ବହୁକୁଟୁମ୍ବି ପରିବାରର କଟକଣା ସେଠାରେ ନ ଥାଏ । ତେଣୁ ସେ ବେପରବାଏ ହୋଇ ସମସ୍ତଙ୍କ ପାଖରେ ଏପରିକି ନିଜ ବାପଘର ପରିବାର ବର୍ଗଙ୍କ ପାଖରେ ମଧ ନିଜ ବାହାଦୂରୀ ପ୍ରଦର୍ଶନ କରିଥାଏ । ସେ ଯେ ବହୁକୁଟୁମ୍ବି ପରିବାରର କଟକଣା ମଧରେ ବଢିଥିଲା ସେ କଥା ଭୁଲିଯାଏ ।

୩୪୪୨. ଏକ ଦଣ୍ଡାରେ (ଠେଙ୍ଗାରେ) ସାତ ସାପ ମାରିବା ।

ନିଜର ବଡ଼ପଣ ଓ ବାହାଦୂରୀ କଥା କହି ହେଣ୍ଡି ମାରୁଥିବା ଲୋକପ୍ରତି ବ୍ୟଙ୍ଗ ।

୩୪୪୩. ଏକ ଶଯ୍ୟାର ସାଥି ,ସାଙ୍ଗରେ କଟେ ରାତି ।

ପତି ତାର ପତ୍ନୀ ସହିତ ଗୋଟିଏ ଶଯ୍ୟାରେ ରାତ୍ରି ଯାପନ କରିବା ସର୍ବ ସମ୍ମତ । ମାତ୍ର ଅବିବାହିତ ନାରୀ ଓ ପୁରୁଷ ମଧରେ ଉଚ୍ଛୃଙ୍ଖଳତା ପାଇଁ ସେମାନଙ୍କୁ ବ୍ୟଙ୍ଗ କରାଯାଇଛି ।

୩୪୪୪. ଏକ ସାଥିରେ ପାଞ୍ଚ ଭାଇ ,
ଶେଷରେ ହେଲା ଠାଇ ଠାଇ (= ଚାପୁଡ଼ା ମାରିବା )।

ପାଞ୍ଚ ଭାଇ ବାଲ୍ୟକାଳରୁ ଏକାଠି ରହି ଆସୁଥିଲେ ମଧ ବିବାହପରେ ବୋହୂମାନଙ୍କ କଥାରେ ପଡ଼ି ପରସ୍ପର ମଧରେ ବିବାଦ କରିଥାଆନ୍ତି । ସେଥିପାଇଁ କୁହାଯାଇଛି ଯେ - ଦୁଇଟି ଷଣ୍ଢା(= ଅଣ୍ଡିରା କୁକୁଡ଼ା) ଏକାଠି ରହିପାରିବେ , ମାତ୍ର ଦୁଇଟି କାଟୁଳି (= ମାଈକୁକୁଡ଼ା) ଏକାଠି ଅବସ୍ଥାନ କରିପାରିବେ ନାହିଁ। ସୃଷ୍ଟିର ଏକ ବୈଚିତ୍ର୍ୟ ।

୩୪୪୫. ଏକ ହାତ ହଲେ ନି ,ଦୁଇହାତ ହଲେ ।

ଚାଲିଲାବେଳେ ଦୁଇହାତ ଆପେ ଆପେ ହଲେ । ଏହା ସୃଷ୍ଟିର ବୈଚିତ୍ର୍ୟ ।

୩୪୪୬. ଏକ ହାତରେ ତାଳି ବାଜେନି ।

୩୪୪୭. ଏକ ହାତ ପାଦରେ ,ଏକ ହାତ ମଥାରେ ।

ଚରଣ ଚୁଟିଆ ପ୍ରକୃତିର ଲୋକ ।

୩୪୪୮. ଏକ ହାତ ନେବା । - ପ୍ରତିଶୋଧ ନେବା ।

୩୪୪୯. ଏକ ହାତରେ ଢାଲ , ଏକ ହାତରେ ତରୁଆଲ । ଲଢିବି କେମିତି ?

ଦୁଇହାତ ଯୋଡ଼ିବା ଅର୍ଥାତ୍ ଯୋଡ଼ ହସ୍ତ ହେବା ।

୩୪୫୦. ଏକ ଉମ୍ନେଇରେ (= ଉଠା ଚୁଲି) ତିନି ରାନ୍ଧୁଣୀ ।
ପୋଡ଼ି ମରେ ଯିଏ ପେଜ ଗାଳୁଣୀ ।

୩୪୫୧. ଏକାହିଁ ଏକଶ (= ଏକ ଶହ)।

ନିଜକୁ ବହୁ ବଡ଼ିମା ଦେଖାଉଥିବା ଲୋକ ପ୍ରତି କଟାକ୍ଷ ।

୩୪୫୨. ଏକା କାନ୍ଦି ,ଏକା ହସି;ଗରମ ଛାଡ଼ି ଖାଏ ବାସି ।

ଏପରି ଆଚରଣ କରୁଥିବା ବ୍ୟକ୍ତି ପାଗଳ।

୩୪୫୩. ଏ କିବା ବିଧିର ବିବେଚନା,ଲୌହ ଦନ୍ତେ ତାଡ଼େ ସୁନା ।

କଠିଣ ପରିଶ୍ରମ ବଳରେ ଐଶ୍ୱର୍ଯ୍ୟ ପ୍ରାପ୍ତି ହୋଇଥାଏ ।ଏହାହିଁ ଐଶ୍ୱରିକ ସିଦ୍ଧାନ୍ତ ।

୩୪୫୪. ଏକ ଚାହେଁ , ଆରକ ପାଏ
ଏକ ଖାଏ , ଏକ ଥିପାଏ ( =ଚୋପାଏ) ।

୩୪୫୫. ଏକେତ ଉମା (=ଉଷ୍ଣ),ତହିଁରେ ତୁଷର ଧୂମା (=ଧୂଆଁ)।

୩୪୫୬. ଏକେତ ହନୁମାନ ,ତହିଁକି ରାମର ବାଣ ।

ଯେତେବଳ ଓ ଶକ୍ତି ପ୍ରୟୋଗ କଲେ ମଧ ,ଐଶ୍ୱରିକ ଶକ୍ତି ପ୍ରୟୋଗ ହେଲେ କଥା ସରିଲା ।

୩୪୫୭. ଏକରେ ବାଧା, ଦୁଇରେ ବିଧି ,ତିନିରେ ହୁଏ କାର୍ଯ୍ୟସିଦ୍ଧି ।

୩୪୫୮. ଏକୋଇଶ ଘଇତାର ଘର କରି ,
ଗର୍ବରେ ଚାଲେ ଅଣ୍ଟା ଦୋହଲାଇ ।

ବାରବନିତା ରୂପେ ଜୀବିକା ନିର୍ବାହକରୁଥିବା ନାରୀ ବହୁ ପୁରୁଷମାନଙ୍କୁ ଆକୃଷ୍ଟ କରିବା ପାଇଁ ନା ନା ପ୍ରକାର ଅଙ୍ଗଭଙ୍ଗୀ ପ୍ରଦର୍ଶନ କରେ । ଏହା ତାର ଅଭ୍ୟାସ ଗତ । ତେଣୁ ତାର ଅଣ୍ଟା ଦୋହଲା ଚାଲିରୁ ତାକୁ ଗର୍ବିତା ବୋଲି କୁହାଯାଏ ।

୩୪୫୯. ଏକୋଇଶ ଜୋତା ଗଣି ଖାଏ ,
ଏକୋଇଶ ଦେଶ ବୁଲି ଯାଏ । (ଫୁଲ ବାସ୍ନାରେ ମୂର୍ଚ୍ଛାହୁଏ ।)
(ଲଜ୍ଜାହୀନ ବ୍ୟକ୍ତି ପ୍ରତି ତାଚ୍ଛଲ୍ୟ )

୩୪୬୦. ଏ କିସର କାଳା ,ଯମୁନାକୁ ଗଲେ ,ବଇଁଶୀ ବଜାଏ କଳା ।

ରାଧାକୃଷ୍ଣଙ୍କର ସ୍ୱର୍ଗୀୟ ପ୍ରେମର ଉଦାହରଣ ଦେଇ ଆଧୁନିକ ଯୁବକର କ୍ରିୟାକଳାପ ପ୍ରତି ଆଧୁନିକ ଲଳନାର କ୍ଷତୋକ୍ତି ।

୩୪୬୧. କେତ ଧଡ଼ ଧଡ଼ ବୁଢୀ ,ତହିଁକି ପୁଣି ଡୋଲା ତୁଡ଼ି (=ଘଡ଼ିବାଣ/କୁମ୍ଭି)।

୩୪୬୨. *ଏକାର୍ଥେ-* ଫଡ଼ ଫଡ଼ ବୁଢୀ ,ଢୋଲା ଢୋଲା ତୁଡ଼ି ।

ଫମ୍ପା ଘଡ଼ିବାଣ ଯେପରି ଅକାମୀ ,ସେହିପରି ଅତି ବୃଦ୍ଧା ଅକର୍ମଣ୍ୟା ।

୩୪୬୩. ଏକି ମୋର ଛାଳା ,କନିଆ ମାଇପର ଖେଳା,
ଦୁଇ କାନେ ଘୁରଘୁରି ,ଗଳାରେ ମାଡି ମାଳା ।

୩୪୬୪. ଏକାବନ ପାପ ବି ପାପ,
ବାବନ ପାପ ବି ପାପ ।
୩୪୬୫. ଏକାଥର କାମ , ଦି'ଥର କରିବା ।
୩୪୬୬. ଏକେତ ନାତୁଣୀ ବୁଢୀ,ତାର ପୁଣି ନାତୁଣୀର୍ ବାହା (=ବିବାହ)।
୩୪୬୭. ଏକ ତୋଳା ଖଡ଼ା ଶାଗ, ଏକ ତୋଳା ପାଣି,
ବାପ ପୁଅ ସଳା ସ୍ବଶୁରା ପାଇଛନ୍ତୁ ରାନ୍ଧୁଣୀ ।
୩୪୬୮. ଏକେ ଶନି ,ପୁଣି ରନ୍ଧ୍ରଗତ (= ଅଷ୍ଟମ ସ୍ଥାନରେ) ।
ଶନି ଅଷ୍ଟମ ସ୍ଥାନରେ ରହିଲେ ପ୍ରାଣହାନୀ ଘଟାଏ ।
୩୪୬୯. *ଏକାର୍ଥେ* - ଏକେ ଶନି ତହିଁକି ରନ୍ଧ୍ରଗତ ।
୩୪୭୦. ଏକ କଡ଼ାର ମୁରାଦ ନାହିଁ, ଗେଫା ମାରିବାରେ ଗୋସାଇଁ ।
୩୪୭୧. ଏକ କଥାରେ ପଣ୍ଡିତ ଯାଏ ନି, ଅସରାଏ ମେଘରେ ବର୍ଷା ଯାଏନି ।
୩୪୭୨. ଏକ କାନକଟା ଗାଁ ବାହାରେ ଯାଏ ,
ଦୁଇ କାନକଟା ଗାଁ ଭିତର ଦେଇ ଯାଏ ।
୩୪୭୩. ଏ କାନର ଶୁଣି ,ଆର କାନରେ ବାହାର କରିବା ।
୩୪୭୪. ଏ କାଳରେ ଅନୁରାଗୀ,ଆର କାଳକୁ ବୈରାଗୀ ।
୩୪୭୫ ଏ କାଳରେ ବିଳାସିନୀ, ଶେଷ କାଳକୁ ତପସ୍ୱିନୀ ।
୩୪୭୬. ଏକ କୁଳ ଭାଙ୍ଗେ ଓ ଆଉଏକ କୁଳ ଗଢେ ।
୩୪୭୭. ଏକାନ୍ତ ବାସ ଜପ ବିଧି । ନିର୍ମଳ ନିଶ୍ଚଳ ସମାଧି ।
ମଉନ ବ୍ରତ ଶୌଚ ତପ । ପଠନ ସ୍ୱକର୍ମେ ନିରତ ।
ଏ ଦଶ ଅପବର୍ଗ (=ମୋକ୍ଷମୁକ୍ତି ) ଅର୍ଥେ ।
ଅଜିତେନ୍ଦ୍ରିୟ ସାଧ ଯେତେ । -( ଜଗନ୍ନାଥ ଭାଗବତ)
୩୪୭୮. ଏକାଦଶୀ ଠାକୁରାଣୀ, ବୁଡ଼ ବୁଡ଼ି ଖାଏପାଣି ।
ଏକାଦଶୀ ଉପବାସ କରୁଥିବା ସ୍ତ୍ରୀକୁ ଠାକୁରାଣୀ ଆଖ୍ୟାୟିତ କରି ବ୍ୟଙ୍ଗ କରାଯାଇଛି ।
୩୪୭୯. ଏକି ବିଧିର ଲୀଳା, କାଉ ଗଳାରେ ତୁଳସୀମାଳା ।
୩୪୮୦. ଏ କୁଳ ,ସେ କୁଳ ,ଦିକୁଳ ଗଲା ।
୩୪୮୧. *ଏକାର୍ଥେ*-ଏ କୁଳ ବି ଗଲା ,ସେ କୁଳବି ଗଲା ।
୩୪୮୨. -*ଏଜନ*- ଏ କୁଳ ଗଲା ସେ କୁଳ ଗଲା,କ'ଣ କରୁ କରୁ କ'ଣ ହେଲା ।
୩୪୮୩. ଏକରେ ମିଳ ମିଳ (ଗୁଣ ଗୁଣ ), ଦୁଇରେ ପାଠ,
ତିନିରେ ଗୋଳମାଳ ,ଚାରିରେ ହାଟ ।

୩୪୮୪. ଏକେତ ସୁନ୍ଦରୀ ,ତହିଁକି ପୁତ୍ରବତୀ ।-ଏପରି ସ୍ତ୍ରୀର ଅଭିମାନ ପ୍ରତି ବ୍ୟଙ୍ଗ ।

୩୪୮୫. *ଏକାର୍ଥରେ-* ଏକେତ ଗୋରା ଦିହ ,ତହିଁକି ବେଇଲା ପୁଅ ।

୩୪୮୬. ଏକେ ଛିଣ୍ଡା ତହିଁକି କଳା, ବଞ୍ଚିବା ଠାରୁ ମଲେ ଗଲା ।

୩୪୮୭. ଏକେ ଛିଣ୍ଡା କନ୍ଥା ,ତହିଁରେ ଶହେ ତାଳି ।

୩୪୮୮. ଏକେ ବାବା ସତ୍ୟପୀର ,ଅନ୍ୟକୁ ତାରିବେ କ'ଣ ନିଜେତ ଅସ୍ଥିର ।

୩୪୮୯. ଏଠି ଘର ,ସେଠି ବାରି ,ବୁଢାବୁଢୀର ଠରାଠରି ।

୩୪୯୦. ଏକୋ ଦେବଃ କେଶବୋ ବା ଶିବୋ ବା
ଏକା ନାରୀ ସୁନ୍ଦରୀ ବା ବାନ୍ଦରି ବା
ଏକଂ ମିତ୍ରଂ ଭୂପତିର୍ବା ଯତିର୍ବା
ଏକୋ ବାସଃ ପତ୍ତନେ ବା ବନେ ବା ।।

ବିଷ୍ଣୁ ହୁଅନ୍ତୁ ବା ଶିବ ହୁଅନ୍ତୁ ଏକମାତ୍ର ଦେବତାଙ୍କୁ ଆରାଧନା କରିବ । ନାରୀ ସେହିପରି କୌଣସି ନିର୍ଦ୍ଦିଷ୍ଟ ଲୋକର ଶରଣ ନେଲେ ବିପଦ ପଡ଼େ ନାହିଁ । ସୁନ୍ଦରୀ ହେଉ ବା କୁତ୍ସିତା ହେଉ ଏକମାତ୍ର ସ୍ତ୍ରୀ ଗ୍ରହଣ କରିବ । ଫଳରେ ଦାମ୍ପତ୍ୟ ଜୀବନ ସୁଖମୟ ହୁଏ । ସେହିପରି ରାଜା କିମ୍ବା ତପସ୍ୱୀ ହୁଅନ୍ତୁ ଏକମାତ୍ର ମିତ୍ର ସ୍ୱୀକାର କରିବ । ଗ୍ରାମ ହେଉ ବା ବନ ହେଉ ଏକ ସ୍ଥାନରେ ବାସ କରିବ ।

୩୪୯୧. ଏକୁଁ ,ଦୁଇ କାମ କରିବା ।

୩୪୯୨. 'ଏକ' ବାର ଖାଏ ନେମି ଧେମି
'ଦୋ' ବାର ଖାଏ ଭୋଗୀ
'ତିନି' ବାର ଖାଏ ସାଧସୁଧ
'ଚାରି' ବାର ଖାଏ ରୋଗୀ । ( ଅପଭ୍ରଂସ ପ୍ରବାଦ)

୩୪୯୩. ଏକ ଚନ୍ଦ୍ର,କୋଟି ତାରା ।

୩୪୯୪. ଏକ ବ୍ରହ୍ମ ଏକ ଧର୍ମ ଏକ କର୍ମ ଉଦେ
ଏକ ପାଦ ଏକ ଭେଦ ,ଏକ ବାକ୍ୟ ପଦେ ।
ଏକ ସ୍ଥିତ ଏକ ଦଣ୍ଡ ଏକା ହି ମୂରତି
ଏକ ଧ୍ୟାନ ଏକ ଜ୍ଞାନ ବ୍ରହ୍ମର ବିଭୂତି ।
ଏକ ବାର ଏକ ଦାର ଏକାନ୍ତ ଭୋଜନ
ଅନିବାର ନିର୍ବିକାର ସେ ବ୍ରହ୍ମ ନିର୍ଗୁଣ ।
ଏକ ସତ୍ୟ ଏକ ବ୍ରତ ଏକ ଦୃଢ଼ ବାଣୀ
ଏକ ନାମୀ ଏକ ସ୍ୱାମୀ ଏକାନ୍ତରେ ଚିହ୍ନି ।

ଏକ ନ୍ୟାୟ ଏକ ରାୟ ଏକତାର ପନ୍ଥା
ଏକ ହିତ ଏକ ଚିତ୍ତ -
ଏକ ତା'ର ବ୍ରତ ଏକ ଏକ ତା'ର ଫନ୍ଦା
ଦୃଢ଼ ଏକ ବ୍ରତ ଏକ ତା'ର ଫଳ ।
ଏକ ପିତା ଏକ ମାତା ଏକ ଗୁରୁଶିଷ୍ୟ
ଏକ ମନ ଏକ ମାନ୍ୟ ଏକ ଭବେ ବଶ୍ୟ ।
ଏକ ମୂଳ ଏକ କୂଳ ତହିଁ
ଏକ ସୂତ୍ର ଏକ ଛତ୍ର,
ଏକ ଶୂନ୍ୟ ଏକ ବର୍ଣ୍ଣ ଏକତାର କାୟେ ।

୩୪୯୫. ଏକରୁ (କୁ) ଏକୋଇଶ କରିବା ।
ସାମାନ୍ୟ ମୂଳଧନରୁ ନିଜର କୌଶଳ ପ୍ରୟୋଗ କରି ଧନାଢ୍ୟ ହେବା ।

୩୪୯୬. ଏକ ପାରଦର୍ଶୀ ,ସାତ ଶିକ୍ଷା ନବୀଶ ।
ସାତ ଜଣ ଶିକ୍ଷାନବିଶ୍‌ଙ୍କଠାରୁ ଜଣେ ଅଭିଜ୍ଞ ଦୂରଦର୍ଶୀ ଶ୍ରେୟସ୍କର ।

୩୪୯୭. ଏକ ପରେ ଆଉ ନୁହେଁ, ଦୁଇପରେ କେବେଭେ ନୁହେଁ ।

୩୪୯୮. ଏକାର୍ଥରେ - ଆମେ ଦୁଇ, ଆମର ଦୁଇ ।
(ପରିବାର ନିୟନ୍ତ୍ରଣ ସ୍ଲୋଗାନ)

୩୪୯୯. ଏକା ଆସିଛେନ୍ (=ଆସିଛ),ଯାବେନ୍ (=ଯିବ) ଏକା
କେବଲ ମାତର (=ମାତ୍ର) ପଥେର ସଖା ।

୩୫୦୦. ଏକା ଗଞ୍ଜେଇର ତିନି ଧର୍ମ ,ତୋତା ,ପେଚା,କୁମ୍ଭକର୍ଣ୍ଣ ।

୩୫୦୧. ଏକାକୀ ଦ୍ରୌପଦୀ ପାଞ୍ଚୋଟି ଗୃହସ୍ଥଙ୍କୁ
କି ରୂପେ ଦେହ ଦେଲେ କହ ତା ଆମକୁ ।

୩୫୦୨. ଏକାଦଶୀ ନିରାହାର ,ଭିତରେ ଭିତରେ ଚୁଡ଼ା ମାର ।

୩୫୦୩. *ଏକାର୍ଥରେ*-ଭିତରେ ଭିତରେ ଛେନା ଚକଟା,
ବାହାରେ ଲାଗିଛି କଳି ଝଗଡ଼ା ।

୩୫୦୪. ଏକାନ୍ତରେ ସାବତ ପୁଅଙ୍କ ପାଶକୁ
ନଯିବଟି କଥାବାର୍ତ୍ତା ହୋଇବାକୁ । - କୃଷ୍ଣ ସିଂହ -ମହାଭାରତ ।

୩୫୦୫. ଏକୁଟିଆ ଘର ଚୋରକୁ
ବୁଢ଼ାକାଳେ ବାହା ପରକୁ ।

ରାତି ଦହି ଖିଆ ଜରକୁ
ହିଡ଼ ପାଖ ଧାନ ଗୋରୁକୁ ।
ଦକ୍ଷିଣା କଦଳୀ ସାରୁକୁ
ନିଅଣ୍ଟ ସେ ରାଜ କରକୁ ।
ସକାଳ ପଖାଳ ଦହିକି
ଚୁଙ୍ଗୁଡ଼ି ଶୁଖୁଆ ପୋଇକି
ଯାହାର ମନ ଯହିଁକି
ଟାକି ରହିଥାଏ ତହିଁକି ।

୩୫୦୬. ଏକୁଟିଆ ସ୍ୱାଦିଷ୍ଟ ପଦାର୍ଥ ନ ଖାଇବ
ପରିବାରରେ ଥାଇ ।
ଏକୁଟିଆ ନ ଯିବ ଉଠି
ଶୋଇଲା ଲୋକ ମେଳରେଥାଇ ।
ଚିନ୍ତା ନ କରିବ ଜଟିଳ ବିଷୟ ଏକା ।
ଦୂରବାଟ ଯିବ ନାହିଁ ଏକା ।
ଦ୍ୱନ୍ଦକୁ ଯିବ ନାହିଁ ଏକା ।
ଏକାକୀ ଧନ ଅର୍ଜନ ପାଇଁ ନ କରିବ ଚେଷ୍ଟା ।

ଏହି କାର୍ଯ୍ୟ ଗୁଡ଼ିକ ଏକୁଟିଆ କରିବା ନିଷେଧ ।

୩୫୦୭. ଏକାନ୍ତେ ଏକସରେ (=ଏକାକୀ) ଖାଇ ।
ଅଳ୍ପ ଭୋଜନେ ତୋଷ ହୋଇ । - (ଜଗନ୍ନାଥ ଭଗବତ)

୩୫୦୮. ପ୍ରଶ୍ନ- ଏକରେ ଏକ ମିଶାଇଲେ କେତେ ?
ଉତ୍ତର - ଦୁଇ ନୁହେଁ କି ତିନି ନୁହେଁ
ଚାରି,ପାଞ୍ଚ ପୁଣି ଚାହିଁବ ଯେତେ ।

୩୫୦୯. ଏକ ପୁତ ପୁତ ନୁହେଁ
ଏକ ଆଖି ଆଖି ନୁହେଁ ,
ଏକ କଉଡ଼ି କଉଡ଼ି ନୁହେଁ ।

୩୫୧୦. ଏକ ପୁଅ ଅନ୍ଧର ଲଉଡ଼ି (=ବାଡ଼ି)।

୩୫୧୧. ଏକ ପୁଅ ଯାହାର ,ବାପର ଠାକୁର ତାହାର ।

୩୫୧୨. *ଏକାର୍ଥକେ-* ଏକ ପୁତ୍ର ଯାହାର,ସେ ତାହାର ଠାକୁର ।

ବାପ ଦିଅଁ ଦେବତାଙ୍କୁ ଯେପରି ଆନ୍ତରିକ ଶ୍ରଦ୍ଧା କରେ ,ଏକମାତ୍ର ପୁତ୍ରକୁ ଅନୁରୂପ ଶ୍ରଦ୍ଧା କରିଥାଏ ।

୩୫୧୩. ଏକ ପା ' ଚାଉଳର ପରିମାଣ,
ଗାଁ ଯାକକୁ (ସାରା ଗାଁକୁ )ନିମନ୍ତ୍ରଣ ।

୩୫୧୪. ଏକ ବଣରେ ଦୁଇଟି ବାଘ ।

ଦୁଇ ପରାକ୍ରମଶାଳୀ ଗୋଟିଏ ସ୍ଥାନରେ ଅବସ୍ଥାନ କଲେ ସଂଘର୍ଷ ଅନିବାର୍ଯ୍ୟ ।

୩୫୧୫. ଏକ ବରର ମାଇପ, ହେଲା ପେଲା
ଦୋବେଇର ମାଇପ,ଘଇତା ମଲା ।

୩୫୧୬. ଏକ ବରର ମାଇପ,ନଡ଼ା-ଚଢା,
ଦୋବେଇର ମାଇପ ,ରାଇଜ ଛଡ଼ା ।

୩୫୧୭. ଏକ ଘରେ ସାତ କର୍ତ୍ତା
ତୁଛା ବାଇଗଣ ଭର୍ତ୍ତା ।

ବାଇଗଣ ପୋଡ଼ାକୁ ବାଇଗଣଭର୍ତ୍ତା ବୋଲି କୁହାଯାଇଛି । ଗୋଟିଏ ପରିବାରରେ ବହୁ କର୍ତ୍ତା ହେଲେ ,କର୍ତ୍ତାମାନେ ଯେ ଯାହାର କର୍ତ୍ତୃତ୍ୱ ପରିବାର ବର୍ଗଙ୍କ ଉପରେ ଜାହିର କରିଥାଆନ୍ତି । ଫଳରେ ପରିବାରର ସଦସ୍ୟମାନେ ଅତ୍ୟାଚାରିତ ହୁଅନ୍ତି । ଏହି ପ୍ରବାଦରେ ନିର୍ଯାତନାରେ ପ୍ରପୀଡ଼ିତ ପରିବାରର ସଦସ୍ୟମାନଙ୍କର ଅବସ୍ଥାକୁ ବାଇଗଣ ପୋଡ଼ା ସହିତ ତୁଳନା କରାଯାଇଛି ।

୩୫୧୮. ଏକ ବୋକା ଯାଆ ମୋର,
ଏକ ବୋକା ଦେଢ଼ଶୁର;
ଆଉ ଏକ ବୋକା ତୁଇ
ଆଉ ଏକ ବୋକା ମୁଇଁ ।

ସ୍ତ୍ରୀ ସ୍ୱାମୀର ନାଁ ଧରେ ନାହିଁ । ମାତ୍ର ବୋକା ତାଲିକାରେ ସେ ,ଦେଢଶୁର ଓ ଯାଆ ସହିତ 'ତୁଇ' ଅର୍ଥାତ୍ ସ୍ୱାମୀଙ୍କୁ ମଧ ବାଦ ଦେଇ ନାହିଁ । ଶେଷରେ ସ୍ୱାମୀଙ୍କ ଦ୍ୱାରା ପ୍ରପୀଡ଼ିତା ହୋଇ ନିଜକୁ ମଧ ବୋକା ବୋଲି ସ୍ୱୀକାର କରିଛି ।

୩୫୧୯. ଏକେତ ନାଚୁଣୀ କାଳି,ତହିଁକି ମୃଦଙ୍ଗରେ ତାଳି ।

୩୫୨୦. *ଏକାର୍ଥରେ* - ଭଡ଼ୁଆ କିର୍ତ୍ତନୀଆର ମୃଦଙ୍ଗ ଭଙ୍ଗା ।

''ମଣି କାଞ୍ଚନ ସଂଯୋଗ'' ର ବିପରୀତ ଅର୍ଥରେ ବ୍ୟଙ୍ଗ କରାଯାଇଛି । ସମଦୃଶ ଅକର୍ମଣ୍ୟ ବସ୍ତୁର ମିଳନ ।

୩୫୨୧. ଏକାଥିଲି ଘରେ ସଭିଙ୍କ ଠାକୁର
ସଉତୁଣୀ କଲା ରାସ୍ତାର କୁକୁର ।

ପ୍ରବାଦଟିର ମୌଳିକ ବକ୍ତବ୍ୟଟି ହେଲାଯେ ,ଯିଏ ନିଜ ଲୋକ ,ସେ ଯଦି ତାର ଆହାର,ଆପ୍ୟାୟନ ଓ ପ୍ରାପ୍ୟ ଲାଭରୁ ବଞ୍ଚିତ ହୁଏ , ସେ ଯେପରି କିଛି ପ୍ରତିବାଦ ବା କହିପାରେ ନାହିଁ ; ସେହିପରି ବାକ୍ଶକ୍ତି ହୀନ ଠାକୁର କିଛି କହିପାରନ୍ତି ନାହିଁ । ରାନ୍ଧୁଣୀ ନିଜ ରାନ୍ଧଣା ସମ୍ପର୍କରେ ବିରୂପ ମନ୍ତବ୍ୟ ଦେଇ ପାରେ ନାହିଁ । କୁକୁରର ଉଦର ପରିପୂର୍ଣ୍ଣ ହେଲେ ସେ ସନ୍ତୁଷ୍ଟ ହୁଏ ,କାରଣ ରଚି ବା ଆସ୍ୱାଦନ ତାର ନାହିଁ ।

୩୫୨୨.    ଏକ ହାତ ଗଛରେ ସାତ ଶହ ଲାଉ ।

ଲାଉ ଅଧିକ ଭାବରେ ଫଳେ । ତେଣୁ ଲାଉ ଗଛରେ ଲାଭ ଅଧିକ । ଫଳନୀୟତାର ବିଷୟଟି ଏହି ପ୍ରବାଦରେ ପ୍ରାଧାନ୍ୟ ପାଇଛି ।

୩୫୨୩.    ଏକ ଛାନାକୁ (=ସନ୍ତାନକୁ) ଫୁଲର ଶେଯ ।
ପାଞ୍ଚ ଛାନାରେ ଗୋବିନ୍ଦ ଭଜ ।

ଏକମାତ୍ର ସନ୍ତାନକୁ ବହୁଆଦର ଯତ୍ନ ମିଳିଥାଏ । ମାତ୍ର ପାଞ୍ଚ ପାଞ୍ଚଟାପିଲା ହେଲେ ସମପରିମାଣ ଆଦର ଯତ୍ନରୁ ବଞ୍ଚିତ ହୁଅନ୍ତି । ପିତାମାତାଙ୍କ ଜଞ୍ଜାଳ ବଢିଯାଏ ।

୩୫୨୪.    ଏକ ପୁଅ ମା'ର ଛାତି ଥର ଥର ।

୩୫୨୫.    ଏକ ଟଙ୍କାରେ ଡ଼ମ ଚୌଧୁରୀ
ଲକ୍ଷେ ଟଙ୍କାରେ ବ୍ରାହ୍ମଣ ଭିକାରୀ ।

ଟଙ୍କାଟିଏ ପାଇଲେ ଡ଼ମ ମଦ ପିଏ । ମଦ ନିଶାରେ ସେ ନିଜକୁ ଗାଁର ମୁଖିଆ ବୋଲି ଭାବେ । ମାତ୍ର ବ୍ରାହ୍ମଣ ହାତରେ ଲକ୍ଷେ ଟଙ୍କା ପଡ଼ିଲେ ମଧ ସେ ମାଗିବା ବୃତ୍ତି ଛାଡ଼େ ନାହିଁ । ବ୍ରାହ୍ମଣର ଏହି ମାଗିବା ପ୍ରକୃତିକୁ ଭିକାରୀର ଭିକ୍ଷା ସହିତ ତୁଳନା କର ବ୍ରାହ୍ମଣକୁ ବ୍ୟଙ୍ଗ କରାଯାଇଛି ।

୩୫୨୬.    ଏକୁଟିଆ ଚୋର ଯୁଆଡ଼େ ଯାଏ ,ସାତ ଚୋର ବି ସିଆଡ଼େ ଧାଏଁ ।

ସବୁ ଖେଚଡ଼ ପ୍ରକୃତିର ଲୋକେ ବିପଥଗାମୀ ।

୩୫୨୭.    ଏକା ସାଙ୍ଗରେ (ଏକ ଜାଗାରେ) ରହିଲେ ହାଣ୍ଡି ଠୁକା ଠୁକି ହୁଏ ।

୩୫୨୮.    *ଏକାର୍ଥେ* - ଦୁଇ ହାଣ୍ଡି ଏକାଠି ,ହୁଏ ଠୁକା ଠୁକି ।

୩୫୨୯.    -*ଏଚନ*- ହାଣ୍ଡି ଶରା ଏକାଠି ,ଠୁକାଠୁକି ସେଇଠି ।

୩୫୩୦.    -*ଏଚନ*- ଏକ୍କ ସ୍ଥାନରେ ବିଜେ ,ହାଣ୍ଡି କୁଣ୍ଡି (=ହାଣ୍ଡି କୁଣ୍ଡେଇ) ବାଜେ

୩୫୩୧.    -*ଏଚନ*- ହାଣ୍ଡିଶରା (ଦୁଇ ହାଣ୍ଡି) ଏକା ଠେଇଁ ,ଠୁକା ଠୁକି ହୁଏ ତହିଁ ।

ପରିବାରର ଦୁଇରୁ ଅଧିକ ସଦସ୍ୟ ଗୋଟିଏ ସ୍ଥାନରେ (ଘରେ) ଅବସ୍ଥାନ କଲେ ପରସ୍ପର ମଧ୍ୟରେ କଥା କଟା କଟି ହୋଇଥାଏ ।

୩୫୩୨.    ଏକା ଝାଡ଼ର ବାଉଁଶ ।
କେଇଁଥିରେ ହୁଏ ଫୁଲ ଟାହିଆ,
କେଉଁଥିରୁ ହୁଏ ହାଡ଼ିର ବେତା ।

୩୫୩୩.    *ଏକାର୍ଥେ*- ଏକା ଭାଡ଼ିର ପାରା ।
କେହି ଉଡ଼ିଗଲେ ନ ଦିଏ ଧରା,
କାହାକୁ କୁଲା ଡାଉଁ ଡାଉଁ ଡ଼ରା ।

ଏକ ବାପ ଔରସରୁ ଓ ଏକା ଗର୍ଭରୁ ଜନ୍ମିତ ସନ୍ତାନମାନେ ବିଭିନ୍ନ ପ୍ରକୃତିର ହୋଇ ଥାଆନ୍ତି ।

୩୫୩୪. ଏ ଜନ୍ମରେ ଦେଲେ , ଆର ଜନ୍ମରେ ମିଳେ ।

ହିନ୍ଦୁମାନେ ପୂର୍ବଜନ୍ମ ବିଶ୍ୱାସ କରନ୍ତି । ତେଣୁ ଏ ଜନ୍ମରେ ପୁଣ୍ୟକଲେ ଆସନ୍ତା ଜନ୍ମରେ ଭଲ ଫଳ ମିଳେ ବୋଲି କୁହାଯାଏ ।

୩୫୩୫. ଏକ ଦାମୁଡ଼ିର (କଉଡ଼ିର )ମୁରାଦ ( =ଅଭିଳାଷ) ନାହିଁ
- ପଗଡ଼ି ବାନ୍ଧେ ତେଢା (=ଉଗ୍ର)।

୩୫୩୬. ଏକ ପସଲା (=ଅସରା) ଜଳ ହେଲା ,ନଇ ନାଳ ଭାସିଗଲା ।

୩୫୩୭. ଏକ ଦିନ ଘି-ରୁଟି ,ଆରଦିନ ଦାନ୍ତ ନିକୁଟି ।

ଅମିତବ୍ୟୟୀ ଓ ଅଳସୁଆ ଲୋକ ଭବିଷ୍ୟତ ପାଇଁ ଚିନ୍ତା ନକରି ଏକାଥରେ ଖାଇପିଇ ସବୁ ଶେଷ କରିଦିଏ ,ତେଣୁ ତାକୁ ପରବର୍ତ୍ତୀ ସମୟରେ ଭୋକ ଉପାସରେ ରହିବାକୁ ପଡ଼େ ।

୩୫୩୮. ଏକ ତୋଳା ମେଥି ଶାଗ,ଏକ ତୋଳା ପାଣି ।
ଅଧସେର ଚାଉଳରେ ଆଣ୍ଠୁଏ ପାଣି
ବାପ ପୁଅ ସଳା ସୁତୁରା,ମିଳିଛି ରାନ୍ଧୁଣୀ ,

ବାପ,ପୁଅ ଓ ରାନ୍ଧୁଣୀର କୃପଣତାର ପରିପ୍ରକାଶ ।

୩୫୩୯. ଏକା ନିଶ୍ୱାସରେ ସାତକାଣ୍ଡ ରାମାୟଣ ।

୩୫୪୦. ଏକା ନୌକାରେ ବସି ସବେ (= ସମସ୍ତେ)
ଯାଆନ୍ତି ଚାଲି ଯେଝା ପଥେ ।

ଲୋକମାନେ ବାଧ୍ୟବାଧକତାରେ କିଛି ସମୟ ପାଇଁ ଏକତ୍ରିତ ହୁଅନ୍ତି ,ମାତ୍ର ସ୍ୱାର୍ଥାନ୍ୱେଷୀ ପ୍ରବୃତ୍ତି ସେମାନଙ୍କୁ ସ୍ୱାର୍ଥସାଧନ ପାଇଁ ନିଜ ନିଜ ପଥରେ କଡାଇ ନେଇ ଯାଏ ।

୩୫୪୧. ଏକା ଲାଉର ମଞ୍ଜି
କେହିବା କରେ କଚର କଚର
କେହିବା ମନେ ପାଞ୍ଜି ।

ଗୋଟିଏ ଗୋଷ୍ଠୀ ବା ପର୍ଯ୍ୟାୟ ଭୁକ୍ତ ବ୍ୟକ୍ତିମାନଙ୍କ ମଧ୍ୟରେ ପାର୍ଥକ୍ୟ ଦୃଷ୍ଟି ଗୋଚର ହେଲେ ଏହି ପ୍ରବାଦଟି ପ୍ରୟୋଗ କରାଯାଏ ।

୩୫୪୨. ଏକ ଧ୍ୟାନ ,ଏକ ଜ୍ଞାନ ,ଏକ ମନ ପ୍ରାଣ ।

୩୫୪୩. ଏକ ଦ୍ୱାର ମୁଦା (=ବନ୍ଦ) ,ହଜାର ଦ୍ୱାର ଖୋଲା ।

ଲକ୍ଷ୍ମୀ ଚଞ୍ଚଳା । ଧନ ସମ୍ପତ୍ତି ଚାଲିଯିବା ସକାଶେ ବହୁ ଦ୍ୱାର ଉନ୍ମୁକ୍ତ । ଯେତେ ରଖିବାକୁ ଚାହିଁଲେ ମଧ୍ୟ କିପରି କେଉଁ ଆଡ଼େ ବାହାରିଯିବ ତାର [illegible] କରିହେବ ନାହିଁ ।

୩୫୪୪. ଏ ଦେଶର ବୋଲି, ଆର ଦେଶର [illegible] ।

ଗୋଟିଏ ଦେଶର ବୋଲିରେ ବ୍ୟବହୃତ ଶବ୍ଦ ଅନ୍ୟ [illegible] ଅର୍ଥ ବୁଝାଇଥାଏ ।

୩୫୪୫. ଏକ ଢୋତ (= ଚାଷୋପଯୋଗି ଭୂମି) ଆଉ ସାତ ପୁତ ।

ସାତଜଣ ପୁଅ ସହିତ ଖଣ୍ଡେ ଚାଷୋପଯୋଗି ଭୂମି ସମାନ ।

୩୫୪୬. ଏକା ଝଡ଼ିରେ ବର୍ଷା ଯାଏ ନା ।

୩୫୪୭. *ଏକାର୍ଥରେ* - ଏକା ମାଘେକେ ଶୀତ (ଜାଡ଼) ଯାଏ ନା ।

୩୫୪୮. ଏକ ଟଙ୍କାରେ ପୋଖରୀ, ତିନି ଟଙ୍କାର ମଜୁରୀ ।

୩୫୪୯. *ଏକାର୍ଥରେ* -ଘୋଡ଼ା ଛ'ଟଙ୍କାକୁ ଦାନା ନ' ଟଙ୍କା ।

**୩୫୫୦.** *-ଏଜନ-* ଏକ ଟଙ୍କାର ଚୋଦେଇ ଦଶଟଙ୍କାର ଦବେଇ (=ଔଷଧ)

୩୫୫୧. ଏକ - ରଖିବ ମାତାର ଟେକ ।
ଦୁଇ - ହେବ ତୁମେ ଚିର ଜୟୀ ।
ତିନି- ନ ରହିବ ହୋଇ ତୁନି ।
ଚାରି - ମୁଣ୍ଡରେ ଜ୍ଞାନ ଦେବ ଭରି ।
ପାଞ୍ଚ- ମହାପୁରୁଷଙ୍କ ପଥ ଧଅ ।
ଛଅ - ସତ୍ ପଥରେ ରୁହ ।
ସାତ- ମଥା ନକରିବ ନତ ।
ଆଠ- ପଢିବ ବହୁତ ପାଠ ।
ନଅ- ପଛରେ କେଭେ ନରହ ।
ଦଶ- ରଖିବ ବଂଶର ଯଶ ।
( ଉପଦେଶ ମୂଳକ ପଦାବଳୀ)

୩୫୫୨. ଏକ ଅଡ଼ା ଧାନରେ ମହାଭାରତ ।

ଅଳ୍ପ ଖର୍ଚ୍ଚରେବଡ଼କାମ ସମାଦ ନକରିବାପାଇଁ ଅଭିଳାଷ ପୋଷଣ କରୁଥିବା ବ୍ୟକ୍ତି ପ୍ରତି ବ୍ୟଙ୍ଗ ।

୩୫୫୩. ଏକ ଆଙ୍ଗୁଳିରେ ଫୁଟକି ଉଠେ (ବାଜେ) ନା ।

୩୫୫୪. *ଏକାର୍ଥରେ*-ଏକ ଆଙ୍ଗୁଳିରେ ତୁଡ଼ି (= ତୁଡ଼ିମାଛ )ବା ଗଡ଼ିଶ ଲାଗେନା ।
*-ଏଜନ-* ଏକ କାଠି ବାଜେନା ।
*-ଏଜନ-* ଏକ କାଠି ସରସ ।

୩୫୫୫. ଏକ କିଳା ଦେଲେ ଶ' କିଳା ଖାଏ ।
ଛୁଞ୍ଚି ଚୋରଣୀ କୋଦା ଳ ହଜାଏ ।

ପରର କ୍ଷତି କଲେ ନିଜକୁ ଅଧିକ କ୍ଷତି ସହିବାକୁ ପଡ଼ିଥାଏ । ସାମାନ୍ୟ ପଦାର୍ଥ ଚୋରି କରିବାକୁ ଯାଇ ମନୁଷ୍ୟ ନିଜର ଅମୂଲ୍ୟ ସମ୍ପଦ ( ମାନ ସମ୍ମାନ ) ହରାଇ ଥାଏ ।

୩୫୫୬.     ଏକ ପାଦରେ ଯୋତା ,ଖାଏ ମୋଚିର ମୁଥା ।

ହଲେ ଯୋତା ପିନ୍ଧିବା ପରିବର୍ତ୍ତରେ ପଟେ ଯୋତା ପିନ୍ଧିଥିବା ବ୍ୟକ୍ତିକୁ ବିଦ୍ରୁପ ସହ୍ୟ କରିବାକୁ ପଡ଼େ । ସେହିପରି ସାମାଜିକ ଚଳଣିରେ ବ୍ୟତିକ୍ରମ କରୁଥିବା ବ୍ୟକ୍ତି ସମାଜରେ ଭର୍ତ୍ସିତ ହୋଇଥାଏ ।

୩୫୫୭.     ଏକ ଆଞ୍ଚୁଡ଼ାରୁ (ରାମ୍ପୁଡ଼ାରୁ) ଚିହ୍ନା ଯାଏ ।

ସ୍ୱାର୍ଥକୁ ଆଘାତ କଲେ ସେ କିପରି ମନୁଷ୍ୟ ତାହା ଜଣା ପଡ଼େ । ଆଘାତକୁ ପ୍ରବାଦରେ ଆଞ୍ଚୁଡ଼ା/ ରାମ୍ପୁଡ଼ା ବୋଲି କୁହାଯାଇଛି ।

୩୫୫୮.     ଏକାଖିଆ (=କାଣୀ) ମାଈଁ, କାହାପାଇଁ ଧାଇଁ ।

ମାଈଁଙ୍କର ସ୍ନେହ କପଟତା ପୂର୍ଣ୍ଣ । ତେଣୁ ତାଙ୍କୁ କାଣୀ କହି ଉପହାସ କରାଯାଇଛି ।

୩୫୫୯.     ଏକ ଆଖିରେ କାନ୍ଦ,ଆର ଆଖିରେ ଛନ୍ଦ ।- କପଟିଆ ଲୋକ ପ୍ରତି ବ୍ୟଙ୍ଗ ।

୩୫୬୦.     ଏ କଣ ଲିପିଲି          ସେ କଣ ଲିପିଲି
                ମଝି କଣ ଟିକି ଛାଡ଼ି,
          ମଝିଆଁ ଦିଅର          ଲୁଗା ବୁଣିଛିଲୋ
                ଗୋଟି ଗୋଟି କମ ଶାଢୀ ।

୩୫୬୧.     ଏକା ଦିନକେ କେହି ବଡ଼ ଲୋକ ହୁଏ ନାହିଁ ।

୩୫୬୨.     ଏକି ପରବ ,ଖୁଣ୍ଟିଖାଇଙ୍କର ଗରବ ।

୩୫୬୩.     ଏକା ବିଛଣାରେ ଶୋଇ
          ଦିହକୁ ଦିହ ଲାଗେ ନାହିଁ । - ସଂଯମ ଆଚରଣ କରୁଥିବା ଦମ୍ପତି ।

୩୫୬୪.     ଏକ ବାହା ଦେବତାଙ୍କୁ ବରି ।
          ଏକ ବାହା ସାହାଡ଼ାକୁ ଧରି ।

ବୈଧବ୍ୟ ଯୋଗ ଥିବା ନାରୀ ପ୍ରଥମେ ଦେବତାଙ୍କୁ ବରଣ କରି ତାପରେ ପତି ଗ୍ରହଣ କରିଥାଏ । ଅର୍ଥାତ୍ ବିବାହ ହୋଇଥାଏ । ସେହିପରି ଯେଉଁ ପୁରୁଷର ବିବାହ ପରେ ସ୍ତ୍ରୀ ମୃତ୍ୟୁ ଯୋଗ ଥାଏ , ସେ ପ୍ରଥମେ ସାହାଡ଼ା ଗଛକୁ ବରଣ କରି ପରେ ସ୍ତ୍ରୀ ଗ୍ରହଣ କରେ । ଏପରି ପଦକ୍ଷେପ ଗ୍ରହଣ କଲେ ସ୍ତ୍ରୀର ସ୍ୱାମୀ ଓ ସ୍ୱାମୀର ସ୍ତ୍ରୀ ମୃତ୍ୟୁ ମୁଖରେ ପଡ଼ନ୍ତି ନାହିଁ । ଏହା ଲୋକ ବିଶ୍ୱାସ ।

୩୫୬୫.     ଏକ ବିଆଣୀ (= ଜନ୍ମ କରିଥିବା) ନହେଲେ ଲଜ୍ଜା ଯାଏ ନାହିଁ ।

୩୫୬୬.     ଏକ ବୀଜରୁ ଦୁଇ ଜେମ ଫଳ ଫଳେ ନାହିଁ ।

ଏକ ପ୍ରକାର ବିହନରୁ ଉତ୍ପନ୍ନ ଫଳର ଆକୃତି ଓ ପ୍ରକୃତି କେବେହେଁ ଭିନ୍ନ ପ୍ରକାର ହୁଏ ନାହିଁ । ମାତ୍ର ସୃଷ୍ଟିର ଶ୍ରେଷ୍ଠ ଜୀବ ମନୁଷ୍ୟ କ୍ଷେତ୍ରରେ ଏହାର ବ୍ୟତିକ୍ରମ ପରିଲକ୍ଷିତ ହୁଏ । ଅଧିକ ସନ୍ତାନ ଏକ ଗର୍ଭଜ ହେଲେ ମଧ ସେମାନଙ୍କ ମଧରେ ଆକୃତି ଓ ପ୍ରକୃତିରେ ବୈଷମ୍ୟ ଦେଖା ଯାଇଥାଏ ।

୩୫୬୭. ଏକେ ବୁଝାଯାଏ ପଡ଼ିଲେ ( = ଅବସ୍ଥା ଖରାପ ହେଲେ)
ଆଉ ବୁଝାଯାଏ ମରିଲେ ।

ଅବସ୍ଥା ଖରାପ ହେଲେ ଲୋକର ପ୍ରକୃତ ସ୍ୱଭାବ ଓ ଚରିତ୍ର ପରିସ୍ଫୁଟିତ ହୋଇଥାଏ । ମୃତ୍ୟୁପରେ ମଣିଷର ଭଲ ମନ୍ଦ ଲୋକ ମୁଖରେ ପ୍ରକାଶ ପାଇଥାଏ । ତେଣୁ କହନ୍ତି 'ପ୍ରାଣୀର (ଜୀବର) ଭଲ ମନ୍ଦ ବାଣୀ । ମରଣ କାଳେ ତାହା ଜାଣି '।

୩୫୬୮. ଏକା (ଗୋଟାଏ) ମୁହଁରୁ ତିନି କଥା ।
ଶୁଣିଲେ ହୁଏ ମୁଣ୍ଡ ବ୍ୟଥା ।

ଚିତ୍ତ ଚାଞ୍ଚଲ୍ୟ ବ୍ୟକ୍ତିର କଥାବାର୍ତ୍ତା ଶ୍ରୋତାକୁ ଉଚ୍ଚାଟ କରି ତୋଳିଥାଏ ।

୩୫୬୯. ଏକା(ଗୋଟାଏ) ମୁହଁର ଦୁଇ କଥା
ଛେପ ପକେଇ ଛେପ ଚୋକା ।

ଯେଉଁ ବ୍ୟକ୍ତି କଥାଦେଇ କଥା ନ ରଖେ ତାକୁ ଛେପ ପକାଇ ପୁଣି ଛେପ ଚାଟିଲା ବୋଲି ବିଦ୍ରୁପ କରଥାଆନ୍ତି । ସେହିପରି ଯିଏ ଦୁଇ ପ୍ରକାର କଥା କୁହେ ସେ ମଧ ଏହି ବିଦ୍ରୁପର ଶିକାର ହୋଇଥାଏ । ଏଣୁ ଏପରି ଲୋକକୁ ସାଙ୍ଗଛଡ଼ା ମଧ କୁହାଯାଏ ।

୩୫୭୦. *ଏକାର୍ଥରେ*- କାଣି ଗାଈର ଭିନ୍ନ ଗୋଠ ।

୩୫୭୧. -*ଏଜନ*- କୁଢିଆ (=ଅଳସୁଆ) ଗୋରୁର ଭିନ୍ନ ଗୋଠ ।

୩୫୭୨. ଏକ ଓଳି ଭାଗରେ ,ଏକ ଓଳି ଠିକାରେ ।

୩୫୭୩. *ଏକାର୍ଥରେ* - ଆଜି ଦିନିକିଆ ,କାଲି ଠିକା ।

୩୫୭୪. *ଏଜନ*- ଆଜି ହିଲ୍ଲୀ,କାଲି ଦିଲ୍ଲୀ ।

୩୫୭୫. ଏକା ମାଘେ (ପୌଷେ) ଶୀତ (ଜାଡ଼) ପଳାଏ (ଯାଏ) ନା

ସୁବିଧାବାଦି ସ୍ୱାର୍ଥପର ବ୍ୟକ୍ତି ଅଙ୍ଗିକାର କରି ପରେ ପ୍ରତ୍ୟାଖାନ କଲେ ପ୍ରତ୍ୟାଖ୍ୟାତ ବ୍ୟକ୍ତି ଏହି ଉକ୍ତିଟିକୁ ତା ପ୍ରତି ପ୍ରୟୋଗ କରିଥାଏ ।

୩୫୭୬. ଏକ ବୁଦ୍ଧି ଭଲ ,ଦୁଇ ବୁଦ୍ଧି ଆହୁରି ଭଲ ।

ଏକ ବୁଦ୍ଧି ଅର୍ଥାତ୍ ନିଜ ବୁଦ୍ଧି ଭଲ । କାରଣ କୁହାଯାଇଛି '' ନିଜ ବୁଦ୍ଧିରେ ଘାସ କାଟିବ ପଛେ ପର ବୁଦ୍ଧିରେ ଘୋଡ଼ା ଚଢିବ ନାହିଁ '। ମାତ୍ର ଦୁଇଜଣ ବିଚାର ବିମର୍ଷକରି କାର୍ଯ୍ୟ କଲେ ଅର୍ଥାତ୍ ଦୁଇ ଜଣଙ୍କର ବୁଦ୍ଧି ଏକାଠି ହେଲେ ଆହୁରି ଅଧିକ ଭଲ ଫଳ ମିଳିଥାଏ । ଏଥି ସମ୍ପର୍କୀୟ ପ୍ରବଚନଟି ହେଲା :-

' ଆପ ବୁଦ୍ଧି ହିତକାରୀ
ଗୁରୁ ବୁଦ୍ଧିଃ ବିଶେଷତଃ
ପରବୁଦ୍ଧିଃ ବିନାଶାୟଃ
ସ୍ତ୍ରୀ ବୁଦ୍ଧି ପ୍ରଳୟଂଙ୍କରୀ ।'

୩୫୭୭. ଏକ ଯାତ୍ରାରେ ପୃଥକ ଫଳ ।

'ମା, ଝିଅ ଦେଉଳକୁ ଗଲେ ଯେଝା ସୁଖ ଯେଝେ ମନାସିଲେ'ପ୍ରବାଦର ଅର୍ଥରେ ।

୩୫୭୮. ଏକ ରତି(=ଅଳ୍ପ ପରିମାଣ) ମଣିଷର ସାତ ରତି କଥା ।

ବାହାପିଆ ଲୋକ ପ୍ରତି କଟାକ୍ଷ ।

୩୫୭୯. ଏକ ରସର ରସିକ । -ଏକମାତ୍ର ଭଗବତ ପ୍ରେମରେ ରସିକ ହେବା ଶ୍ରେୟ ।

୩୫୮୦. ଏକ ବୁଢାର ତିନି ମାଇପ ।
ଯାହାକୁ ନଚାହିଁଲେ ଦିଏ ଶାଇପ (=ଅଭିଶାପ)।

ଐଶ୍ୱର୍ଯ୍ୟର ପ୍ରାଚୁର୍ଯ୍ୟ ଓ ଉଦଣ୍ଡ ଯୌବନରେ ଉଦ୍ଦୀପିତ ହୋଇ ବୟସ ବେଳେ ଯିଏ ତିନିଟା ଭାର୍ଯ୍ୟା କରିଥାଏ ,ବୟସ ହଟିଗଲେ ସେମାନେ ବୁଢାକୁ ଏପରି ଦହଗଞ୍ଜ କରାନ୍ତି ଯେ ତାକୁ ଶେଷ ନିଶ୍ୱାସ ପର୍ଯ୍ୟନ୍ତ ଅଭିଶପ୍ତ ଜୀବନ ନିର୍ବାହ କରିବାକୁ ପଡ଼ିଥାଏ ।

୩୫୮୧. ଏକ ଧ୍ୟାନରେ ଡ଼ାକିଲେ ତାଙ୍କୁ (=ଈଶ୍ୱର),
ଆପଣା ଛା଼ଏଁ ଆସନ୍ତି ଘରକୁ ।

ଈଶ୍ୱର ସର୍ବଦା ଭକ୍ତର ଅଧୀନ । ଏହାର ବହୁ ନିଦର୍ଶନ ପୁରାଣରୁ,ଐତିହାସିକ କିମ୍ବଦନ୍ତୀରୁ ଉପଲବ୍ଧ ହୁଏ । ଏପରିକି ଈଶ୍ୱରଙ୍କର ଭକ୍ତପ୍ରତି ଅଲୌକିକ ପ୍ରୀତି ସଚରାଚର ପରିଲକ୍ଷିତ ହୋଇଥାଏ ।

୩୫୮୨. ଏକ ଖଣ୍ଡ ରତ୍ନ ସାତ ସମୁଦ୍ରକୁ ଆଲୁଅ କରେ ।

ଏକମାତ୍ର କରିତକର୍ମା ପୁତ୍ର ସଂସାରକୁ ଦୀପ୍ତିମନ୍ତ କରିବାପାଇଁ ଯଥେଷ୍ଟ । ଏଥି ସମ୍ପର୍କୀୟ ଏକ ସଂସ୍କୃତ ବଚନ । 'ବରଂ ଏକୋ ଗୁଣୀପୁତ୍ରଃ ,ନ ଚ ମୂର୍ଖାଃ ଶତୈରପି ।'

୩୫୮୩. ଏକ ମା'ର ଏକ ପୁତ -ଭୂତ,
ଖାଏ ଉଡ଼ାଏ ହୁଏ ଯମଦୂତ ।

ଗୋଟିଏ ପୁଅ ଅଯୋଗ୍ୟ ହେଲେ ବାପମା'ଙ୍କୁ ଯମ ଯନ୍ତ୍ରଣା ଭୋଗକରିବାକୁ ପଡ଼େ ।

୩୫୮୪. ଏକ ମାସରେ ତିନି ଗ୍ରହଣ,
ମରେ ରାଜା କି ମରେ ଦେଓ୍ୱାନ (=ମନ୍ତ୍ରୀ) ।

ଗୋଟିଏ ମାସରେ ତିନୋଟି ଗ୍ରହଣ ହେବା ଅସମ୍ଭବ । ମାତ୍ର ଏପରି କିଛି ଅଘଟଣ ଘଟିଲେ ଧ୍ୱଂସ ଅନିବାର୍ଯ୍ୟ । ସେହିପରି ରାଜ୍ୟରେ ଅରାଜକତା, ଅତ୍ୟାଚାର,ଦୁର୍ଭିକ୍ଷ ଏକାଠି ପଡ଼ିଲେ ରାଜା ଓ ମନ୍ତ୍ରୀ ଉଭୟେ ବିନଷ୍ଟ ହୁଅନ୍ତି ।

୩୫୮୫. ଏକାକରେ ଦ୍ୱିକରେ ସ୍ତ୍ରୀ କରଧରି
ଚତୁଷ୍କର ଦର୍ଶନକୁ ପଞ୍ଚକରେ ସଡ଼କରେ ଯାଉ ଅଛନ୍ତି ।

କାର୍ତ୍ତିକ ମାସ ପଞ୍ଚକରେ ସ୍ତ୍ରୀ ପୁରୁଷମାନେ ହାତ ଧରାଧରି ହୋଇ ବଡ଼ଦାଣ୍ଡରେ ଶ୍ରୀଜଗନ୍ନାଥଙ୍କ ଦର୍ଶନକୁ ଯାଉଛନ୍ତି ।- ( କବି ଯଦୁମଣି ବଚନ)

୩୫୮୬. ଏକ ଆକାଶରେ ଦୁଇ ଚନ୍ଦ୍ରମା ରହି ନପାରନ୍ତି ।

୩୫୮୭. ଏକ ଖୁଣ୍ଟରେ ଦୁଇ ଘୋଡ଼ା ବନ୍ଧାହେବା ।

୩୫୮୮. ଏକା ଛେଳିକି ତିନି ଜବେ ।

୩୫୮୯. ଏକ ପୁଅ ପୁଅରେ ଲେଖା ନୁହେଁ।

୩୫୯୦. ଏକ ଠେଙ୍ଗା ସହସ୍ର ହାଣ୍ଡି।

୩୫୯୧. ଏକ ବିଦ୍ୟା ସୁରକ୍ଷିତା ।

ଗୋଟିଏ ପାଠକୁ ଭଲଭାବରେ ଆୟତ୍ତ କରିଥିଲେ ତାହା ସର୍ବଦା କାର୍ଯ୍ୟରେ ଲାଗେ।

୩୫୯୨. ଏକ ଭାର୍ଯ୍ୟା ସୁରକ୍ଷିତା।

ଗୋଟିଏ ସ୍ତ୍ରୀ ବିଭାହୋଇ ତାକୁ ଉତ୍ତମ ଭାବେ ଲାଳନପାଳନ ଓ ରକ୍ଷା କରିବା ଉଚିତ।

୩୫୯୩. ଏକାଦଶ ଇନ୍ଦ୍ରିୟ ।

ମନୁଷ୍ୟର ଏଗାରଟି ଇନ୍ଦ୍ରିୟ ଅଛି। ଯଥା= ୫ଟି କର୍ମେନ୍ଦ୍ରିୟ (ଚକ୍ଷୁ,ନାସିକା,ଚର୍ମ,କର୍ଣ୍ଣ,ଜିହ୍ବା) ୫ଟି ଜ୍ଞାନେନ୍ଦ୍ରିୟ (ବଚନ,ଗୁହ୍ୟ,ପାଦ,ପାଣି,ଉପସ୍ଥ) ଏବଂ ମନ , ଚକ୍ଷୁ ,ନାସିକା,ଚର୍ମ,କର୍ଣ୍ଣ ଓ ଜିହ୍ବା ଆଦି ଇନ୍ଦ୍ରିୟ ପଞ୍ଚଜ୍ଞାନ।

ଏସମ୍ପର୍କରେ ଭାଗବତବାଣୀ -

'ବଚନ ,ଗୁଦ ,ପାଦ, ପାଣି। ଉପସ୍ଥ ପଞ୍ଚକର୍ମ ଭଣି ॥
ଉଭୟ କର୍ତ୍ତା ମନ ମିଶି। ଏରୂପେ ଏକାଦଶ ଭାଷି ॥'

୩୫୯୪. ଏକାଦଶଦ୍ୱାର।

ମନୁଷ୍ୟ ଶରୀରର ଏଗାରଟି ଦ୍ୱାର ଯଥା:-

ଚକ୍ଷୁ ଦୁଇ,କର୍ଣ୍ଣ ଦୁଇ,ନାସିକାଦୁଇ ,ମୁଖ ,ନାଭି,ଲିଙ୍ଗ,ଗୁହ୍ୟ ଓ ବ୍ରହ୍ମ ରନ୍ଧ୍ର।

୩୫୯୫. ଏକାଦଶ ମନୁ।

ବ୍ରହ୍ମାଙ୍କର ୧୪ ଜଣ ପୁତ୍ର 'ମନୁ' ନାମରେ ଖ୍ୟାତ। ସେହିମାନଙ୍କ ମଧ୍ୟରୁ ପ୍ରଥମ ୧୧ ଜଣ ପ୍ରମୁଖ ଭୂମିକା ଗ୍ରହଣ କରିଥାନ୍ତି। ବାକି ତିନିଜଣ ମନୁଙ୍କର ପ୍ରାଧାନ୍ୟ ନଥିବାରୁ ସେମାନଙ୍କୁ ଗଣନା କରାଯାଏ ନାହିଁ। ସେମାନେ ହେଲେ - ସ୍ୱୟଂଭୂବ ,ସ୍ୱାରୋଚିଷ, ଉତ୍ତମ,ତାମସ,ରୈବତ,ଚାକ୍ଷୁସ, ବୈବସ୍ୱତ, ସାର୍ବର୍ଣ୍ଣି,ଦକ୍ଷସାବର୍ଣ୍ଣି ,ବ୍ରହ୍ମସାବର୍ଣ୍ଣି,ଧର୍ମସାବର୍ଣ୍ଣି,(ଏଗାର ଜଣ) ରୁଦ୍ରସାବର୍ଣ୍ଣି ,ଦେବ ସାବର୍ଣ୍ଣି ଓ ଇନ୍ଦ୍ର ସାବର୍ଣ୍ଣି (ତିନିଜଣ)।

୩୫୯୬. ଏକାଦଶ ରୁଦ୍ର।

ସୃଷ୍ଟି ଆରମ୍ଭରେ ବ୍ରହ୍ମା ତପସ୍ୟା କରି ସୁଦ୍ଧା ସୃଷ୍ଟି ଉତ୍ପନ୍ନ କରି ପାରି ନଥିଲେ। ତେଣୁ ସେ ଅତ୍ୟନ୍ତ କ୍ରୁଦ୍ଧ ହୋଇ କାନ୍ଦିଲେ। ତାଙ୍କ ଲୋତକରୁ ଭୂତ ପ୍ରେତଙ୍କର ସୃଷ୍ଟି ହେଲା। ତାଙ୍କମୁଖରୁ 'ଏକାଦଶ ରୁଦ୍ର' ଉତ୍ପନ୍ନ ହେବାମାତ୍ରେ ସେମାନେ ଉଚ୍ଚସ୍ୱରରେ କାନ୍ଦିବାରୁ ସେମାନଙ୍କର ନାମ ହେଲା ରୁଦ୍ର। ସେମାନେ ହେଲେ - ଅଜ,ଏକପାଦ,ଅହି,ବ୍ରଧ, ପିନାକୀ,ଅପରାଜିତ, ତ୍ର୍ୟମ୍ବକ, ମହେଶ୍ୱର,ବୃଷାକପି, ଶମ୍ଭୁ ,ହର ଓ ଈଶ୍ୱର ।

୩୫୯୭. ଏକଉଁ କାଳୀ ,ପିନ୍ଧିଛି କାଚ କୋଚିଲା ମାଳି,
ପିନ୍ଧିଅଛି ପୁଣି ନେଳିଆ ଶାଢୀ,
ତହିଁରେ ହୋଇଛି ରାନ୍ଧଣା ପାଳି।

ବିବାହିତା ସ୍ତ୍ରୀର ବର୍ଣ୍ଣ ସହିତ ତାର ପରିଧାନ ଓ ତାର ସଂସାରିକ କର୍ମ ଜଞ୍ଜାଳ ପ୍ରତି କଟାକ୍ଷ।

୩୫୯୮. ଏକକୁ ଆରେକ ।/ଏକକୁ ଆରକ ।

ଏକ ଜଣଠାରୁ ଆର ଜଣକ / ଜଣକ ଅପେ କ୍ଷା ଆଉ ଜଣେ ।

୩୫୯୯. *ଏକାର୍ଥରେ*- ଏକୁ ଆରେକ ବଳିଆର ।

ଜଣଙ୍କର ଗୁଣ ଅପେକ୍ଷା ଆଉଜଣେ ଅଧିକ ପୁଣି ସେ ଜଣକ ତା ଠାରୁ ଅଧିକ । ଏହିପରି ନିୟମରେ ଜଣକ ଠାରୁ ଜଣେ ଅଧିକ ହୋଇଥିଲେ ରଢିପ୍ରୟୋଗଟି ପ୍ରଯୁକ୍ତ ହୁଏ ।

୩୬୦୦. ଏକ ପତ୍ନୀ ବ୍ରତ ।

ଗୋଟିଏ ମାତ୍ର ପତ୍ନୀ(ସ୍ତ୍ରୀ) ବିବାହ ବା ସହବାସ କରିବା ବ୍ରତ । ବିବାହିତା ପତ୍ନୀ ମୃତା ହେଲେ ଅନ୍ୟ ପତ୍ନୀ ବିବାହ ନ କରିବା ବ୍ରତ ।

୩୬୦୧. ଏକ ପାଣିଆ ପାଗ ।

ଅନାବୃଷ୍ଟି ପରେ ,ଅଳ୍ପ ବର୍ଷା ନ ହୋଇ ଏକା ଥରକେ ଅତ୍ୟଧିକ ବର୍ଷା ହେବାର ପାଗ ।

୩୬୦୨. ଏକ ପାନିଆଁ ।

ଗୋଟିଏ ପାନ ଧରିବା ପରେ ଯେଉଁ ପାନ ଗଛରେ ଆଉ ପାନ ଧରେ ନାହିଁ ।

୩୬୦୩. ଏକବିଆଣିଆଁ ।

ଯେଉଁ ଜୀବ ଜୀବନରେ ଥରେ ମାତ୍ର ପ୍ରସବ କରେ ସେମାନଙ୍କୁ କାକବନ୍ଧ୍ୟା ମଧ କୁହାଯାଏ ।

୩୬୦୪. ଏକା ମାଧିଆ ବାଇଶ ପଳ ।

'ସମସ୍ତଙ୍କ ଅପେକ୍ଷା ବଡ଼ ଭାବିବା' ଅର୍ଥାତ୍- ଯେଉଁବ୍ୟକ୍ତି ଦଳ ମଧରେ ସମସ୍ତଙ୍କ ଠାରୁ କ୍ଷମତାପନ୍ନ ଅଟେ ତାହାଙ୍କ ପ୍ରତି ଏହି ଉକ୍ତିଟି ପ୍ରଯୁକ୍ତ ।

୩୬୦୫. ଏକା ନଈ ସହସ୍ର କୋଶ ।

ନଈ ପାରିହେବା ବାଟ ଚାଲିବାଠାରୁ କଷ୍ଟକର । ତେଣୁ ନଈ ପାରିହେବା ସହସ୍ରକୋଶ ପରି ଲାଗେ ।

୩୬୦୬. ଏକାନରୁ ସେକାନ ନହେବା । - (ଗୁପ୍ତ ରଖିବା)

୩୬୦୭. ଏକାନରେ ପଶି ସେ କାନରେ ବାହାରିଯିବା ।

ମନ ଯୋଗ ଦେଇ ନଶୁଣିବା / କଥା ଅନୁଯାୟୀ କାର୍ଯ୍ୟ ନ କରିବା ।

୩୬୦୮. ଏକା କାଳିଆ ବାରଟଙ୍କା,ବାର କାଳିଆ ବାର ଟଙ୍କା ।

ଗୋଟିଏ ଯୋଗ୍ୟ ପୁତ୍ର କୁଳକୁ ଯଥେଷ୍ଟ ,ବହୁ ଅଯୋଗ୍ୟ ପୁତ୍ର ଥାଇ ନଥିଲା ପରି ।

୩୬୦୯. ଏକା ଗଛର ଧାନ ,କେହି କାହାରିକୁ ନୁହନ୍ତି ଆନ ।

ଏକା ଗଛର ଫଳ ଗୋଟକ ଠାରୁ ଅନ୍ୟଟି ଭିନ୍ନ ହେବା ସମ୍ଭବ ନୁହେଁ । ପିତା ଯେପରି ତାର ପୁତ୍ରକନ୍ୟାର ଚଳଣି ମଧ ସେହିପରି ହେବା କଥା । ମାତ୍ର ମନୁଷ୍ୟ କ୍ଷେତ୍ରରେ ଏହାର ବୈଷମ୍ୟ ଦେଖାଯାଏ ।

୩୬୧୦.    ଏକା କହ୍ନାଲାଗି ଗୋରୁ ଗୁହାଳ ।

ଶ୍ରୀକୃଷ୍ଣଙ୍କ ପାଇଁ ଯେପରି ଗୋପରେ ଗୋଗଣ୍ଠ ଯଥେଷ୍ଟ ,ସେହିପରି କର୍ତ୍ତାଙ୍କ ଯୋଗୁଁ ଘର । କର୍ତ୍ତାଙ୍କର ମୃତ୍ୟୁ ହେଲେ ଘର ବିପର୍ଯ୍ୟସ୍ତ ହୋଇଥାଏ ।

୩୬୧୧.    ଏକାଟିଆ ବାର୍‌ହା ।

ଜଙ୍ଗଲରେ ବରାହମାନେ ଦଳବାନ୍ଧି ରହିବାକୁ ସୁଖ ପାଆନ୍ତି ନାହିଁ । ସେହିପରି ଯେଉଁବ୍ୟକ୍ତି ଏକାକୀ ରହିବାକୁ ସୁଖପାଏ ଅର୍ଥାତ୍ ଏକଚରୀ ତାକୁ 'ଏକୁଟିଆ ବାର୍‌ହା' କୁହାଯାଏ ।

୩୬୧୨.    ଏକାଟିଆ ବାର୍‌ହା, ମୁଣ୍ଡିମୁଣ୍ଡି ଶାହାଡ଼ା ।

ସହଯୋଗ ଓ ସଂହତି ବିନା ମନୁଷ୍ୟ ଜୀବନର ପରିପୂର୍ଣ୍ଣତା ବ୍ୟାହତ ହୋଇଥାଏ ।

୩୬୧୩.    ଏକାଂ ଲଜ୍ଜା ° ପରିତ୍ୟଜ୍ୟ ,ତ୍ରୈଲୋକ୍ୟ ବିଜୟୀ ଭବେତ୍ ।

ନିର୍ଲ୍ଲଜ ଲୋକକୁ କେହି ଖାତିର କରନ୍ତି ନାହିଁ । ସମସ୍ତେ ତାକୁ ବର୍ଜନ କରନ୍ତି । ତେଣୁ ସେ ନିଜକୁ ତିନିଭୁବନର ବିଜୟୀ ବୋଲି ଭାବେ । ଏହା ତାର ବୁଦ୍ଧିହୀନତାର ପରିଚାୟକ ।

୩୬୧୪.    ଏକନ ବେକନ

ଚିଉକ ଚେକନ

ଓଲି ଡ଼ୋଲ ।

ମାମୁଁର, କକେଇର

ବାରିଆଡ଼େ ଚୋର ।

(ଶିଶୁମାନଙ୍କର ଚୋରପୋଲିସ ଖେଳ)

## ଶିଶୁ ମନୋରଞ୍ଜନ ଶବ୍ଦଲହଡ଼ି

୩୬୧୫.    ଏକେ ଡ଼ାଉଁ ,ମେକେ ଡ଼ାଉଁ

ଘରେ ଘରେ ଛାତି କଣ୍ଟି,ପିତଳ ଘଣ୍ଟି ।

ନାଗେଶ୍ୱର ଫୁଲ କାଳି -କାଳିକି

ନଈ ବାଲିକି ।

ନଈବାଲି ହେଲା କାକର

ଧରମଛଡ଼ା କାଳିଆ ଘୋଡ଼ା

ବରକୋଳି ପତର ।

୩୬୧୬.    ଏକାମ୍ ,ଦୁକାମ୍ ,ତିନିକ୍ ,ଭୁବେନ ,

ରେଙ୍ଗ ,ଠେଙ୍ଗ ,ଛିତିରି , ଗୁଣ୍ଡିରି,ଟିଙ୍ଗିରି ,ଦଶ ।( ଦଶ ପର୍ଯ୍ୟନ୍ତ ଗଣିବା ପଦ)

୩୬୧୭. ଏକାମ୍ ,ଦୁକାମ୍,ତିନିକି ,ଥେୟା
ନାକ ଦଣ୍ଡି ପେଟାର ଛୁଆ
ନଅ ,ଦଶ,ଏଗାର,ବାର । (ବାର ପର୍ଯ୍ୟନ୍ତ ଗଣିବା ପଦ)

୩୬୧୮. ଏକା ଗାଈର ଗୋବର । ଏକା ଗୋଠର ଗାଈ । ଏକା ଭାଡ଼ିର ପାରା ।

୩୬୧୯. ଏକା ସାଙ୍ଗେ ଦିଅଁ ଦେଖା କଦଳୀ ବିକା ।

୩୬୨୦. ଏକା ନାହି ଦିଖଣ୍ଡ ।

୩୬୨୧. ଏକଂ ଦଶଂ ଶତଂ ଚୈବ ସହସ୍ର ମଯୁତଂ ତଥା
ଲକ୍ଷଂ ଚ ନିୟୁତଂ ଚୈବ କୋଟି ରର୍ବୁଦ ମେ ବଚ
ବୃନ୍ଦଂ ଖର୍ବଂ ନଖର୍ବଂ ଚ ଶଙ୍ଖ ପଦ୍ମ ଚ ସାଗରଂ
ଅନ୍ତଂ ଅଧଂ ପରାର୍ଦ୍ଧଂ ଚ କ୍ରମାଦ୍ଧଶଗୁଣୋତ୍ତରଂ ।
( ସଂଖ୍ୟା ଗଣନାର ପଦ ନିମ୍ନଲିଖିତ ଭାବରେ ଗଣନୀୟ)

| | | |
|---|---|---|
| ଏକ- | - | ୧ |
| ଦଶ- | - | ୧୦ |
| ଶତ- | - | ୧୦୦ |
| ସହସ୍ର-(ଏକହଜାର) | - | ୧୦୦,୦ |
| ଅୟୁତ-(ଦଶହଜାର) | - | ୧୦୦,୦୦ |
| ଲକ୍ଷ- (ଶହେହଜାର) | - | ୧୦୦,୦୦୦ |
| ନିୟୁତ-(ଦଶଲକ୍ଷ) | - | ୧୦୦,୦୦୦୦ |
| କୋଟି-(ଦଶଲକ୍ଷ) | - | ୧୦୦,୦୦,୦୦୦ |
| ଅର୍ବୁଦ-(ଦଶକୋଟି) | - | ୧୦୦,୦୦,୦୦,୦୦ |
| ବୃନ୍ଦ- (ଶହେ କୋଟି) | - | ୧୦୦,୦୦,୦୦,୦୦,୦ |
| ଖର୍ବ- (ଏକ ହଜାର କୋଟି) | - | ୧୦୦,୦୦,୦୦,୦୦,୦୦ |
| ନଖର୍ବ-(ଦଶ ହଜାରକୋଟି) | | ୧୦୦,୦୦,୦୦,୦୦,୦୦୦ |
| ଶଂଖ- (ଶହେ ହଜାର କୋଟି) | | ୧୦୦,୦୦,୦୦,୦୦,୦୦,୦୦ |
| ପଦ- (ଏକ ଲକ୍ଷ କୋଟି) | - | ୧୦୦,୦୦,୦୦,୦୦,୦୦,୦୦୦ |
| ସାଗର-(ଦଶଲକ୍ଷକୋଟି) | - | ୧୦୦.୦୦,୦୦,୦୦,୦୦,୦୦,୦୦ |
| ଅନ୍ତ-(ଶହେଲକ୍ଷକୋଟି) | - | ୧୦୦,୦୦,୦୦,୦୦,୦୦,୦୦,୦୦୦ |
| ଅଧ-(ଏକ ହଜାର ଲକ୍ଷ କୋଟି) | | ୧୦୦,୦୦,୦୦,୦୦,୦୦,୦୦,୦୦,୦୦ |
| ପରାର୍ଦ୍ଧ-(ଶହେ ହଜାରଲକ୍ଷ କୋଟି) | | ୧୦୦,୦୦,୦୦,୦୦,୦୦,୦୦,୦୦,୦୦୦ |

୩୬୨୨. ଏକା ଧାକଡ଼ (=ଅଯୋଗ୍ୟ) ମଲା
ବାରଖଣ୍ଡ ପାଲି (=ପଶାପାଲି) ବୁଡ଼ିଲା ।

ପଶାଖେଳରେ ଗୋଟିଏ ଗୋଟି ଅଯୋଗ୍ୟ ସ୍ଥାନରେ ବସିଗଲେ ସେ ଗୋଟିଟି ମାଡ଼ଖାଏ ବା ମରେ । ଫଳରେ ବିପକ୍ଷ ଦଳ ଖେଳର 'ବାଜିମାତ୍' ହୁଏ ଅର୍ଥାତ୍ ଜୟଲାଭ କରେ । ସେହିପରି ଜଣେ ବ୍ୟକ୍ତିର ଅଯୋଗ୍ୟତା ପାଇଁ ଗୋଷ୍ଠୀକୁ କ୍ଷତି ସହିବାକୁ ପଡ଼େ ।

୩୬୨୩. ଏକ ଘର କରାଉ ସହସ୍ର ଘର ଭାଙ୍ଗି
ସହସ୍ର ଘର କରାଉ ଏକ ଘର ଭାଙ୍ଗି ।

ମା' ଲକ୍ଷ୍ମୀଙ୍କ ମହିମାର ପଟାନ୍ତର ନାହିଁ । ତେଣୁ ମହାଲକ୍ଷ୍ମୀଙ୍କ ସମ୍ପର୍କରେ କୁହାଯାଏ - (୧) ଲକ୍ଷ୍ମୀ ଚଞ୍ଚଳା (୨) କାହାକୁ ପରଷା ,କାହାକୁ ନିରାଶା (୩) କିଏ ଖାଏ ଖିରି ପୁରୀ, କିଏ ମରଇ ଝୁରି ଝୁରି (୪) କାହାକୁ ଦିଅନ୍ତି ଖି ରି ଖେଚଡ଼ି ,କାହା କପାଳରେ ଥୋଡ଼ବଡ଼ି (୫) ଆଜି ଯେ ଅମୀର, କାଲ ସେ ଫକୀର (୬) ଆଜି ଯେ ରାଜେନ୍ଦ୍ରାସନେ ,କାଲି ସେ ଫକୀର ।

୩୬୨୪. ଏକ ଆଖିଆ କଣା, ତାର ନାହିଁ ବୁଝାବଣା ।

୩୬୨୫. ବାରହାତ କାକୁଡ଼ିର ତେରହାତ ମଞ୍ଜି ।- ଅସମ୍ଭବ କଥା ।

୩୬୨୬. ଏକା ଖାଞ୍ଚରେ ମାଛ ଉଠେନି
ସେଇଟା କି ବନଶି ।
ଏକା ଡ଼ାକରେ ଉଅ କରେନି
ସିଏ ବା କି ପଡ଼ୋଶି ।

ପ୍ରତିବେଶୀର ଆଦର୍ଶଗତ ଆଚରଣରେ ତ୍ରୁଟି ଘଟିଲେ ତା ପ୍ରତି ବନଶିରେ ଏକାଥରକେ ମାଛ ମାରିବା ଉପଲକ୍ଷ ଦେଇ ବ୍ୟଙ୍ଗ କରାଯାଇଛି ।

୩୬୨୭. ଏକେ ଶାଲୁକ (=କଇଁଫୁଲ) ତହିଁକି ତରଙ୍ଗ ।

କଇଁଫୁଲ ପାଣି ଉପରେ ସାମାନ୍ୟ ବତାସରେ ଆନ୍ଦୋଳିତ ହୁଏ । ତା ଉପରେ ଯଦି ପୋଖରୀରେ ତରଙ୍ଗ ଉଠେ ତାହାହେଲେ କଥା ସରିଲା । ଯେତେ ସ୍ନିଗ୍ଧ ସୁନ୍ଦର ହେଲେ ମଧ ଦୁର୍ବଳ ବ୍ୟକ୍ତି ସବଳର ଚାପରେ ଅତିଷ୍ଠ ହୁଏ ।

୩୬୨୮. ଏକେ ମା ମନସା ,ତହିଁକି ଝୁଣା ଗନ୍ଧ ।

୩୬୨୯. ଏକ ବୃନ୍ତେ ଦୁଇ ଫୁଲ ।

୩୬୩୦. *ଏକାର୍ଥରେ* - ଗୋଟିଏ ବୃନ୍ତରେ ଦୁ ଇଟି ଫୁଲ ।

ଏହିପ୍ରବାଦଟି ସହିତ ପ୍ରସିଦ୍ଧ ଲୋକକବି କାଜ୍ଜୀ ନଜରୁଲର ଇସ୍‌ଲାମଙ୍କର ବିଖ୍ୟାତ ପଦ୍‌କ୍ତି 'ଏକଇ ବୃନ୍ତେ ଦୁଇଟି କୁସୁମ ହିନ୍ଦୁ ମୁସଲମାନ' ତୁଳନୀୟ । ଦୁଇଟି ଭାଇ ଏକା ମା ପେଟରୁ ଜନ୍ମହେଲେ ମଧ ଗୁଣ ଭିନ୍ନ ପ୍ରକାରର ହୋଇଥାଏ ।

୩୬୩୧.  ଐକ୍ୟ ମନ୍ତ୍ର ଦୀକ୍ଷା ନେବା,
ଜାତି ବର୍ଣ୍ଣ ଧର୍ମ ଭେଦ ଭାବ ଭୁଲି
ଧରିବା ସଂସାର ସେବା । -(ବାଳକୃଷ୍ଣ-ଚାରୁଲବଙ୍ଗଲତା)

୩୬୩୨.  ଏକୋଇଶ ଚାବୁକ ଖାଇ ସହି ।
ଫୁଲ ଗନ୍ଧରେ ମୂର୍ଚ୍ଛା ଯାଇ ।

୩୬୩୩.  *ଏକାର୍ଥରେ*- ଚପଟା ଘାତ ତୁଚ୍ଛା, ଫୁଲ ଆଘ୍ରାଣେ ମୂର୍ଚ୍ଛା ।

୩୬୩୪.  ଏକମନ ହେଲେ ସମୁଦ୍ର ଶୁଖେ ।

ଏକତା ବଳରେ ଅସାଧ ସାଧନ କରାଯାଏ । ସମ୍ମିଳିତ ପ୍ରଚେଷ୍ଟା ଦ୍ୱାରା ଅସମ୍ଭବ କାର୍ଯ୍ୟ ଅସମ୍ଭବ ହୁଏ ।

୩୬୩୫.  ଏକ ସଲାମ୍ ନେହି ଦେଗା , ଏକଶ ସଲାମ ଦେଗା ।

ଯାହାର ଯାହା ପ୍ରାପ୍ୟ ତାକୁ ଥରୁଟିଏ ଫାଙ୍କିଦେଲେ ଅବସ୍ଥା ଚକ୍ରରେ ପଡ଼ି ତାକୁ ବହୁ ଗୁଣରେ ଶୁଝିବାକୁ ପଡ଼ିଥାଏ ।

୩୬୩୬.  *ଏକାର୍ଥରେ* - ଏକ ସଲମ ନକରି ଦୋ ସଲାମ କରିବା ।

୩୬୩୭.  *-ଏଜନ-*  ଏକ ସଲାମ ନକରି ବିଶ୍ ସଲାମ କରିବା ।

୩୬୩୮.  ଏକ ପୁଅରେ ଆଶ, ନଇ କୂଳରେ ଚାଷ (ବାସ) ,
ଭାବନା ବାରମାସ ।

ନଈ କୂଳରେ ଚାଷ ବା ଘର ଯେପରି ବଢିରେ ଧୋଇ ଯିବାର ସମ୍ଭାବନା;ସେହିପରି ଏକ ମାତ୍ର ପୁଅ ପ୍ରତି ଆଶା ଏକ ବିଡ଼ମ୍ବନା ଯେହେତୁ କୌଣସି କାରଣରୁ ତାର ବିନାଶ ଘଟିଲେ କୁଳ ବୁଡ଼େ ।

୩୬୩୯.  *ଏକାର୍ଥରେ* -ଏକ ପୁଅର ଆଶା, ବାଲୁ ତୀରରେ ବସା ।

୩୬୪୦.  ଏକ ନାଉର ଫଳ ,ବାଜେ ଠଳଠଳ ।

୩୬୪୧.  ଏକକୁ କହିଲେ ଦୁଇକି ବାଜେ,
ଯେପେ ନାଗର ସେ ସେ ବୁଝେ ।

ଗୋଟିଏ କଥାର ଦୁଇଟି ଅର୍ଥ ବାହାରେ । ବାହାର ଅର୍ଥ ସମସ୍ତେ ବୁଝନ୍ତି ମାତ୍ର ଭିତର ଅର୍ଥ ସମ୍ପୃକ୍ତ ବ୍ୟକ୍ତିର ମର୍ମରେ ବାଜେ ।

୩୬୪୨.  ଏକାଦିନକେ କେହି ହୋଇନି ବଡ଼ ,
ଏକା ଦିନକେ କେହି ଜିଣିନି ଗଡ଼ ।

୩୬୪୩.  ଏକ ରାଇଜରେ ଜଳ ପ୍ରଳୟରେ
ପଥର ଯାଉଛି ଭାସି,
ବାପ ପୁଅ ଦୁହେଁ ଧରି ନ ପାରିଲେ
ରାଉତରେ ,କାନ୍ଦୁଛନ୍ତି କୂଳେ ବସି ।

୩୬୪୪.  ଏକ ଆଖିରେ କାନ୍ଦ ,ଆର ଆଖିରେ ହସ ।

ଏକା ସାଙ୍ଗରେ ହର୍ଷ ଓ ବିଷାଦ ଭାବ ଉପୁନହେବା ।

୩୬୪୫. ଏକ କୁହନା ,ଦଶ ଶୁଣ ।

ଭଲହେଉ ମନ୍ଦହେଉ ଗୋଟିଏ କଥା ନକହି ଦଶଟି କଥା ଶୁଣ ।

୩୬୪୬. ଏକା ତୁଣିର (=ସରମୁଣା) ତୀର ।

ସମସ୍ତଙ୍କୁ ଏକାପରି ବିବେଚନା କରିବା କ୍ଷେତ୍ରରେ ଏହା ପ୍ରଯୁକ୍ତ ।

୩୬୪୭. ଏକେତ ଲାଉ (କଲରା) ପିତା, ତହିଁକି ନିମ୍ବ ପିତା ।
ପିତାରେ ପିତା ମିଶାଇବା ।

୩୬୪୮ ଏକା ଥାଳିରେ (ପତ୍ରରେ)ଖାଇବା । - ଘନିଷ୍ଠ ମିତ୍ରତା ।

୩୬୪୯. ଏକ ଦୁଇ ତିନି ଡ଼ାକିବା । - ଉକ୍ତିଟି ନିଲାମ ଡ଼ାକରେ ବ୍ୟବହୃତ ।

୩୬୫୦ ଏକ ନମ୍ବର ।

ସବୁଠାରୁ ବେଶି । ଭଲରେ ହେଉ ବା ମନ୍ଦରେ ହେଉ ଅର୍ଥାତ ସର୍ବଶ୍ରେଷ୍ଠ ।

୩୬୫୧. ଏକା ରଙ୍ଗରେ ରଙ୍ଗେଇବା ।

ବିଭିନ୍ନ ଢଙ୍ଗର ଲୋକଙ୍କୁ ଏକମତ କରାଇ ଏକ ବିଚାରରେ ଉପନୀତ କରାଇବା ।

୩୬୫୨. ଏକଲା ଘରର ବୋହୂ ହେଲୁ କିଲୋ ମା ?

ଝିଅର ଶାଶୁ ମୃତ୍ୟୁ ଶଯ୍ୟାରେପଡ଼ି ସୁକୁ ସୁକୁ ହେଉଥିଲା ବେଳେ ଝିଅର ମା' ଝିଅକୁ କହୁଛି ।

୩୬୫୩. ନିଶ୍ୱାସକୁ ବିଶ୍ୱାସ ନାହିଁ ,ହଲୁଛି ଦୁ ଇଟି ପାଦ ।

ଝିଅର ପ୍ରତ୍ୟୁ ତ୍ତର- ଶାଶୁର ନିଶ୍ଚିତ ମୃତ୍ୟୁର ବିଳମ୍ବ ହେତୁ ଖେଦୋକ୍ତି ।

୩୬୫୪. ଏକାଲେ ପଇସା ନାହିଁ
ନୋଅଟ ଖଣ୍ଡିକ ମାଆ ଆଣୁଛନ୍ତି
ବାପା କରୁଛନ୍ତି ନାହିଁ ।
କେତେ କର ନାହିଁ ନାହିଁ
ଘୋଡ଼ା ମୁଣ୍ଡେ ଶାଢୀ ଦିଅ ପକାଇ
ଦେଖାଇବି ସାଇ ସାଇ । - ( ଚଇତୀ ଘୋଡ଼ା ଢମାଳି )

୩୬୫୫. ଏକା କାଳେ ଜନ୍ମ ,ଏକା କାଳେ ଖେଳା
ଏକା କାଳେ ଶଯ୍ୟା ହେଲେ ଶେଷ ବେଳା -( ଉତ୍କଳମଣି ଗୋପବନ୍ଧୁ)

୩୬୫୬. ଏକା କରି ରଙ୍ଗବତୀ କେଣେ ଛାଡ଼ିଗଲୁ
କେଉଁଠାରେ ରଙ୍ଗବତୀ ଯାଇଣ ରହିଲୁ ।
ତୋହଲାଗି ଭୋକ ଶୋଷ ଲାଗୁନାହିଁ ମୋତେ
କେଉଁଠାରେ ରଙ୍ଗବତୀ ଭେଟିବିଲୋ ତୋତେ ।

ପ୍ରେମିକାକୁ ନ ପାଇ ପ୍ରେମିକ ଯୋଗୀବେଶ ଧାରଣକରି କେନ୍ଦରା ବଜାଇ ବୁଲି ବୁଲି ଭିକ୍ଷା କରି ପ୍ରତିପୋଷିତ ହେଉଛି ଓ ପ୍ରେମିକା ପାଇଁ ବାହୁନୁଛି ।

୩୬୫୭. ଏକ ଛେଲେରେ (= ସନ୍ତାନ )ମାଆ ଗଳାର ହାର,
ଦୁଇ ଛେଲେର ମାଆ ସଂସାର ସାର,
ତିନି ଛେଲେର ମାଆ ପେଙ୍କୁଆ ଯାଉ,
ଚାରି ଛେଲେର ମାଆକୁ ଛାଡ଼ି ଦିଆ ଯାଉ ।

୩୬୫୮. ଏକା କାଳି ଗାଈ ଲାଗି ଗୋଠ । - ଗୁଣବତୀ ଗୃହିଣୀ ଲାଗି ସଂସାର ।

୩୬୫୯. ଏକା ବୋକା । - ବିପଦଆପଦ ବେଳେ ଏକୁଟିଆଥିଲେ ବୁଦ୍ଧି ହଜିଯାଏ ।

୩୬୬୦. ଏକା ଚାହାଳିର ଚାଟ ,ଏକା ଅବଧାନ ପାଠ ।

ଦୁଇଜଣ ବ୍ୟକ୍ତି ଏକ ପ୍ରକାର ବୁଦ୍ଧି ,ଜ୍ଞାନ ,ଗାରିମା ଦେଖାଇଲେ ସେମାନେ ଉଭୟ ଏକ ଚାଟଶାଳୀର ଛାତ୍ର ଓ ଏକା ଶିକ୍ଷକଙ୍କ ପାଖରେ ପଢିଥିଲେ ବୋଲି କୁହାଯାଏ ।

୩୬୬୧. ଏକି ପରବ ,ଖୁଣ୍ଟିଖିଆଙ୍କର ଗରବ ।

୩୬୬୨. ଏ କି କଥା ? ଏକେଇ କଥା ।

ଗୋଟିଏ କଥାକୁ ଏପଟ ସେପଟ କରି କହିବା -ପରିହାସ ।

୩୬୬୩. ଏକେ ଖନ (ଖନା) ,ତହିଁ ଜାଡୁଆ (ଜଡ଼ା)ଗୋସେଇଁ ପରସନ ।

ଯିଏ ଖନା ଓ ଜଡ଼ା ତାକୁ ସ୍ୱୟଂ ଭଗବାନ କେବଳ ରକ୍ଷା କରି ପାରିବେ ।

୩୬୬୪. ଏକୋଇର ବଳା (=ପୁତ୍ର) ବିଶିକେସନ ।

କର୍ଣ୍ଣଙ୍କର ଏକମାତ୍ର ପୁତ୍ର 'ବିଶିକେସନ' ଯାହାର ଜୀବନକୁ ବଳିଦେଇ କର୍ଣ୍ଣ ସତ୍ୟରକ୍ଷା କରିଥିଲେ ।

୩୬୬୫. ଏକେ ଶିରୀତ ଏକେ ହତଶିରୀ ।

ଜଣକର ସୁପୁଣ୍ୟ ହେତୁ ଗୃହର ଶ୍ରୀ ବଢିଲାବେଳକୁ ଆଉ ଜଣକର ମନ୍ଦଗୁଣ ହେତୁ ଘରର ଶ୍ରୀ ତୁଟିବାର ଦେଖାଯାଏ ।

୩୬୬୬. ଏଗାତରୁ ଯାଇ ସେ ଗାତରେ ପଶ ,
ଏଚୂଲି ମୁଣ୍ଡରୁ ଯାଇ ସେ ଚୂଲି ମୁଣ୍ଡରେ ବସ ।

କନ୍ୟା ବାପଘରୁ ଶାଶୁଘରକୁ ଯିବା ସମ୍ପର୍କରେ ।

୩୬୬୭. ଏ ଘରେ ଉଆଁସ ନାହିଁ କି ସଂକ୍ରାନ୍ତି ନାହିଁ ।

ଆର୍ଥିକ ପରିସ୍ଥିତି ପାଇଁ ପୁନିଅ ପର୍ବ ଯାହାଘରେ ପାଳନ କରାଯାଇ ପାରେନା -ଦରିଦ୍ରତାର ଲକ୍ଷଣ ।

୩୬୬୮. ଏ ଘର ମାଉସୀ,ସେଘର ପିଉସୀ । - ଯେଉଁ ଲୋକ ଉଭୟ ପକ୍ଷର ଥାଏ ।

୩୬୬୯. ଏଠାଇଁ ,ସେଠାଇଁ ହେବା ।-ଅସ୍ଥିର ହେବା ।

୩୬୭୦. ଏକି ବିଧିର ଲୀଳାଖେଳା, କାଉ କଣ୍ଠରେ ତୁଳସୀମାଳା ।

୩୬୭୧. ଏ ଘୋର ସଂସାର ସାଗର ।
ଏଥେ ବିଶ୍ୱାସ ନ କର । - (ଜଗନ୍ନାଥ ଭାଗବତ)

୩୬୭୨. ଏକେ ରାମାନନ୍ଦ, ତହିଁ ଝୁଣାର ଗନ୍ଧ ।

ଲୋକମାନଙ୍କୁ ଚିତା କାଟୁଥିବା ବ୍ୟକ୍ତିକୁ ଅର୍ଥାତ୍ ଠକକୁ ଝୁଣାଧୂଆଁ ଗନ୍ଧାଏ ଅର୍ଥାତ୍ ଏହି ବଦପ୍ରକୃତିର ଲୋକେ ପବିତ୍ରତା ଠାରୁ ଦୂରେଇ ଯାଆନ୍ତି ।

୩୬୭୩. ଏଗାର ଏକାଦଶୀ ଛାଡ଼ଇ, ତିରିଶ ରୋଜା ବଢାଇ ।

୩୬୭୪. ଏକ ଠଗ, ଦୁଇ ଠଗ ତିନି ଠଗର ମେଳା
ଠଗଙ୍କ ଗୁରୁ ଯଜ୍ଞେଶ୍ୱର(=ଧନାଢ୍ୟ), ରାମଚନ୍ଦ୍ର ତାର ଚେଲା ।

'ଠଗ' ଦସ୍ୟୁ ବୃତ୍ତି ଓ ପ୍ରବଞ୍ଚନା କରି ଲୋକଙ୍କଠାରୁ ଧନ ଆହରଣ କରେ । ଏକାଧିକ ଠଗ ମିଳିତ ହେଲେ ଲୋକଙ୍କ ଅବସ୍ଥା ସରିଲା । ଏମାନଙ୍କର ଗୁରୁ ଯଜ୍ଞେଶ୍ୱର ଅର୍ଥାତ୍ ଧନାଢ୍ୟ ହେବା ନିଶ୍ଚିତ । ରାମଚନ୍ଦ୍ରଙ୍କ ପରି ଧାର୍ମିକ ପୁରୁଷମଧ ଏମାନଙ୍କର ଅଧିନସ୍ଥ ।

୩୬୭୫. ଏକପାଦ ଜଳରେ, ଏକ ପାଦ ସ୍ଥଳରେ ।

୩୬୭୬. ଏକ ପାଦ ଗଲେ ରକ୍ଷା ନାହିଁ, ସାତ ପାଦ ଗଲେ ମେଳା ।

୩୬୭୭. ଏକ ମାଣ ଧାନରେ ମହାଭାରତ ସୃଷ୍ଟି ।

୩୬୭୮. ଏକ ବେଢ ଯାହର, ଗାଁ ଯାକ ତାହାର ।

୩୬୭୯. ଏକ ନାରୀ ଦୁହିଁଙ୍କଠାରେ ଫସି(=ଫସିବା)
ଯେମିତି ସତୁରୀ ସେମିତି ଅଶୀ ।

ଜଣେ ଅନେକ ମାର୍ଗରେ ଗତି କରି ପାରିବ । ଯେତେବେଳେ ହିନ୍ଦୁଜାତିର ଗୋଟାଏ ବୈଦିକ ସମ୍ପ୍ରଦାୟ ନ ରହିଲା ସେତେବେଳେ ଏହି ଉକ୍ତିଟିର ଚରିତାର୍ଥ ଆରମ୍ଭ ହେଲା । ଅର୍ଥାତ୍ ପ୍ରତ୍ୟେକଙ୍କର ପ୍ରକୃତି ଓ ପସନ୍ଦ ବିଚିତ୍ର ପ୍ରକାରର ହୋଇଥାଏ ।

୩୬୮୦. ଏକକୁ ସାଧିଲେ ସବୁ ସାଧ୍ୟ,
ସବୁ ସାଧିଲେ ହୁଏ ଅସାଧ୍ୟ ।

ଏକ ସମୟରେ ଗୋଟିଏ କାମ କଲେ ସଫଳତା ପ୍ରାପ୍ତ ହୁଏ । ମାତ୍ର ସବୁକାମକୁ ଏକ ସମୟରେ କରିବାକୁ ଚେଷ୍ଟାକଲେ ବିଫଳତା ପ୍ରାପ୍ତ ହୋଇଥାଏ ।

୩୬୮୧. ଏକଷଠି ବାଷଠି କରିବା ।

୩୬୮୨. *ଏକାର୍ଥରେ* -କଟକ ପୁରୀ କରିବା । - ହସ୍ତ ମୈଥୁନ କରିବା ।

୩୬୮୩. ଏକୋଇଶ ବାଇଶ କରିବା । - ମାମୁଲି ଫରକ ବା ନଷ୍ଟ, ବରବାଦ କରିବା ।

୩୬୮୪. ଏକା ଦୁକ୍କା ।

୩୬୮୫. *ଏକାର୍ଥରେ* - ଏକଲା ଦୁକଲା

୩୬୮୬. *ଏକାର୍ଥକେ* - ଇକ୍କେ ଦୁକ୍କେ । - ଜଣେ ବା ଦୁଇଜଣ ।

୩୬୮୭. ଏକା ପାହୁଣ୍ଡରେ ଫେରିବା । - ଗଲି ଅଇଲି କ୍ଷଣକେ ନରହି ଫେରିଲି ।

୩୬୮୮. ଏକାନ୍ତ ବାସ ,ନଥାଏ କ୍ଳେଶ ।

ଏକାନ୍ତରେ ବାସ କଲେ ଅନ୍ୟ କାହା ସହିତ ଝଗଡ଼ା ଝଞ୍ଜଟ ହେବାର ଅବକାଶ ନଥାଏ ।

୩୬୮୯. ଏକରେ ଏକ ଏଗାର । - ଏକତାରା ଶକ୍ତି ମହାନ ।

୩୬୯୦. ଏକେ କଲରା ତହିଁକି ନିମ୍ବ ।

କଟୁ ବା କୁଟୀଳ ପ୍ରକୃତିର ଲେକ 'କୁ ' ସଙ୍ଗରେ ପଡ଼ିଲେ ଆହୁରି ବିଗିଡ଼ି ଯାଏ ।

୩୬୯୧. ଏକ ପ୍ରାଣ ଦୁଇ ଶରୀର । – ଅତ୍ୟନ୍ତ ଘନିଷ୍ଠ ମିତ୍ର ତଥା ବନ୍ଧୁ ।

୩୬୯୨. ଏକା ପଥରେ ଦୁଇଟି କାମ ।

ଏକା ଯୁକ୍ତିରେ ଦୁଇଟି କାର୍ଯ୍ୟ ସିଦ୍ଧହେଲେ ଏହି ଉକ୍ତିଟି ପ୍ରଯୁକ୍ତ ହୁଏ ।

୩୬୯୩. ଏକାଦଶୀରେ ଖାଇ ଦ୍ୱାଦଶୀରେ ଓଗାରିବା ।

ଏକାଦଶୀର ଖିଆ ଯେପରି ଦ୍ୱାଦଶୀରେ ବାହାରି ଯାଇଥାଏ , ସେହିପରି ସଂସାରରୁ କିଛି ନେଲେ ନିଶ୍ଚିତ ଭାବରେ ଦେବାକୁ ପଡ଼େ । ତେଣୁ ଅତ୍ୟଧିକ ଲୋଭ ବର୍ଜନୀୟ ।

୩୬୯୪. ଏକ୍ ଲାଖ୍ ପୁତ୍, ସଓ୍ୱା-ଲାଖ୍ ନାତି,
ରାବଣ ଘରେ ଦୀପ ବା ବତୀ ।

ଅତ୍ୟନ୍ତ ଐଶ୍ୱର୍ଯ୍ୟଶାଳୀ ବ୍ୟକ୍ତିର ପୂର୍ଣ୍ଣ ବିନାଶ ହେଲାପରେ ଏହି ଲୋକୋକ୍ତିଟି ପଯୋଗ କରାଯାଏ ।

୩୬୯୫. ଏକ ସେ ଦୋ ଭଲା ।

୩୬୯୬. *ଏକାର୍ଥରେ* - ଏକ ସେ ଭଲା ଦୋ ।

ଦୁଇଜଣ ବ୍ୟକ୍ତି ସାଙ୍ଗରେ ରହିବା କିମ୍ୱା ଯାତ୍ରା କରିବା ,ଜଣେ ବ୍ୟକ୍ତି ଏକାନ୍ତରେ ରହିବା କିମ୍ୱା ଯାତ୍ରା କରିବା ଠାରୁ ଭଲ ।

୩୬୯୭. ଏକେତ ଚୋରି ,ତହିଁକି ସିନା ଢୋରି(=ଛାତିଟାଣ କରିବା) ।

ଯେଉଁ ବ୍ୟକ୍ତି ଖରାପ କାମ କରି ନାଲି ଆଖି ଦେଖାଏ ।

୩୬୯୮. ଏକ ନାରୀ,ସଦା ବ୍ରହ୍ମଚାରୀ ।

ଯେଉଁ ବ୍ୟକ୍ତି କେବଳ ନିଜ ପତ୍ନିସହିତ ଯୌନ ସମ୍ବନ୍ଧ ରଖେ ତାକୁ 'ସଦା ବ୍ରହ୍ମଚାରୀ' କହନ୍ତି

୩୬୯୯. ଏକା ତାଉଆର ରୁଟି ,ପତଳା ନା ମୋଟି ।

ଗୋଟିଏ କୁଟୁମ୍ବର ପରିବାର ବର୍ଗ,ଅଥବା ଗୋଟିଏ ପଦାର୍ଥର ଅଂଶ ମଧ୍ୟରେ ଅତିକମ ଫରକ ଦେଖାଯାଇଥାଏ ।

୩୭୦୦. ଏକ ଚୁପ ,ହଜାରେଙ୍କୁ ହରାଏ ।

ଯେଉଁ ଲୋକ ଶାନ୍ତ ରହେ ,ହଜାରେ କହିଲା ବାଲା ତା' ପାଖରେ ହାର ମାନନ୍ତି ।

୩୭୦୧. ଏକ ତନ୍ଦୁରସ୍ତି (=ସ୍ୱାସ୍ଥ୍ୟ) ,ହଜାରେ ନିୟାମତ (=ଐଶ୍ୱୀକୃପା) ।

ସ୍ୱାସ୍ଥ୍ୟ ବହୁମୂଲ୍ୟ ଅଟେ । ଏହା ଏକ ଐଶୀକୃପା ତେଣୁ ସ୍ୱାସ୍ଥ୍ୟପ୍ରତି ଧ୍ୟାନଦେଲେ ଅଧିକ

ପରିଶ୍ରମ କରି ବହୁ ଧନସମ୍ପତ୍ତି ଅର୍ଜିତ ହୋଇପାରିବ ।

୩୭୦୨. ଏକା ଖୋଳରେ ଦୁଇଟି ଖଣ୍ଡା ରହିପାରେ ନାହିଁ ।

ଯେଉଁଠାରେ ଦୁଇଜଣ ବ୍ୟକ୍ତି କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟରେ ବା ପରିବାରରେ ମାଲିକାନା ଅଧିକାର ସାବ୍ୟସ୍ତ କରିବାକୁ ଚାହାଁନ୍ତି , ସେଠାରେ ଏହି ଉକ୍ତିଟି ପ୍ରୟୋଗ କାରାଯାଇଥାଏ ।

୩୭୦୩. ଏକ ମନା ହେବା ।

ଅଭିନ୍ନ ହେବା । ଅର୍ଥାତ୍ ଦୁଇଜଣଙ୍କର ଦୁଇଟି ପ୍ରାଣହେଲେ ମଧ ଉଭୟଙ୍କର ମନ ।

୩୭୦୪. ଏକକୁ(ରୁ) ହଜାରେ କରିବା ।

୩୭୦୫. *ଏକାର୍ଥରେ* - ଏକ ଏକକୁ ଦଶଦଶ କରିବା ।

ତିଳକୁ ତାଳ କରିବା ଅର୍ଥରେ ଏହି ପ୍ରବାଦ ଦ୍ୱୟ ପ୍ରୟୋଗ କରାଯାଏ ।

୩୭୦୬. ଏକା ଘାଟରେ ପାଣି ପିଇବା । - ଗୋଟିଏ ସ୍ଥାନରେ ଆଶ୍ରୟ ନେବା ।

୩୭୦୭. ଏକଛତ୍ର ରାଜ (ବାଦ) ।- ଜଣଙ୍କର ଏକାଧିପତ୍ୟ ଅର୍ଥାତ୍ Dictatorship.

୩୭୦୮. ଏକ ତାଓ୍ୱାର ରୁଟି ।

ଏକ ପରିବାରର ଲୋକେ ଏକା ବିଚାରଧାରାର ହେଲେ ଏହି ଉକ୍ତିଟି ପ୍ରଯୁକ୍ତ ।

୩୭୦୯. ଏକୋଇଶ ବାଇଶ ଅନ୍ତର । - ସାମାନ୍ୟତମ ତଫାତ୍ ।

୩୭୧୦. ଏକଇ ଆତ୍ମା ନରହରି । ସମେ ସକଳ ଦେହ ପୁରୀ ।
ଏକଥା ହୁଅଇ ପ୍ରମାଣ । ସକଳ ଆତ୍ମା ନାରାୟଣ ।
ଏ ବିଷ୍ଣୁମାୟା ପରାପର । ବ୍ରହ୍ମାଣ୍ଡ ବାହାର ଅନ୍ତର । (ଜଗନ୍ନାଥ ଭାଗବତ)

୩୭୧୧. ଏ କ'ଣ ରାଣ୍ଡ ରାଇଜ (=ରାଜ୍ୟ) ପାଇଛ ।

୩୭୧୨. ଏକ ବାପ୍ ,ଏକ ବାତ୍ । - ଯାହାର କଥା ଗୋଟିଏ ।

୩୭୧୩. ଏକ ଛତ୍ରୀ ବେଲ ପତ୍ରୀ ।

୩୭୧୪. ଏକ କୁତା କୁତା ପାଳେ ,ଏକ କୁତା କୁତା ମାରେ ।

ଗୋଟାଏ ଦାସ ବା ଭୃତ୍ୟ ଅନ୍ୟ ଘରେ ଖଟେଇବା ପାଇଁ ଆଉ ଗୋଟାଏ ଦାସ ବା ଭୃତ୍ୟକୁ ପାଳେ । କିଏ ବା ଅନ୍ୟର ଦାନା ପାଣି ହରଣ କରେ ।

୩୭୧୫. ଏକ କୁତା ଶଶୁର ଘରେ ଜ୍ୱାଇଁ ,ଏକ କୁତା ଭଉଣୀ ଘରେ ଭାଇ ।

ଭଉଣୀ ଘରେ ଭାଇ ,ଶଶୁର ଘରେ ଜ୍ୱାଇଁ ବେଶିଦିନ ରହିବା ସମ୍ମାନ ହାନୀକର ।

୩୭୧୬. ଏକା ତୁଣ୍ଡରେ ଉଆ ଉସୁନା ।

ଜଣେ ଲୋକ ଗୋଟିଏ ପ୍ରକାର କଥା କହି ଅନ୍ୟ ସମୟରେ ଭିନ୍ନ ମତ ପୋଷଣ କରିବା ।

୩୭୧୭. ଏକ ରାଣ୍ଡ , ଦୁଇ ରାଣ୍ଡ ,ତିନି ରାଣ୍ଡ ,ଦାଣ୍ଡ ଦାଣ୍ଡ ।
ଏକ ରାଣ୍ଡ ଦୁଇ ରାଣ୍ଡ ତିନିରାଣ୍ଡ ଏକହେଲେ କମ୍ପଇ ବ୍ରହ୍ମାଣ୍ଡ ।

ଯେଉଁ ପରିବାରରେ ଏକାଧିକ ବିଧବା ଥାଆନ୍ତି ,ସେ ପରିବାରରେ କଳହ ,ଅଶାନ୍ତି ,କଳି ତକରାଳ ଲାଗି ରହେ । ଏପରିକି କଳି ପଦାକୁ ମଧ୍ୟ ଫୁଟି ବାହାରେ ।

୩୭୧୮. ଏକ ତାଟରେ ପାଠ ।
ଦୁଇ ତାଟରେ ଭଲ ପାଠ ।
ତିନି ତାଟରେ ହାଟ ।
ଚାରି ତାଟରେ ନାଟ ।

୩୭୧୯. ଏ କଣ ଖୋଜିଲ ସେକଣ ଖୋଜିଲି
ମଝି କଣେ ଗଲେ ଛଡ଼ି
ମଝିଆ ଦିଅର ଲୁଗା ଆଣି ଥିଲେ
ରଅସ-ରସିଆ ଧଡ଼ି ।

୩୭୨୦. ଏକ ତରା ମଣିଷ (ମାନୁଷ) ମରା ।
ଦୁଇ ତରା କତରା ଘୋରା (ନାରାଖାରା) ।
ତିନି ତରା ନାହିଁ ଦୋଷ ।
ଚାରି ତରା ଘରେ ପଶ ।
ପାଞ୍ଚତରା ନନ୍ଦିଘୋଷ ।

ସନ୍ଧ୍ୟା ସମୟରେ ନିଜକୁ ଶାନ୍ତ ସଂଯତକରି କ୍ରୀଡ଼ାକୌତୁକ , ବିଦ୍ୟାଭ୍ୟାସ ,ଲିଖନ-ପଠନ,ଆଦିରୁ ବିରତ ହେବା ଏକାନ୍ତ ଉଚିତ । ଶିଶୁକୁ ଏଥିରୁ ବିରତ କରିବା ପାଇଁ ଏହା ଏକ କୌତୁକ ପ୍ରଦ କୌଶଳ । ତା ଛଡ଼ା ଶିଶୁ ହଠାତ୍ ଗୋଧୂଳିରେ ତରାଟିଏ ଦେଖି ଅନାଇ ରହେ । ଦ୍ୱିତୀୟ ତାରା ଦେଖିବାକୁ ଆଗ୍ରହ ପ୍ରକାଶ କରି ବେକ ବୁଲେଇ ଚଉଦିଗକୁ ଅନାଇଅନାଇ ବହୁକ୍ଷଣ ଅନୁସନ୍ଧାନ କରିଥାଏ । ପୁନଶ୍ଚ ତୃତୀୟ ,ଚତୁର୍ଥ ଓ ପଞ୍ଚମ ଦେଖୁ ଦେଖୁ ସନ୍ଧ୍ୟା ଉତ୍ତୀର୍ଣ୍ଣ ହୋଇ ରାତ୍ର ହୋଇଯାଏ । ଏଥିରେ ଶିଶୁମାନଙ୍କର ଦୃଷ୍ଟିଶକ୍ତି ର କସରତ ହୋଇଥାଏ । ଶିଶୁମାନଙ୍କ ମଧରେ ଦୃଷ୍ଟିଶକ୍ତିର ପ୍ରତିଦ୍ୱନ୍ଦିତା ହେତୁ ଗଣନ ବିଦ୍ୟା ପ୍ରତି ଆସକ୍ତି ଅପ୍ରତ୍ୟକ୍ଷ ଭାବରେ ନିହିତ ଥାଏ ।

୩୭୨୧. ଏକ ମୁନି ପାନିଆ ,ଦୁଇ ମୁନି ପାନିଆ,
ଉପର ସାଇକି ଅନେଇଦେଲି ମୋ ଭାଇ କନିଆ
ମୋ ଭାଇ ଆସୁ ,ଚତରାରେ ବସୁ
ମାରି ଦେବି ଝିଲି ଶଙ୍ଖା ,ଆଖିକାନେ ପଶୁ ।

୩୭୨୨. ଏକୁଟିଆ ରାମକୁ ରକ୍ଷା ନାହିଁ ,ତହିଁକି ସୁଗ୍ରୀବ ସାଥି ।

ଦୁଇଟି ପ୍ରବଳ ଶକ୍ତିର ସଂଯୋଗ ଘଟିଲେ ,ଏହି ପ୍ରବାଦଟି ପ୍ରଯୁକ୍ତ ହୋଇଥାଏ । ଯେପରି ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କର ପରାକ୍ରମର ପଟାନ୍ତର ନଥିଲେ ମଧ ସୁଗ୍ରୀବ ପରି ପ୍ରବଳ ପରାକ୍ରମୀ ବୀର ରାବଣକୁ ପରାସ୍ତ କରିବା ପାଇଁ ତାକୁ ସାହାଯ୍ୟଙ୍କ କରିବା ଆହୁରି ଭୟଙ୍କର ।

୩୭୨୩. ଏକ ତାରା ,ଦୁଇ ତାରା,
ସରଗରେ ବସି ଖାଏ ଖରା,

ଆମ୍ବ ପଣସର ମଧୁର ରସ,
ଡୁଲ୍‌କା ତରାର ନାହିଁ ରସ ।

୩୭୨୪. ଏକଥା ଜଣା ସେ କଥା ଜଣା
ବାକି ତ ନାହିଁ କିଛି
ସଉତୁଣୀକୁ ସୁନା ଗହଣା,
ମୋତେ ଦେଲେ କାଛି (=ଛୋଟ ଲୁଗା) ।

୩୭୨୫. ଏକଳ ସେକଳ କରିବା ।

ପାକୁଳେଇବା ଅର୍ଥାତ ଖାଦ୍ୟ ପଦାର୍ଥକୁ ଏକ କଳରୁ ଅନ୍ୟ କଳକୁ ପାଟି ଭିତରେ ନେବା ।

୩୭୨୬. ଏକ୍‌ଶ କଅଁଟ୍ । - ଅନ ର୍ଗଳ ।

୩୭୨୭. ଏକ ନାମୀ ଏକ ସ୍ୱାମୀ ,ଏକାନ୍ତରେ ଚିହ୍ନି ।

୩୭୨୮. ଏ ଦୁଃଖ ସୁଖ ସମକର
ଇନ୍ଦ୍ରିୟ ମାନଙ୍କୁ ନିବାର ।

୩୭୨୯. ଏକେ ଗୁରୁବାର ଚଉଦିଗେ ବାଧେ
ଦକ୍ଷିଣକୁ ଗଲେ ପ୍ରାଣେ ବାଧେ ।

ଗୁରୁବାର ଦିନ ଚାରିଦିଗକୁ ଗଲେ କାର୍ଯ୍ୟରେ ବାଧା ସୃଷ୍ଟି ହୋଇଥାଏ । କେବଳ ଦକ୍ଷିଣକୁ ଗଲେ ଜୀବନ ଉପରେ ବାଧାର ସମ୍ଭାବନା ଥାଏ ବୋଲି ଲୋକ ବିଶ୍ୱାସ ।

୩୭୩୦. ଏକଃ ସ୍ୱାଦୁ ନ ଭୁଞ୍ଜିତ ।

ସ୍ୱାଦୁ ତଥା ମିଠା ପଦାର୍ଥ ଏକାକୀ ଖାଅ ନାହିଁ ତାକୁ ବାଣ୍ଟିକରି ଖାଅ ।

୩୭୩୧. ଏକ ଚିଲମେ ଯେମନ ତେମନ
ଦୁଇ ଚିଲମେ ନିଶା
ତିନି ଚିଲମେ ମଦନ ମୋହନ,
ଚାର ଚିଲମେ ରାଜା । - ଗଞ୍ଜେଇ ଖିଆଳୁ ଆକ୍ଷେପ ।

୩୭୩୨. ଏକେତ ବୋହୂ ନାଚେଣୀ
ତା ପରେ ଖେମଟାର ବାଜଣୀ (=ବାଜଣା) ।

ନବବଧୂ ର ଚାଲି ଚଳଣକୁ ବ୍ୟାଖ୍ୟା କରି ବ୍ୟଙ୍ଗୋକ୍ତି ।

୩୭୩୩. *ଏକାର୍ଥରେ* - କାଲି ଆସିଛି ରାଣ୍ଡି ,ଆଜି ଭାଙ୍ଗିଲା ହାଣ୍ଡି ।

୩୭୩୪. -*ଏଜନ* - ବୋହୂ ନୁହେଁ -ବୋବା(=ମୂକ),
ବୋହୂ ନୁହେଁ -ବାବା(= ବାବାଲୋ)

୩୭୩୫. - *ଏଜନ* - ବୋହୂର ଚାଲି ଚଳଣ କିପରି , ଛଡ଼ା ବାଛୁରୀ ଯେପରି ।

୩୭୩୬. -ଏଜନ - ବୋହୂର କଣ୍ଠସ୍ୱର କିପରି , ଭାଟ ବୋବାଇଲା ପରି ।

୩୭୩୭. -ଏଜନ - ପଇସା ଖର୍ଚ୍ଚହେଲା ବୋହୂ ସୁନ୍ଦର ନୋହିଲା ।

୩୭୩୮. -ଏଜନ - ବୋହୂଟି ଭଲ ଅଟେ ,ଖୁଣ୍ଡା ଖାଇ ବାଟଣ ବାଟେ ।

୩୭୩୯. -ଏଜନ- ମେଘ ମେଘରେ ବେଳଯାଏ,ନୂଆ ବୋହୂ ସାତଥର ଖାଏ ।

୩୭୪୦. -ଏଜନ - ଲାଜରେ ବୋହୂ ଯାଉଛି ସଡି,ଓଉ ଫଡ଼ାକୁ ଦିଏ ରଗଡ଼ି ।

୩୭୪୧. -ଏଜନ- ଗେହ୍ଲି ବୋହୂର ନରମା ପାଦ,ଚାଲିବାକୁ ତାର ନ ଅଣ୍ଟେ ହଦ ।

୩୭୪୨. -ଏଜନ - ବୋହୂ ନୁହେଁ ସେ ହୀରା
କାଲି ପିନ୍ଧିଛି ପାଟ ଶାଢୀ
ଆଜି କହୁଛି ଚିରା ।

୩୭୪୩. -ଏଜନ- ଶୀତ ଦିନେ (ବୋହୂର) ଢାଡ଼କଣ୍ଡା ,ଗରମ ଦିନେ ଘିମିରି ।

ଶୀତଦିନେ ଦେହର ତଳିପେଟ ,ପିଚା,ଗୋଡ଼ ,ପିଠି ଉପରେ କିଆକଣ୍ଡା ଭଳି ଏକପ୍ରକାର ଚର୍ମରୋଗ ହୁଏ । ଏହାକୁ କିଆକଣ୍ଡା ବା ଢାଡ଼କଣ୍ଡା କହନ୍ତି ।

୩୭୪୪. ଏକଇ ମାଟିରୁ ଗଢା ସବୁ
କାୟା ଉଚ୍ଚ ନୀଚ କିଆଁ ବାରୁ?
ଏକ ଦିବ୍ୟ ଜ୍ୟୋତି ପ୍ରକଟଇ
ନୀତି ସକଳ ଘଟ ଅନ୍ତର । - (ସନ୍ଥ କବୀରଙ୍କ ପ୍ରବଚନ)

୩୭୪୫. ଏକା ହୋଇକରି ତପସ୍ୟା କରିବ
ଦୁଇ ଜଣ ମିଶି ପଢିବ ପାଠ
ତିନିଜଣ ମିଶି ସଙ୍ଗୀତ କରିବ
ଚାରି ଜଣ ମିଶି ଚାଲିବ ବାଟ
କୃଷି ଆରମ୍ଭିବ ପାଞ୍ଚଜଣ ମିଶି
ବହୁଲୋକ ମିଶି କରିବ ରଣ ।

୩୭୪୬. ଏକଇ ଦେଶରୁ ସରବେ ଆଗତ
ଜଗତରେ ଉପଗତ
ମହୀମଣ୍ଡଳେ ବାଟ ବରଣରେ
ଧରନ୍ତି ଯେ ଯାହା ବାଟ । - ( ସନ୍ଥ କବୀରଙ୍କ ପ୍ରବଚନ )

୩୭୪୭. ଏକେ ଜୁହାର ତାକେ ଜୁହାର

ଗାଁ ଦେଇ ଜୁହାର
ଅଇଲା କୁଟୁନୀ ପାଟ ପୂଜାରିଣୀ
ଲେଦେ ଚୁଲୀ ଲଙ୍ଗଳ ହାଣ୍ଡି ।
ତଳିପା ଜୁହାର
ତଳିପା ଜୁହାର ।

'ଦଣ୍ଡାରି 'ମାନେ ନିଜ ଗ୍ରାମରୁ ଅନ୍ୟ ଗ୍ରାମକୁ ନାଚିବାକୁ ଯିବା ପୂର୍ବରୁ ସେହି ଗ୍ରାମର ବୃଦ୍ଧା ସ୍ତ୍ରୀମାନେ ମୁଣ୍ଡରେ ହଳଦିଆ ଚାଉଳ ଟିକାଦେଇ ପାଦରେ ହଳଦୀ ପାଣି ପକାନ୍ତି । ସେହି ସମୟରେ ଦଣ୍ଡାରି ନାଚୁଆମାନେ ମଣ୍ଡଳକାରରେ,ଛିଡ଼ା ହୋଇ ସ୍ତୁତି ବୋଲନ୍ତି । ଉଲ୍ଲିଖିତ ପଦଟି ଏହି ସ୍ତୁତି ପଦ ।

୩୭୪୮. ଏକଇ ଈଶ୍ୱର ଭକ୍ତେର ଧ୍ୟାନ ଅନୁରୂପ
କଇ ବିଗ୍ରହେ ଧରେ ନକାର ରୂପ ।

ଈଶ୍ୱର ଏକ ,ମାତ୍ର ଭକ୍ତମାନେ ନାନା ରୂପରେ ବିଭିନ୍ନ ବିଗ୍ରହ ମାଧ୍ୟମରେ ଈଶ୍ୱରଙ୍କୁ ଧ୍ୟାନ କରି ଥାଆନ୍ତି । ଓଡ଼ିଆ ଓ ବଙ୍ଗଳାରେ ରଚିତ ପ୍ରବଚନଟି ଚୈତନ୍ୟ ଚରିତାମୃତର ।

୩୭୪୯. ଏକ ଚରା ଭାଇ ଦୁଇ ତରା ।
ନିମ ଗଛମୂଳେ ଖଟଣି ଘୋରା (= ଘୋଡ଼ା)
ପାଇକ ଭାଇ ବଡ଼ ବିନ୍ଧାଣି
ମାରେ ଚାପୁଡ଼ା ତୋଳେ ପାଣି ।

୩୭୫୦. ଏକତରା ଦୁଇତରା ରାବଣ ମରା
ଦେ ମାଉସୀ କାଣ୍ଡ
ଘଟେ ଚୁଟିଆ ମୂଷା ବିନ୍ଧି ଦେବି
ଅନ୍ତଗଡ଼ମୁଁହ କରିବି କାଣ୍ଡ ।

୩୭୫୧. ଏକ ଦଲ୍ ଦୁଇଦଲ୍ ଦଲା ମାନୁଷ ମହାଜନ
କୁନ୍ଦଲ୍ କାନ୍ଦଲ ଦହିକା କଉଡ଼ି
ଠାର୍ ଠୁରି ଉଣେଇଶ ବିଶି । (ଶିଶୁ ମନୋରଞ୍ଜନ ପଦ)

୩୭୫୨. ଏକନ୍ ମେକନ୍ ଚଉକୀ ସେକନ୍
ସାରଙ୍ଗ ନଟା, ଶଙ୍ଖଚିଲ ବେଣିଆ ବଟା
ଓଲ ମୋଲ ଦନେଇ ବାଡ଼ିରେ କହ୍ନେଇ ଚୋରା
(ଶିଶୁମାନଙ୍କର ଚୋରପୋଲିସ ଖେଳପଦ)

୩୭୫୩. ଏକ ତରା ଦୁଇତରା
ଭାଇଗଲେ ବାଇଲ ପଡ଼ା

ବାଇଲ ପଡ଼ାର ଲୋକ ନାହିଁ
ଗୁଡ଼ିଆ ପିଲାର ବେକ ନାହିଁ ।

୩୭୫୪. ଏକଣ ବିଜୁଳିରେ ସେକଣ ଝଟକଇ
କଳାମେଘ, ଧଳାବଉଦ ନିଶ୍ଚେ ବରଷଇ ।

୩୭୫୫. ଏକା ତୋ ଭକତ ଜୀବନ
ଭକତ ନିମନ୍ତେ ତୋର ଶଙ୍ଖ ଚକ୍ର ଚିହ୍ନ ।

ଯୁଗେ ଯୁଗେ ଜଗତରନାଥ ଜଗନ୍ନାଥ ଭକ୍ତମାନଙ୍କୁ ରକ୍ଷା କରିବାପାଇଁ ନିଜର ଶଙ୍ଖଚକ୍ର ଧାରୀ ରୂପକୁ ପ୍ରକାଶକରି ଆସିଛନ୍ତି । ଯବନଭକ୍ତ ସାଲବେଗଙ୍କ ଲିଖିତ ଏହି ଭଜନ ପଦଟିରେ ଶ୍ରୀଜଗନ୍ନାଥଙ୍କର ଅନନ୍ତ ମହିମା କୀର୍ତ୍ତନ କରାଯାଇଛି ।

୩୭୫୬. ଏ ବର୍ଷର (ସନ) ରୋଗୀ ଆର ବର୍ଷ(ସନ) କୁ ବଇଦ ।

ଅନୁଭୂତିରୁ ଅଭିଜ୍ଞତା ଅର୍ଜନ କରିବା ।

୩୭୫୭. ଏ ହାତର ପାପ ସେ ହାତ ନିଏନା ।

ପାପର ଫଳ ମଣିଷକୁ ଭୋଗ କରିବାକୁ ହୁଏ । ପାପ କେହି କାଢି ନେଇ ପାରେ ନାହିଁ । ନିଜର ପାପ ହିଁ ଯାବତୀୟ ଦୁଃଖ କଷ୍ଟର କାରଣ ।

୩୭୫୮. ଏକା ମାଳି ତିନି ଦେଉଳରେ ପୂଜିବା ।

ଜଣେ ମାଳି ଯେପରି ତିନି ତିନିଟା ଦେଉଳରେ ସେବା ପୂଜା କାର୍ଯ୍ୟ ଚଳାଇ ପାରେ ,ସେହିପରି ଜଣେ ବ୍ୟକ୍ତି ତିନି ଗୁହର ବା ତିନି ଗ୍ରାମର ହାନିଲାଭ ବୁଝାବୁଝି କରିପାରେ ।

୩୭୫୯. ଏକରୁ ଦୁଇ ନାହିଁ ;
କି ଛିଡ଼ି (ଣ୍ଡି) ଗଲେ ଗାଇଁଠାଉବାକୁ(= ଗଣ୍ଠିପକାଇବାକୁ ବା ଯୋଡ଼ିବାକୁ ) ନାହିଁ ,
ହଜିଗଲେ ଖୋଜିବାକୁ ନାହିଁ ।

ଗୋଟିକରୁ ଦୁଇଟି ଜିନିଷ ନାହିଁ । ଖଣ୍ଡିକରୁ ଦୁଇଖଣ୍ଡି ଲୁଗା ନାହିଁ । ଯେଉଁ ଖଣ୍ଡିଏ ଲୁଗା ଅଛି ,ସିଏ ଛିଡ଼ିଗଲେ ତାକୁ ଯୋଡ଼ିଲେ ବା ଗଣ୍ଠିପକାଇ ପିନ୍ଧି ହେବ ନାହିଁ । ଛିଣ୍ଡାଲୁଗା ହଜିବାର ବି ନାହିଁ । ଦରିଦ୍ରତାର ପରିପ୍ରକାଶ ।

୩୭୬୦. ଏକ ଜାତିଆ ଦଳ ଥାଇ
ପାଣି ଉପରେ ଭାସେ
ଯେଉଁ ଆଡ଼କୁ ପବନ ବୁହେ
ସେଇ ଆଡ଼କୁ ଆସେ ।

କେତେକ ଅସ୍ଥିରମତି ଲୋକ ଏପଟ ସେପଟ ହୁଅନ୍ତି ; ନିଜର ସ୍ୱାର୍ଥସିଦ୍ଧି ପାଇଁ ଏ ଦଳରୁ ସେ ଦଳକୁ ଯାଆନ୍ତି । ଯେପରି 'ବୋଉଝାଞ୍ଜି' ଦଳ ଯେଉଁ ଆଡ଼କୁ ପବନ ବୁହେ ସେ ଆଡ଼କୁ ଭାସିଯାଏ ।

୩୭୬୧. ଏକ ଜଣେ ତୁମୁନ୍ ଗୁମୁନ୍ ( = ତୁନି ତୁନି ଲାଗିବା) ,ଦୁଇ ଜଣେ ପାଠ
ତିନି ଜଣେ କଲ୍ କାଲ୍ (=କଳହ) ,ଚାରି ଜଣେ ହାଟ ।

୩୭୬୨. ଏ କଥା ସେ କଥା ଗଲାଣି
ପିତା କରାଣ୍ଡିକୁ ଚିଲ ଖାଏନା
ଠାଠା ବିଷ ମଲାଣି ।

ପୂର୍ବରେ ସେ ଆଡ଼ମ୍ବର ଆଉ ନାହିଁ। ଏବେ ସେ ଗୋଟିଏ ନିରୀହ କେରାଣ୍ଡି ମାଛ ,କାହର କୌଣସି କାର୍ଯ୍ୟରେ ଲାଗିବ ନାହିଁ। ଶେଷରେ ମରିବାହିଁ ସାର ହେବ। ସେ ମରିବା ସାଙ୍ଗରେ ତା ଭିତର ବିଷ ମରିବ।

୩୭୬୩. ଏକ ବେହିଆ 'ସାମା' କମାର
ଏକ ବେହିଆ ଦେଢ଼ଶୁର ଆମର
ଏକ ବେହିଆ ବାପାଙ୍କ ଜୋଇଁ
ଏକ ବେହିଆ ଚଷା ଭାଇ ।

'ସମା' କୁମ୍ଭାର କାମ କରେ ବୋଲି ତାକୁ 'ସାମା କମାର' ଡ଼ାକନ୍ତି । ସେ ଅତି ଲୋଭୀ ଓ କଞ୍ଜୁସ । ନିଜେ ଭଲ କରି ଖାଏ ନାହିଁ କିମ୍ବା ବନ୍ଧୁବାନ୍ଧବଙ୍କୁ ଖୁଆଏ ନାହିଁ । ସବୁତକ ଟଙ୍କା ଗାଞ୍ଜିଆରେ ପୁରାଇ ଅଣ୍ଟାରେ ଗୁଡ଼ାଇ ରଖେ । ସାମା ଦିନେ ମଲା । ମାଇଭାଇ ତା ମୁର୍ଦ୍ଦାରକୁ ନ ପୋଡ଼ି ମଶାଣିରେ ଫିଙ୍ଗି ଦେଇ ଆସିଲେ । ଶାଗୁଣା ସାମା ମଡ଼ର ମାଂସ ଟାଣିଲାବେଳେ ଗାଞ୍ଜିଆକୁ ଟାଣିଲା । ଟଙ୍କା ଝଣ୍ ଝଣ୍ ହେଲା । ପଣ୍ଡାଘର ବୋହୂ ପର୍ଡ଼ିଆକୁ ଯାଇଥିଲା ବେଳେ ଟଙ୍କା ଗାଞ୍ଜିଆଟା ଦାନ୍ତରେ ଛିଣ୍ଡାଇ ଘେନି ଅସିଲା । ଭାଇ ବୋହୂକୁ ମଶାଣିରେ ମୁର୍ଦ୍ଦାର ପାଖେ ମୁହଁ ଲଗାଇବା ଦେଖି ଦେଢ଼ଶୁର ଅପବାଦ ଉଠେଇଲାଯେ- ବୋହୂଡ଼ାହାଣୀ,ମୁର୍ଦ୍ଦାର ମାଉଁସ ଖାଉଥିଲା । ସାନ ଭାଇକୁ କହିଲା-'' ତୋ ସ୍ତ୍ରୀକୁ ଶୀଘ୍ର ଘରୁ ତଡ଼, ନଇଲେ ଲକ୍ଷ୍ମୀ ଛାଡ଼ିଯିବେ'' । ସାନ ଭାଇ ସ୍ତ୍ରୀକୁ ଶ୍ୱଶୁର ଘରକୁ ନେଇ ଯିବା ବାଟରେ ଦେଖିଲା, ଚଷାଭାଇ ବିଲରେ ଚଲାବାଟ ବନ୍ଦ କରିବାପାଇଁ କଣ୍ଟା ପକାଇଛି । ଫଳରେ ବେଶି ବାଟ ଦେଇ ବିଲ ପାରିହେବାକୁ ପଡ଼ିବ । ଘରୁ ତଡ଼ା ଖାଇଥିବା ବୋହୂଟି,ଏହି ଢଗଟି ବୋଲିଥିଲା ।

୩୭୬୪. ଏକାଥରେ ମେଘରୁ ପାଣି ସରିଯାଉ ନାହିଁ।
ମୁଁ ହେଉଥାଏ ମାଇଁ ମାଇଁ
ମାଇଁର ଦୟା ଧରମ ନାହିଁ ।

ଶ୍ରଦ୍ଧା ନମିଳୁଥିବାରୁ ସେଥିପ୍ରତି ଅନୁଶୋଚନା ।

୩୭୬୫. ଏ କିଆରି ପାଣି ତ ସେ କିଆରିରେ ମଲା
ଆଡ଼ି( =ହିଡ଼ )ତଳ ମୀନକୁ ବଗ ମାରିଦେଲା ।
ହାତ ଗୁଣେ ,ସରୁ ଚକୁଳି ,ମହୁଲ ବାସ ଦେଲା ।

୩୭୬୬. ଏ କଥାରେ କିଏ ପାଇବ ସନ୍ଧି ,କାଉ ଧାନ ଖାଏ ବୋହୂକୁ ବାନ୍ଧି।

ପୂର୍ବକାଳର ଭୁଆସୁଣୀ ବୋହୂର ନିରୀହତା ପ୍ରତି । କାରଣ ବୋହୂ ପାଟି କରିପାରେ

ନାହିଁ । ଶୁଖା ହୋଇଥିବା ଧାନ କୁଆ ଖାଉଗଲାବେଳେ ଛାଞ୍ଚୁଣି କି ବାଡ଼ିଖଣ୍ଡେ ଧରି ହୁରୁଡ଼େଇବା ପାଇଁ ଦୌଡ଼ିଲେ କାହା ଆଖିରେ ପଡ଼ିଯିବାର ଭୟ ଥାଏ । କୁଆମାନେ ବୋହୂକୁ ମାନନ୍ତି ନାହିଁ ।

୩୭୬୭. ଏ କିଆରିର ପାଣି ତ ସେ କିଆରି ପଶେ
କଖାରୁଆ କରାଣ୍ଡି ଯେ କର ଭାଙ୍ଗି ଆସେ
ଗୋରୀ ତ କରିଥିଲା ସବୁ ଚକୁଳି ଲୋ ,
ଝଲ ଝଲ ମଲ ଦିଶେ । - କୃଷକବୋଲି ।

୩୭୬୮. ଏକି ମାଛ ମାଇଲୁ ତ ଟୋକା - ବଡ଼ଛିଆ
ବଡ଼ିଛି (=ବନଶି ଖଡ଼ା) ପକାଇ ତୁ ସୁଖରେ ହେଲୁ ଠିଆ
କଅଣ ବୋଇଲୁ ତ ପଧାନ ସାନ ବୋହୂ
ମାରିଦେବି ମାଛ ଯେ ପାଟଲଙ୍ଗା (=ବଡ଼ଲାଞ୍ଜ ବିଶିଷ୍ଟ) କଉ
ପାଟଲଙ୍ଗା କଉ ତ ବାସି କି ଗନ୍ଧିଆ
ମାରିଦେବି ଗୋଡ଼ା ଲୋ ଚିଙ୍ଗୁଡ଼ି
ବୋହୂ କରିବୁ ଆମ୍ଭିଳା । କୃଷକ ବୋଲି

୩୭୬୯. ଏ କାଳି କେଉଟୁଣୀ ଲୋ ତା ନାମ କଇନ୍ତା
ଶିବ ଦେଉଳରେ ଲୋ ନିଅମ
ତୋର ଭିଣୋଇ ଘଇତା । -କୃଷକ ବୋଲି

୩୭୭୦. ପ୍ରଶ - ଏଖାନେ କେନୋ (=କାହିଁକି) ଡିପ (=ଢିପ) ?
ଉତ୍ତର- ଏତ ନଦିୟା ନଗର ଦ୍ୱିପ୍ ।
ପ୍ରଶ୍ନ- ଏଖାନେ କେନୋ ଚୁଲ (=ବାଳ)?
ଉତ୍ତର- ଏତ ସବୁ ତୀର୍ଥର ମୂଲ (=ମୂଳ) ।
ପ୍ରଶ୍ନ- ଏଖାନେ କେନୋ ଫାଟ ?
ଉତ୍ତର- ଏତ ସ୍ୱର୍ଗ ଯିବାର ବାଟ ।
ପ୍ରଶ୍ନ-ଏଖାନେ କେନୋ ରାଙ୍ଗା(=ନାଲି) ?
ଉତ୍ତର-ଏତ ପତିତ ପାବନ ଗଙ୍ଗା ।

୩୭୭୧. ଏ ଖଞ୍ଜା ଲିପିଲି ସେ ଖଞ୍ଜା ଲିପିଲି
ମଝି ଖଞ୍ଜାଟିରେ କୂଅ ।
କୂଅକୁ ଅନେଇ ପାଣି କାଢୁଥିଲି
ଅଇଲେ ଶଶୁର ପୁଅ ।
ଗାଳି ଦେବ ନାହିଁ ମନ୍ଦ ଦେବ ନାହିଁ
ବାପାଙ୍କର ପୋରୁହଁ ( = ଜ୍ୟେଷ୍ଠ ଝିଅ ) ।

୩୭୭୨. ଏଖରା ଯେ ଗିରିଷମରେ ଛତା ତଳେ ଛାଇ
ଚଇତ ମାସରେ ନିମ୍ବ ଯେ ବଉଳ ,ବଉଳ ମହକଇ ।

୩୭୭୩. ଏ ଖ୍ରରେ ପାଣି , ଧାନରେ ଅଗାଡ଼ି;
ଦିଏ ଯେ ପାଣି ,ତା ବଂଶ ଯାଏ ବୁଡ଼ି ।

୩୭୭୪. ଏ ଗାଁ କୁ ଅଇଲେ ମଙ୍ଗଳ ଚଣ୍ଡିଆ
ଦୁବ ଧରି ଶୁଭ ହୋ ମନାସ ନହୁଲି ଭେଣ୍ଡିଆ
ନହୁଲି ଭେଣ୍ଡିଆ ମନ ତ ରାଧିକାରାଣୀ ଠାରେ
କନକ ପଦ୍ମ ଫୁଟିଛି ଲୋ କାଳିନ୍ଦି ହ୍ରଦରେ
ପଦ୍ମତୋଳା ପୁଳିବ ଯେବେ ରେ ଭେଣ୍ଡିଏ
ଗରଳ ପାତାଳରେ । - -( କୃଷକ ବୋଲି)

୩୭୭୫. ପ୍ରଶ୍ନ-ଏ ଗୋ ଉଠ ,କାଲ୍ ଚାକୁଳିଆ ଯାବ (=ଯିବା)ଯେ ।
ଛାତ(= ଛୁଆ) ଶୋଇଲା ,ଆଳତ(=ଆଳୁଅ) ଲିଭିଲା ।
ଏଗୋ ଉଠ ,ଏଗୋ ଉଠ ।
ଉତ୍ତର- ସେଣ୍ଟିଆ ମାରା ନିଦ୍ ମାଗେଣ୍ଟେ
ଭାଇଶୁର ଘରେ ଫଟର ଫାଟର
ସେଣ୍ଟିଆ ମାରା ନିଦ୍ ମାଗେଣ୍ଟେ

୩୭୭୬. ଏ ଗୀତ ବୋଇଲେ ସେ ଗୀତ ଆସୁ
ଛେଳି ଧରାଇଲି ଖାସୁ
ବାଳା ସରସ୍ୱତୀ କଣ୍ଠେ ବସୁ ।

୩୭୭୭. ଏ ଗାଁ ର ଧାଙ୍ଗଡ଼ୀ ମାନଙ୍କ
ଚେମଟି ଚେମଟି (=ଟାକୁଆ) ଗାଲ୍
ସବୁ ସବୁଟାଙ୍ଗିଆତ ,ମାରେ ପିପଳର ଡ଼ାଲ (=ଡ଼ାଳ) ।

୩୭୭୮. ଏ ଗାଁଆଁରେ ମହୁଲ ନାହିଁ
ଚହଟ ମଲ୍ଲୀ ଗୋଟେ ନାହିଁ
ଏ ଗାଆଁଟା ଟୁଙ୍ଗୁରୁଟା (= ଟାଙ୍ଗରା)
ଗୌନ୍ତିଆକୁ ଦେଖିଲେ ବାଙ୍ଗୁରୁଟା(= ବାଙ୍ଗରା) ।

୩୭୭୮. ଏ ଗୋ ମିତ କିଏ
କାଳିନ୍ଦି ହ୍ରଦରେ କମଳ ତୋଳିଲେ
ସେହି ଗୋପୀନାଥ ଉଏ ।

୩୭୭୯.    ଏ ଗୋ ମିତ କିଏ
କାଳନ୍ଦି  ଜଳରେ କାଳିକି  ଦଳିଲେ .
ସେହି ଗୋପୀନାଥ ଇଏ ।
୩୭୮୦.    ଏ ଗାଁ ରେ ଢୋଲ ବାଜେ,ସେ ଗାଁରେ ବାହାଘର ।

କାର୍ଯ୍ୟ ସହିତ କାରଣର ସମ୍ପର୍କ ନାହିଁ। ଏପରି କୌଣସି ବିଷୟକୁ ବୁଝାଇବାକୁ ହେଲେ ପ୍ରବାଦଟି ପ୍ରୟୋଗ କରାଯାଏ ।

୩୭୮୧.    *ଏକାର୍ଥରେ*- ଏ ଗାଁରେ ବାଇଦ ବାଜେ ,ଆର ଗାଁରେ ବାହାଘର ।
୩୭୮୨.    ଏ ଗଛ ଡ଼େଇଁଲି
ସେ ଗଛ ଡ଼େଇଁଲା ବେଳକୁ ,ଗୋବର ଖାତରେ ପଡ଼ିଲି ।

ଅନ୍ୟର କ୍ଷତି ଘଟାଇବାକୁ ଯାଉଥିବା ବ୍ୟକ୍ତି ପ୍ରତି ।

୩୭୮୩.    ଏ ଗାଆଁ ,ଗାଆଁରେ ଲେଖା ନାହିଁ
ଜଣେ ଭେଣ୍ଡିଆ(=ଯୁବକ) ଦେଖା ନାହିଁ ।

ଗାଁରେ ବହୁତ ଭେଣ୍ଡିଆ ଥିଲେ ମଧ ସେମାନଙ୍କର ସାହସ ନାହିଁ କିମ୍ବା ନିଜର ସ୍ୱାର୍ଥତ୍ୟାଗର ଅଭାବ ହେତୁ ଗାଁର ନାମ ଓ ଖ୍ୟାତି ବଢାଇ ପାରୁ ନାହାନ୍ତି ।

୩୭୮୪.    ଏ ଗାଲରେ ଚୁନ,ସେ ଗାଲରେ କାଳି ।
୩୭୮୫.    *ଏକାର୍ଥରେ* -ଗାଲରେ (ମୁହଁରେ) ଚୁନ କାଳି ମାରିବା ।

ମରହଟ୍ଟା ଶାସନ କାଳରେ କୌଣସି ବ୍ୟକ୍ତିକୁ ଦଣ୍ଡ ବିଧାନ କରାଗଲେ ତାର ଗାଲରେ ଗୋଟଏ ପଟେ ଚୁନ ଓ ଆରପଟରେ କଳା  ମାରି ଗଧ ଉପରେ ପଛଆଡ଼କୁ ମୁହଁ କରାଇ ଗାଁ ଦାଣ୍ଡରେ ବୁଲାଉ ଥିଲେ । କେତେକେ ମୁହଁରେ ଚୁନ,କାଳି ମାରି ବୋହୁରୂପୀ ସାଜି ଗାଁ ଦାଣ୍ଡରେ ବୁଲି ମାଗଣ କରନ୍ତି । ଏହି ପରିପ୍ରେକ୍ଷୀରୁ ପ୍ରବାଦ ଦୁଇଟିର ଉତ୍ପତ୍ତି ।

୩୭୮୬.    ଏ ଗାଁରେ ମାତପର କିଏ? ଥିଲି ତ ମୁଁ ।
ଏ, ଗାଁରେ ବେକାର କିଏ ? ପଇସା ପାଇଲେ ହୁଁ ।
୩୭୮୭.    ଏ ଗାଁରେ ଢିଙ୍କି ପଡ଼ିଲେ
ଆର ଗାଁରେ ମୁଣ୍ଡ ବଥାଏ ।
୩୭୮୮.    ଏ ଗାଈ  ଗୁହାଳକୁପେଲି ପଶେ ଧଣ୍ଡ
ଚୁଟୀ( =କ୍ଷୁଦ୍ରକାୟ) ଗଉଡୁଣୀ ଯେ ହରୁଆ (=ଯେ ହରାଏ)
ଦାମୁଡ଼ିଆ ଷଣ୍ଢ ।    - କୃଷକ ବୋଲି
୩୭୮୯.    ଏଗୋଡ଼ ଖସିଲା ,ସେ ଗୋଡ଼ ଖସିଲା
ଚୋକାଦିଅର ମୋ ଗମ୍ଭିରୀ ଘରେ
ମୁରୁ ମୁରୁ ହସିଲା ।

୩୭୯୦. ଏ ଦଗାଦିଆ ଘରେ ରହିବି ନାହିଁ ।
ଖଣ୍ଡିଆ ପଥୁରୀ ଧୋଇବି ନାହିଁ ।
ଅଇଁଠା ପତର ଚାଟିବି ନାହିଁ ।
ଦଣ୍ଡାଦିଆ ଗାଳି ସହିବି ନାହିଁ ।
ବାଡ଼ିପଣା ଗାଳି ଶୁଣିବି ନାହିଁ ।
ତାଟିକିଳା ମାଡ଼ ଖାଇବି ନାହିଁ ।

ତାଟି ବା କବାଟ ବନ୍ଦକରି ମାଡ଼ ଦେଲେ କେହି ଆସି ରକ୍ଷା କରିବାର ଉପାୟ ନଥାଏ ,ଅର୍ଥାତ୍ ନିର୍ଘାତ୍ ମାଡ଼ । ଖାଇବା ପଥୁରୀ ମଧ ଭଙ୍ଗା ,ନୂଆ କରିବା ପାଇଁ ପଇସା ନାହିଁ ,ତହିଁକି ସ୍ୱାମୀ ଅଲକ୍ଷଣା ପ୍ରକୃତିର । ଏପରି ଦାରିଦ୍ର୍ୟ ଓ ଯନ୍ତ୍ରଣାରେ ନିପୀଡ଼ିତା ବଧୂର ଅନୁଶୋଚନା ।

୩୭୯୧. ଏଘରେ ନାହିଁ ବରହମ୍ ଝାଁଟ,
ପିଛାଳ ଆଡ଼େ ମେଛା(=ବଡ଼ନିଶ) ଆଁଟ(=ମୋଡ଼ିବା) ।

୩୭୯୨. ଏ ଘର ହୋଇବ ସାତ ସପନ,
ଘରୁ କାଢିବାକୁ ଏତେ ଉଛନ ।
ଝିଅ ନୋହି ପୁଅ ହୋଇ ମୁଁ ଥାନ୍ତି ,
ଯୁଗେ ଯୁଗେ ତୋର ପାଖେ ରହନ୍ତି ।
ଝିଅ ହେଲି ବୋଲି କରମ ବାମ
ପର ଘରେ ମୋର ଯିବ ଜୀବନ ।
ଭାଇ ହୋଇ ଥିଲେ ଘରେ ରହନ୍ତି ,
ତାଙ୍କଠାରୁ ସିନା ଭାଗ ନିଅନ୍ତି ।
କିଏ ସେ ବୁଝିବ ମୋର ଗୁହାରି ,
ମୁଁ ଯେ ହେଲି ସଭିଙ୍କ ବଇରି ।

୩୭୯୩. ଏ ଘର ଲିପିନି ସେ ଘର ଲିପିନି(= ଲିପିଲି)
ନାଭ ଫୁଲ ଦେନି (= ଦେଲି)ଝୋଟି ।
ଶୋଇଲା ଶେଯରେ କଥା ନ କହିଲେ
ହୃଦୟ ଯାଉଛି ଫାଟି ।

ପ୍ରେମିକ କଥା ନକହିଲାରୁ ପ୍ରେମିକାର କ୍ଳେଶ ।

୩୭୯୪. ଏ ଘର ଲିପିଲି ସେ ଘର ଲିପିଲି
ମଝି ବଖରାରେ କୂଅ ।

କୂଅକୁ ଚାହିଁ ଭାଇନା ପାଠ ପଢୁଛ
ଚକା ଦରପଣ ମୁହଁ ।

୩୭୯୫. ଏ ଘରେ ବାହା(=ବିବାହ)
ସେ ଘରେ ବାହା ,ଭେଣ୍ଡିଆ ପିଟିଲା ବାହା(=ବାହୁସ୍ଫୋଟ ମାରିବା)।

୩୭୯୬. ଏଚୋରକୁ ହାତ କାମୁଡ଼ା ଶିଖାଇବା ।

ଦିନେ ରାତିରେ ଗୋଟେ ଅନ୍ଧାରିଆ ଘରେ ଚୋର ପଶିଲା । ବାପ ପୁଅ ତାକୁ ଧରଲେ । ପୁଅ ଭାରି ବଳବାନ । ସେ ଚୋରକୁ ଭିଡ଼ି ଧରିଲା । ଚୋରକୁ ଦଉଡ଼ିଲେ ବାନ୍ଧିବା ପାଇଁ ବାପ ଆର ଘରକୁ ଗଲା ଦଉଡ଼ି ଆଣିବା ପାଇଁ। ବାପ ଯାଇ ଆର ଘରେ ଦଉଡ଼ି ଖୋଜି ଖୋଜି ହାଲିଆ,ଦଉଡ଼ି ମିଳୁନାହିଁ - କ'ଣ କରିବ ? ଏପରି ସମୟରେ ବାପ ଭାବିଲା ମୋ ପୁଅଠୁ ସିନା ଚୋରର ବଳ ବେଶି ନୁହେଁ, ମାତ୍ର ସେ ଯଦି ପୁଅର ହାତକୁ କାମୁଡ଼ି ଦେଇ ଚାଲିଯାଏ ତାହା ହେଲେ ,ଚୋର ଖସିଯିବ । ତେଣୁ ପୁଅକୁ ସାବଧାନ କରାଇଦେବା ପାଇଁ ସେ ଆରଘରୁ ରଡ଼ିକରି ଡ଼ାକିଲା - ''ପୁଅରେ ଚୋରକୁ ଜାଗ୍ରତରେ ଧରିଥା,କାଳେ ହାତକାମୁଡ଼ି ଚାଲିଯିବ '' । ଚୋର ଏହାଶୁଣି ହାତ କାମୁଡ଼ି ଚାଲିଗଲା ଅର୍ଥାତ୍ ନିଜର ସିଆଣିଆ ପଣରୁ ନିର୍ବୋଧ ହୋଇ ପରକୁ ସିଆଣିଆ କରିବା ।

୩୭୯୭. ଏ ଚାରପରିଛାରେ ଦୁଧରେ କୁମ୍ଭୀର ଛୁଆ ।

ପୁରୀରାଜାଙ୍କ ଘରକୁ ପ୍ରତିଦିନ ସକାଳୁ ମଇଁଷି ଦୁଧ ଆସେ । ଜଣେ ପରିଛା ଥାଆନ୍ତି ତାକୁ ଦେଖିବା ପାଇଁ। ତା ଜଣାରେ ଦୁଧରେ ପାଏ ଲେଖାଏ ପାଣି ମିଶେ। କୌଣସି କାରଣରୁ ଆଉ ଗୋଟିଏ ଲୋକ ରଖିବା ଦରକାରହେଲା,ତେଣୁ ରାଜାଙ୍କୁ କୁହାଗଲା-ଛାମୁ ! ଦୁଧରେ ପାଣି ମିଶୁଛି,ଆଉ ଗୋଟିଏ ଲୋକ ନିଘାରଖିବା ପାଇଁ ରଖିଲେ ଭଲ ହୁଅନ୍ତା । ରାଜାଙ୍କ ଅନୁମୋଦନରେ ଆଉ ଗୋଟିଏ ଲୋକ ନିଘା କରିବା ପାଇଁ ରହିଲା । ନୂଆ ଲୋକଟି ପାଏ ଲେଖାଏ ପାଣି ମିଶାଇବାରୁ ଅଧେ ଦୁଧ ପାଣି ହେଲା । କିଛି ଦିନପରେ ପୂର୍ବ ପରିଛାକୁ ଜଗିବାପାଇଁ,ଆଉ ଜଣେ ପରିଛା ରଖିବାକୁ ରାଜାଙ୍କୁ କୁହାଗଲା । ରାଜାଙ୍କ ଅନୁମୋଦନରେ ସେ ମଧ୍ୟ ରହିଲା ଏବଂ ସେ ଆଉ ପାଏ ଲେଖାଏ ପାଣି ମିଶାଇଲା। ଶେଷରେ ସେହିପରି ଚତୁର୍ଥ ପରିଛା ଦରକାର ହେଲା , ରାଜାଜ୍ଞାରେ ସେ ମଧ୍ୟ ଚାକିରୀରେ ରହି ଦୁଧ ଉପରେ ଦୃଷ୍ଟି ରଖିଲା ,ସେ ମଧ୍ୟ ପାଏ ଲେଖାଏ ପାଣି ପୋଖରୀରୁ ଆଣି ମିଶାଇଲା। ଏହିପରି ଦୁଧ ବୋଇଲେ ୧୬ ଅଣା ପାଣି ଆସିଲା। ଆଉଟା ବେଳେ ଦୁଧ ଗୋଟିଏ ଟୋକେଇରେ ଛଣାହୁଏ ,କାରଣ ଦୁଧରେ କାଠିକୁଟା ରହିବ ନାହିଁ। ଦିନେ ଟୋକେଇରେ ଛାଣୁ ଛାଣୁ ଗୋଟିଏ କୁମ୍ଭୀର ପିଲା ବାହାରି ପଡ଼ିଲା । ରାଜାଙ୍କ ପାଖକୁ ଖବର ଗଲା,ଗଉଡ଼କୁ ଡ଼ାକରା ହେଲା। ଗଉଡ଼ କହିଲା - '' ମୁଣ୍ଡ ରହିଲେ ଦୁଣ୍ଡ କହିବ ''ରାଜା ଅଭୟ ପ୍ରଦାନ କଲାରୁ ସେ କହିଲା -ମଇଁଷିମାନେ ରାତିରେ ଶୋଇ ନାହାନ୍ତି ,ସେମାନଙ୍କୁ ରାତିରୁ ଉଠାଇ ଦୁଧ ଦୁହେଁ। ଦିନେ କିପରି କୁମ୍ଭୀର ପିଲାଟିଏ ଆସି ଦୁଧ ପିଇବ ବୋଲି ଚେରରେ ଲାଗି ଯାଇଥିଲା ,ଅନ୍ଧାରରେ ଦୁହିଁଲା ବେଳେ ପଡ଼ିଯାଇଛି । ଆଜିର କର୍ମବର୍ଦ୍ଧିଷ୍ଣୁ ସରକାରୀ ବ୍ୟବସ୍ଥା ବିଶେଷତଃ ଅଧିକାରୀ ଓ ଅମଲା ମାନଙ୍କ ସଂଖ୍ୟା ବୃଦ୍ଧି ସମ୍ପର୍କରେ ଏକ ମଧୁର ଉପମା ।

୩୭୯୮. ଏ ଚକା ଗୁଆ ଖଣ୍ଡ ଚାରି ଗୋ ବାଆକୁଦିଆ ପାନ
ଲବଙ୍ଗ ଅଳେଚ ମିଶିତ ତହିଁ ଖଇର ଚୂନ
ଚକ୍ରଧର ସରୁ ଚାଉଳ କୃଷ୍ଣ ନାମେଟି ଘିଅ
ଶ୍ରୀକୃଷ୍ଣ ପତ୍ରରେ ରାଧାକୁ ବେଗେ ପରଶି ଦିଅ । - କୃଷ୍ଣକବୋଲି

୩୭୯୯. ଏତେଇଁ (= ଏହାଠାରୁ ଅଧିକ) କିବା ଅଛି କଳିର କଥା ।
ଘଇତା ନ ଥାଇ ହେଲା ପ୍ରସବର ବ୍ୟଥା ।

୩୮୦୦. ଏ ଚାରି ଜାତିଙ୍କୁ ବିଶ୍ୱାସ ନାଇ(=ନାହିଁ),
ପଚରକଟା,ତନ୍ତରକଟା,ପାଣିଓଡା,ଗଉଡୁଣୀମାଈ ।

୩୮୦୧. ଏ ଚାନ୍ଦଟି କାହୁଁ ପାଇବିରେ ଗୁଣମଣି
ମାଟିର ଚାନ୍ଦ ନୁହେଁ ଯେ ଗଢିଦେବି
ଗଛର ଚାନ୍ଦ ନୁହେଁ ଯେ ପାରିଦେବି
ତୋ ପରି ଚାନ୍ଦ କାହୁଁ ପାଇବି ।
ତୁଯେ ଚାନ୍ଦର ଶିରୋମଣି
ଶୋଇଯାରେ ମୋ ଧନମଣି ।- - ଶିଶୁମନୋରଞ୍ଜନ ପଦ

୩୮୦୨. ଏ ଆଖୁ ତ ଗଣ୍ଡିରା (=ଶରୀର)ଦୁଇମୁଣ୍ଡ ତୁଲ
ଶାଶୁ ସଙ୍ଗେ ବୋହୂ ଯେ ବଉଳ
ନଣନ୍ଦ ଧାନ ଫୁଲ ।

୩୮୦୩. ଏ ଛାର କରାଣ୍ଡି ଖାଆନ୍ତି ପିତା,
ସେ କି ଜାଣିବ ସ୍ୱାମୀର କଥା
ତୁତ କହିଲୁ ଭଲା
ମୁଁ ତ କହିଲି ସରୁକଙ୍କାଳୀ
ସରୁ ଦୋର (=ଦୋରୁଅ) ଖାଇଗଲା ।

୩୮୦୪. ଏ ଚାଳେ ଗୁଞ୍ଜିଲି ବାଡ଼ି,ସେ ଚାଳେ ଗୁଞ୍ଜିଲି ବାଡ଼ି
ଦିଅର ମାଇଲେ ଗାମୁଛା ବାଡ଼ି, ଝରିଗଲା ମଲ୍ଲୀ କଢି ।
ତୋ ମଲ୍ଲୀ କଢି , ମୋ ମଲ୍ଲୀ କଢି
ପେଡ଼ିରେ ସାଇତି ଦେବା,
ତୋ ବିଭାଦିନ, ମୋ ବିଭାଦିନ
ଗାଆଁ ଚମକାଇ ଦେବା ।

୩୮୦୫. ଏ ଛାମୁଣ୍ଡାର କିନ୍ଦିରି ଲାଉ
ସେ ଛାମୁଣ୍ଡାକୁ ଯାଉ,
କାଲି ଆସିଲାର ନୁଆ ବୋଉ
ନାକେ ମାଣ୍ଡିଆ ଲାଉ ।

୩୮୦୬. ଏ ଚନ୍ଦ୍ରମା ବଦନୀ ମୁଁ ଦେଖିଲି ପ୍ରାଣସହି
ଚାନ୍ଦକ ଉପରେ ଯେ ଚାନ୍ଦ ଅଛି ଉଇଁ

ମୋ ଚାନ୍ଦ ତ ବନ୍ଦାଇବ ଗୋ ରାଧିକେ
ଗୋବିନ୍ଦ ଶିରେ ନେଇ । - କୃଷକ ବୋଲି

୩୮୦୭. ଏ ଯୁବା ବୟସେ ଯାଉଛି ଭାଙ୍ଗି
ବଳଦ ଗୋଡ଼ରେ ବାଗି
ଏକା ପାନଖିଆ ଲାଗି ।
ନ ଯା ଲବଙ୍ଗଲତା,
ଫେରି ଆସିଲେ କଥା ବାରତା , ନ ଯା ଲବଙ୍ଗ ଲତା ।

୩୮୦୮. ଏ ଯେ ମନୁଷ୍ୟ କଳେବର ।
ଦୁର୍ଲଭ କ୍ଷଣିକ ଭଙ୍ଗୁର । - - ଜଗନ୍ନାଥ ଭାଗବତ

୩୮୦୯. ଏ ଜଗତେ କାହା ପୁଅ ବା କାହାର
ସମସ୍ତ ମାୟା ଭିଆଣ,
ସାର୍ଥକ ଜୀବନ ତାର ଏକ ସିନା
ପରହିତେ ଯାର ପ୍ରାଣ । - ଉତ୍କଳମଣି ଗୋପବନ୍ଧୁ

୩୮୧୦. ଏ ଯେ ସୁବାହୁ ଯୁଗ କଳି
କ୍ଷୀଣ ଆୟୁଷ ମହାବଳୀ ।
ପାପେ ସକଳ କ୍ଷୟ ଯିବ ।
ପାଞ୍ଚ ସହସ୍ର ଭୋଗ ହେବ । - ଅଚ୍ୟୁତାନନ୍ଦ ଆଦି ସଂହିତା

୩୮୧୧. ଏ ଜହ୍ନତ ନିରିମଳ ପୁନିଅ ହେବ କାଲି
ଚାନ୍ଦତ ବନ୍ଦାଇବେ ଝିଅ ଯେ ରୁକୁଣୀ(=ରୁକ୍ମିଣୀ)
ଯମୁନା ନୀର ଆଣି,
ଏ ଯମୁନା ନୀର ଆଣି ଯେ ଲେଉଟାଣି ବେଳେ
କୃଷ୍ଣଙ୍କୁ ଭେଟାଇଲେ କଦମ୍ବ ମୂଳେ
କୃଷ୍ଣ ତ ବଜାଇଲେ ବୀଣା
ନାଚିଲେ ଗୋପୀ,ଗୋପାଳ,ଚନ୍ଦ୍ରସେଣା । - - କୃଷକ ବୋଲି

୩୮୧୨. ଏ ଜୀବ ସାଧୁ ସଙ୍ଗ ବିନୁ
ଲଭି ନ ପାରେ ମୋର ତନୁ ।- - ଜଗନ୍ନାଥ ଭାଗବତ

୩୮୧୩. ଏଜୀବ ଦିନେ ଯିବ ।
ସେଥିପାଇଁ ନାମ ପାଇଛି ଜୀବ ।

୩୮୧୪. ଏ ଯହିଁ ଦେଖନ୍ତି ଆଡ଼ ଡ଼ାଳ,
ନଇଁ ଚାଲନ୍ତି ଆଦିମୂଳ(= ଭଗବାନ) ।

୩୮୧୫. ଏ ଜଗନ୍ନାଥ ଷୋଳକଳା
ତହୁଁ କଳାଏ ନନ୍ଦବଳା ।

ଷୋହଳ ସଂଖ୍ୟା ପୂର୍ଣ୍ଣତା ବ୍ୟଞ୍ଜକ । ଚନ୍ଦ୍ର ଷୋଳକଳା ଯୁକ୍ତ । ପୂର୍ଣ୍ଣମୀ ଦିନ ସେ ପୂର୍ଣ୍ଣ ଷୋଳକଳା ସମନ୍ୱିତ । ଅମାବାସ୍ୟା ଦିନ ଗୋଟିଏ କଳା ଥାଏ । ସେହିପରି ଷୋଡ଼ଶୀ ପୂର୍ଣ୍ଣ ଯୌବନା । ଦଶ ମହାବିଦ୍ୟାଙ୍କ ମଧ୍ୟରୁ ଷୋଡ଼ଶୀ ଅନ୍ୟତମା । ପୂଜାରେ ଷୋଡ଼ଶୋପଚାରରେ ଅର୍ଚ୍ଚନା ବିଧି ଅଛ । ଷୋଳ ପ୍ରକାର ସୁଗନ୍ଧ ଦ୍ରବ୍ୟକୁ ,ଷୋଡ଼ଶାଙ୍ଗ କହନ୍ତି । ବୈଦିକ ଯଜ୍ଞରେ ଷୋହଳ ପ୍ରକାର ପାତ୍ର ବ୍ୟବହୃତ ହୁଏ ଓ ଶେଷ ପାତ୍ର ଷୋଡ଼ଶୀ ଭାବେ ପରିଚିତା । ତବଲା ପ୍ରଭୃତି କେତେକ ବାଦ୍ୟରେ ଷୋ'ଳ ମାତ୍ରାର ପ୍ରୟୋଗ ଅଛି । ଗୟାରେ ମାତୃଷୋଡ଼ଶ ମନ୍ତ୍ରଦ୍ୱାରା ମାତାଙ୍କୁ ପିଣ୍ଡ ଦିଆଯାଏ । ପୁତ୍ରଲାଭ କାମନାସିଦ୍ଧ ହେଲେ ଲୋକେ ଷୋଳପାଳା ମନାସନ୍ତି । ଓଜନ ,ମାପ ଓ ପରିମାଣ ଜଗତରେ ଷୋହଳ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଛି । ଅର୍ଥାତ୍- ୧୬ ଅଣା =୧ଟଙ୍କା ,୧୬ ଛଟାଙ୍କି= ୧ସେର, ୧୬ ବିଶ୍ୱା=୧ଗୁଣ୍ଠ ,୧୬ ପଣ= ୧କାହାଣ,୧୬ ବିଶା= ୧ ଗୌଣୀ,ଷୋହଳ ଗୁଣିତକ ପ୍ରୟୋଗ ମଧ୍ୟ ଅନେକ ଯଥା- ଚଉଷଠି କଳା ଚଉଷଠି ଯୋଗିନୀ, ଷୋଳ ସହସ୍ର ଗୋପନାରୀ,ଷୋହଳ ସଂଖ୍ୟାରେ ପ୍ରୟୋଗ-

ଏମନ୍ତ କ୍ଷେତ୍ରେ ବାସୁ ଜାଣ
ଜାତିରେ ଅଟଇ କରଣ
ଷୋଳ ପାଞ୍ଜିଆରେ ଉତ୍ତମ
ନନ୍ଦ ପଟ୍ଟନାୟକ ନାମ ।

କରଣମାନଙ୍କର ପୁରୀ ରାଜାଙ୍କ ସହ ନିବିଡ଼ ସମ୍ପର୍କ ରହିଛି । ଏମାନେ ରଜାଙ୍କ ବ୍ରତ ବିବାହାଦିରେ କୁଟୁମ୍ବ ଭାବରେ ଯୋଗ ଦିଅନ୍ତି । ରାଜାଙ୍କ ଘରେ କାହାର ମୃତ୍ୟୁ ହେଲେ ମାଲଭାଇ ହୋଇ ଶବ ଦାହକରନ୍ତି ଓ ଅଶୌଚ ପାଳନକରନ୍ତି । ଷୋଳପ୍ରକାର କରଣ ସେବା ପୂର୍ବେ ଥିବାର ସୂଚନା ମିଳେ । ସେମାନେ ହେଲେ ତଡ଼ାଉ,ଦେଉଳ,କୋଠା,ବଇଠି,ମାପସାଇତ ,ଚର୍ଚ୍ଚା,ଗଉଳ ବଛା,ଭଣ୍ଡାର, ଚାଙ୍ଗଡ଼ା,ଶିଠ,ଦ୍ୱାରୀ, ପାଞ୍ଜିଆ, ଦୁଆଁସ ,ଛାମୁଁ ,ମୁଦ ଓ ବେହେରା । ଏମାନଙ୍କ ମଧ୍ୟରୁ ପାଞ୍ଜିଆ କରଣସବୁଠାରୁ ଉତ୍ତମ ବୋଲି ଉପରୋକ୍ତ ପଦରୁ ପ୍ରତୀୟମାନ ହୁଏ ।

୩୮୧୬. ଏ ଜଗତ ଅଟଇ ଅତ୍ୟନ୍ତ ବିଚିତ୍ର
ଦାରା ,ସୁତ,ସାଙ୍ଗ କେହି ନୁହେଁ କାହାର ।

୩୮୧୭. ଏ ଧାନତ ମହୀପାଳ, ଚାଉଳ ମାଧୁଆ
କୋଉ ଝିଅ ପୁଅ ଲୋ ,ଉଛୁର ଗାଧୁଆ
ଉଛୁର ଗାଧୁଆ ଲୋ , ନ ଶୁଖଇ ମଥା
କେବଣ ପ୍ରକାରେ ବୁଡ଼ ଯେ ପାରିଲୁ,ପୟରେ ଅଳତା ।
ପୟରେ ଅଳତାତ ଧୋଇଦେଲେ ଯିବ,
ଆଖିର କଜଳ କାନ୍ଦିଲେ ମଉଳିବ ,
ବଣିଆଁ ପୁଟୁଳିର ନାଲ ଯେ ସିନ୍ଦୂର ,ମଥାରେ ବିରାଯିବ ।- କୃଷକ ବୋଲି

୩୮୧୮ ଏଡ଼େ ସୁଆଗ,ପିଆଜ ରସୁଣ ପକେଇ ଭାଜ ।
ଯାହିତାହି ସ୍ନେହ ବା ପ୍ରୀତି ପ୍ରତି କଟାକ୍ଷ ।

୩୮୧୯. ଏଡ଼େ ଅଲାକୁକ ମଞ୍ଜାରୀ (ବିରାଡ଼ି) ,ତାକୁ ପୋକ ନଖାଇଲା ଝିଞ୍ଜାରି ।

ଜୀଅନ୍ତା ବିରାଡ଼ିକୁ ପୋକ ଖାଏନାହିଁ ,ସେହିପରି ନିଲ୍ଲଜ ବା ବେହିଆକୁ ଲାଜ ମାଡ଼େ ନାହିଁ ।

୩୮୨୦. ଏଡ଼େ ବଡ଼େଇ (=ଗର୍ବ) ,ନଇକି ମାଠିଆ ଦେଲା ଗଡ଼େଇ ।

ଗର୍ବିତା ନାରୀର ଦାୟିତ୍ୱହୀନ କାର୍ଯ୍ୟ ।

୩୮୨୧. ଏଡ଼ିକି ଭଳି ,ନିତି ଘଷିଦେଲେ ଦେହର ମଳି ।

ଦେହକୁ ଯେତେ ସଫାକଲେ ବି ଘଷିଦେଲେ ମଳି ବାହାରେ । ସେହିପରି ମନର ପାପକୁ ଅନ୍ତଃଶୌଚରେ ଯେତେ ନିର୍ମଳ କଲେବି ସେ ପୁଣି ମନରେ ଦେଖାଦିଏ ।

୩୮୨୨. ଏଡ଼େତା ନେଖାରେ ଦେଢତା,
ଫଡ଼ିଆ ଟେକିକି ମାରୁଥା ।

୩୮୨୩. ଏଡ଼େ ଶତ୍ରୁପଣ କରୁଛ ଯେବେ
ଏହାକୁ କିମ୍ପାଇଁ ବୋହିବ ତେବେ ।
ମଝି ସମୁଦ୍ରରେ ଦେବଇଁ ଛାଡ଼ି
ସପତ ସମୁଦ୍ରେ ମରୁ ଏ ବୁଡ଼ି ।

୩୮୨୪. ଏଡ଼େ ମଲାଠେଇଁ ଦିଓଳି ବି ତତଲା ଖିଆ ।

୩୮୨୫. ଏଡ଼େ ଭାଗ୍ୟ ମୋର ହେବ କି ?
ହେବି ବୃନ୍ଦାବନେଶ୍ୱରୀ ସେବକୀ ?

୩୮୨୬. ଏତୁଟି ପେଟର ବାଛୁରୀ ,ବଳଦର ନାତି ।

୩୮୨୭. ଏଡ଼େ ଟିକେ ପିଲାର ,ବାର ବୁଡ଼ି (ବୋଡ଼ି) (=ପାଞ୍ଚଗଣ୍ଡା) କଥା ।

ଓଳିଆରୁ ପଡ଼ି ଗଢା / ଇଚଡ଼ ପାକା - ଅର୍ଥରେ ।

୩୮୨୮. ଏଡ଼େ ଜହ୍ନରାତି ବାରିକି ଗଲି,
ପଡ଼ିଛି ମୟୂର ଛାଇ
ଅତି ସରଧାରେ ସୋରିଷ ଫୁଲ
ବାପାଗୋ ଜଗନ୍ନାଥ ଦୁଇଭାଇ ।

୩୮୨୯. ଏଡ଼ିକି ଭ଼ଳି ,ପେଜ ପିଆଠେଇଁ ଲାଗିଛି କଳି ।

ଟିକିଏ ପେଜପାଇଁ ଦରିଦ୍ର ଦରିଦ୍ର ମଧ୍ୟରେ ସଂଘର୍ଷ ଲାଗେ । ଉତ୍କଟ ଦାରିଦ୍ର୍ୟର ଲକ୍ଷଣ ।

୩୮୩୦. ଏଡ଼ିକି (ଏଡ଼ିକି ଟିକେ) ମୁହଁ ହେବା ।

ମୁହଁ ଶୁଖେଇବା ,ଲଜ୍ଜିତ ହେବା ,ଚେହେରା ଝାଉଁଳିବା ,ଅର୍ଥାତ୍ ଉଦାସ ହେବା ।

୩୮୩୧. ଏଣୁଅ ଧାଉଡ଼ କିଆ(ସିଝୁ) ବୁଦାକୁ ।

୩୮୩୨. *ଏକାର୍ଥରେ-* ଏଣ୍ଡୁଅ ଦଉଡ଼ୁ ବୁଦାଯାଏ ।

ଯାହାର ବଳ ,ବୁଦ୍ଧି,ଶକ୍ତି ଓ ସାମର୍ଥ୍ୟ ଅତ୍ୟନ୍ତ ସୀମାବଦ୍ଧ ।

୩୮୩୩. ଏଣ୍ଡୁଅ ଉପରେ ଓଉ ବୋଝ ।

ସ୍ୱଳ୍ପଶକ୍ତି ଯୁକ୍ତ ବ୍ୟକ୍ତି ଉପରେ କୌଣସି ଗୁରୁ ଦାୟିତ୍ୱ ନ୍ୟସ୍ତକରିବା ।

୩୮୩୪. ଏଣେ ପୁଅ ମୁଣ୍ଡକୁ ଆଶା,ତେଣେ ତେଲ ଘଡ଼ିକି ଆଶା ।

ଦିଆଡ଼କୁ ଲୋଭ କରୁଥିବା ବ୍ୟକ୍ତି କୌଣସି କାର୍ଯ୍ୟ କରିପାରେ ନାହିଁ । ଦୋ ଘାଇରେ ପଡ଼ି ହନ୍ତସନ୍ତ ହୁଏ ।

୩୮୩୫. ଏଡ଼େ ମହାବଳ ବାଘ , ପତ୍ର ଖଡ଼ଖଡ଼ରେ ଗଲା ।

୩୮୩୬. ଏଡ଼େ ହିନିମାନି ନ କର ନନା
ଝିଅ ନଈବଢି ପାଣି ସିନା ।

୩୮୩୭. ଏଡ଼ିକି ଟିକେ ଟିକି ଚଢେଇ ପିଆଜ ଫୁଲ ଖାଏ
ବୁରୁନ୍ଦି ମାଆ ପାଖକୁ ଗଲେ ଗୁରୁଣ୍ଡି ଗୀତ ଗାଏ ।
ବୁରୁନ୍ଦି ମାଆ ଲୋ ,ବୁରୁନ୍ଦି ମାଆ
ଏ କି ଅପକର୍ମ କଲୁ
ଏଡ଼ିକି ଟିକେ ଝିଅକୁ
ବୁଢା ବରକୁ ଦେଲୁ ।
ହଉପଛେ ମୋର ବୁଢାବର ,ନିତି ପିନ୍ଧିବ ଶାଢୀ
ରାତି ପାହିଲେ ଦେଖୁଥିବ , ବାରହାତ ଦାଢି ।

୩୮୩୮. ଏଡ଼େ ବଡ଼ ଗଛଟିଏ ,ଫଳନାହିଁ ଗୋଟିଏ ।

୩୮୩୯. *ଏକାର୍ଥରେ-* ନିଷ୍ଫଳା ନାରୀ ,ନିଷ୍ଫଳା ବୃକ୍ଷ ।

୩୮୪୦. *ଏକାର୍ଥରେ-* ନିଷ୍ଫଳା ବୃକ୍ଷରେ ମାଙ୍କଡ଼ ବି ନାଚେନି ।

୩୮୪୧. *ଏକାର୍ଥରେ* -ଏତେବଡ଼ ଗଛ ,ଫଳତାର ତୁଚ୍ଛ ।

ବଡ଼ ଗଛର ସାର୍ଥକତା କେବଳ ଛାୟାଦାନରେ ସୀମାବଦ୍ଧ ନୁହେଁ । ତାର ଅନ୍ୟତମ ସାର୍ଥକତା ହେଲା ଫଳଦାନ । କିନ୍ତୁ ଯେଉଁ ବୃକ୍ଷ ଫଳଦାନ କରିବାର ଅସମର୍ଥ ତାର ଆକୃତି ଯେତେବଡ଼ ହେଉନା କାହିଁକି ଫଳହୀନତା ପାଇଁ ସେ ଯଥାର୍ଥ ସ୍ୱୀକୃତି ତଥା ମର୍ଯ୍ୟାଦାରୁ ବଞ୍ଚିତ ହୁଏ । ସେପରି ଗଛର ଆଦର ନଥାଏ । ମାଙ୍କଡ଼ମାନେ କେବଳ ବୃକ୍ଷାରୋହଣ ପାଇଁ ଲାଳାୟିତ ହୁଅନ୍ତି ନାହିଁ । ସେମାନଙ୍କୁ ଆହାର ମଧ ଦରକାର । ଫଳହୀନ ବୃକ୍ଷକୁ ତେଣୁ ମାଙ୍କଡ଼ମାନେ ଏଡ଼ାଇ ଯିବା ସ୍ୱଭାବିକ ।

୩୮୪୨. ଏଡ଼େବଡ଼ ରାଇଜରେ ବିବେକି କେହି ନାହିଁ
ରହ ରାମ ,ନଯା ବନକୁ ,
ନ ବୋଇଲେତ କେହି ।

୩୮୪୩. ଏଡ଼େ ଅଲାଜୁକି ହେଉ କାହିଁକି ?
ଓସାର ପିଠିକି ଲୁଗା, ପୋଇଲା (=କ୍ରୀତଦାସ)
ଆଉ ବାପ ଘର ଯାଉ କାହିଁକି ?

ସ୍ୱାମୀ ଯଦି ସ୍ତ୍ରୀ ସହିତ ଲୁଗାପରି ଲାଗିରହେ ଏବଂ କ୍ରୀତଦାସ ପରି ସ୍ତ୍ରୀ ଖଟୁଥାଏ ,ସେ ସ୍ତ୍ରୀ କାହିଁକି ବାପଘରକୁ ଯିବ ?

୩୮୪୪. ଏ ଡ଼ିକି ଟକେ ଝାଣ୍ଟି ,ପିତଳର କଣ୍ଟି
ସରଗସୂତ ବାଣମାଇଲେ ଲଙ୍କା ଗଲା ଫାଟି । - ଡୁ -ଡୁ -ଖେଳ ବୋଲି

## କାଞ୍ଜି ଢମାଳି ପଦମାଳ

୩୮୪୫. ଏଣୁ କାଞ୍ଜିଗଲା ଖରେ
ଯାଇ ପଶିଲା ବ୍ରାହ୍ମଣ ଘରେ
ଏଣେ ବ୍ରାହ୍ମଣୀ ତେଣେ ବ୍ରାହ୍ମଣ
କାଞ୍ଜିକି କହିଲେ ପଇତା ବୁଣ ।
ଏଣୁ କାଞ୍ଜି ଗଲା ଖରେ
ଯାଇ ପଶିଲା ଗୁଡ଼ିଆ ଘରେ ।
ଏଣେ ଗୁଡ଼ିଆଣୀ ତେଣେ ଗୁଡ଼ିଆ
କାଞ୍ଜିକି କଲେ ଦେଢ ଗୋଡ଼ିଆ ।
ଏଣୁ କାଞ୍ଜିଗଲା ଖରେ
ଯାଇ ପଶିଲା କେଉଟ ଘରେ
ଏଣେ କେଉଟୁଣି ତେଣେ କେଉଟ
କାଞ୍ଜିକି କହିଲେ ଚୁଡ଼ା କୁଟ ।
ଏଣୁ କାଞ୍ଜି ଗଲା ଖରେ
ଯାଇ ପଶିଲା ଗଉଡ଼ ଘରେ
ଏଣେ ଗଉଡୁଣୀ ତେଣେ ଗଉଡ଼
କାଞ୍ଜିକି ଦେଲେ ବାହୁଙ୍ଗି ମାଡ଼ ।

ଏଣୁ କାଞ୍ଜିଗଲା ଖରେ
ଯାଇ ପହଞ୍ଚିଲା ପଠାଣ ଘରେ
ଏଣେ ପଠାଣୁଣୀ ତେଣେ ପଠାଣ
କାଞ୍ଜିକି ବୋଇଲେ ପଢ କୋରାଣ୍ ।
ଏଣୁ କାଞ୍ଜିଗଲା ଖରେ
ଯାଇ ପହଞ୍ଚିଲା ବଢେଇ ଘରେ
ଏଣେ ବଢେଇଆଣୀ ତେଣେ ବଢେଇ
କାଞ୍ଜିକି ବୋଇଲେ ଫୋଡ଼ ସଢେଇ ।
ଏଣୁ କାଞ୍ଜିଗଲା ଖରେ
ଯାଇ ପହଞ୍ଚିଲା ନାହାକ ଘରେ
ଏଣେ ନାହାକାଣୀ ତେଣେ ନାହାକ
କାଞ୍ଜିକି ବୋଇଲେ ପାଞ୍ଜି ଦେଖ ।

୩୮୪୬. ଏଣୁ ଏ ପଛ କୁହା ଲୋକ ,ଖଚୁଆ ଅତି ଅବିବେକ ।
୩୮୪୭. ଏଣୁ ତା ସର୍ବଦା ଜଗିବ ଦ୍ୱିଜ ରାୟେ
ମାନ କଲା ଲୋକର ବିଦ୍ୟାନାଶ ଯାଏ ।
୩୮୪୮. ଏଣୁ ମାଇଲେ ଗୋହତ୍ୟା, ତେଣୁ ମାଇଲେ ବ୍ରହ୍ମହତ୍ୟା ।
ଉଭୟ ସଙ୍କଟରେ ପଡ଼ିବା ।
୩୮୪୯. ଏଣୁ ଅଇଲି ତେଣୁ ଅଇଲି
ହେଁସ କାନି ଧରି (କପାଳେ ଥିଲାକୁ) ପୁଅ ବେଇଲି ।
୩୮୫୦. ଏଣେ ଦାରୀ ଯେତେ ବୟସ କମାଏ ,
ତେଣେ ବୈରାଗୀ ସେତେ ବୟସ ବଢାଏ ।
୩୮୫୧. ଏଣୁଅ ପେଟା ଖାଏ ପିଏ ,ନିଦା ପେଟାର ନାଁରେ ଯାଏ ।
୩୮୫୨. ଏଣୁ ଆମ୍ପିକ (=ଆତ୍ମୀୟ) ପ୍ରିୟ ମୋର ।
ଯେଣୁ ଏ ସେବେ ନିରନ୍ତର ।। - ଜଗନ୍ନାଥ ଭାଗବତ
୩୮୫୩. ଏଣ୍ଡୁଅ ନାକରେ ଝୁମ୍ପା ମଲକତି
ନେଉଳ ନାକରେ ଗୁଣା ।

ମୂଷା ଶୋଇଅଛ ଛତ୍ର ପଲଙ୍କରେ

ବିରାଡ଼ି ଧରେ ବିଞ୍ଚଣା ।

ଅସମ୍ଭବ କଥା, ନ ଘଟିଲେବି ,ଏସବୁ କହି ହାସ୍ୟ ରସ ସୃଷ୍ଟି କରାଯାଏ ।

୩୮୫୪. ଏଣେ ବିଭାଘର ତୋଣେ ଚଉଠି

ବେଦୀରୁ ଯାଉଛି ବର ଲେଉଟି ।

ବିଭାଘର ଓ ଚଉଠି ପ୍ରକ୍ରିୟାରେ ସମସ୍ତେ ଏତେ ବ୍ୟସ୍ତଯେ ବର ବେଦୀରୁ ଫେରିଯାଉଛି। ଏହା ହାସ୍ୟକର ।

୩୮୫୫. ଏଣେ ଦଶ ମାସ ତେଣେ ଦଶ ମାସ

ସହିବି ସିନା

ପୁଟକେ(= ଖଲି ପତ୍ର) ସହିବି ନାହିଁ ।

ବୋଝବୁହାଳି , ଓଜନିଆ ଧାନବସ୍ତା ବୋହିବ ଅଥଚ ଖଲିପତ୍ର ବୋଝ ବୋହିବ ନାହିଁ କହିବା ଯେପରି ହାସ୍ୟକର ବା ମୂଢତା ,ସେହିପରି ସ୍ତ୍ରୀ ଲୋକ ଯିଏ ଦଶମାସ ଗର୍ଭବେଦନା ସହ୍ୟ କରି ସନ୍ତାନ ପ୍ରସବ କରେ ,ସେ ସାମାନ୍ୟ କାମକୁ ପଛାଉଛି ବୋଲି କହିବା ମୂର୍ଖତା ।

୩୮୫୬. ଏଣୁ ତେଣୁ ପଛେ ( =କୌଣସି ପ୍ରକାରେ) ଚଷ,

ମଇ ଚାରିପଟା ଘଷ ।

ଯାହିତାହି କରି ଚାଷ ହେଉ ,ମାତ୍ର ତା ଉପରେ ଭଲକରି ମଇ ଦେବା ଉଚିତ । କାରଣ ଟେକାସବୁ ଗୁଣ୍ଡା ହୋଇଯାଏ ଓ ଠିକ୍ ଭାବରେ ଗଛ ହୁଏ ।

୩୮୫୭. ଏଣ୍ଡା (ଏଣ୍ଡୁଅ) ବଇଦ ପଣେ

ଧୀରି ଧୀରି କରି ନାଟିକା ଚିପୁଛି

ଆଉ ଅଛି ଦଣ୍ଡେ କ୍ଷଣେ ।

ଯେ ଖଣ୍ଡେ ପୁଟୁଳି ଧରିଲା ସେ ନିଜକୁ ବୈଦ୍ୟ ବୋଲାଇଲା । ଏପରି ପୁଟୁଳି ବୈଦ୍ୟଙ୍କ ସଂଖ୍ୟା ବହୁତ । ଏମାନେ ନାଡ଼ି ଦେଖି ଜାଣନ୍ତି ନାହିଁ ,କିନ୍ତୁ ଦେଖିବାର ଛଳନା କରନ୍ତି । ତେଣୁ ଏପରି ଏଣ୍ଡୁଅ ତଥା ଅଣ୍ଡ ବୈଦ୍ୟ ନାଡ଼ି ଦେଖି ମଣୁକୁ ଆଉ କ୍ଷଣେମାତ୍ର ଜୀବନ ଅଛି ବୋଲି କହିବା ହାସ୍ୟକର ।

୩୮୫୮. ଏଣ୍ଡୁରି ପିଠା ।

ବିରି ଓ ଚାଉଳ ବଟା ଦ୍ୱାରା ବହଳିଆ ପିଠଉ ହଳଦୀ ପତ୍ର ଉପରେ ରଖି ,ତାକୁ ଅଧାରରେ ସିଝାଇ,ଏହି ପିଠା ପ୍ରସ୍ତୁତ କରାଯାଏ । କେତେକ ସ୍ଥାନରେ କଦଳୀ ପତ୍ର ଓ ଶାଳପତ୍ର ଆଦି ବ୍ୟବହୃତ ହୁଏ । ୫ ପ୍ରକାରର ଏଣ୍ଡୁରିର ନାମ କରଣ ହେଲା( ୧ ) ଉପନ ଏଣ୍ଡୁରି - ପୁରୀ ଜିଲ୍ଲାର କେତେକ ବ୍ରାହ୍ମଣ ଶାସନରେ ଦୁର୍ଗାପୂଜା ଉପଲକ୍ଷେ ଗ୍ରାମ ଠାକୁରାଣୀଙ୍କୁ ଭୋଗ କରାଯିବା , ଏକ ହାତ ବା ତା' ଠାରୁ ଅଧିକ ବ୍ୟାସ ବିଶିଷ୍ଟ ଏଣ୍ଡୁରି ପିଠା ।( ୨ ) କଷି ଏଣ୍ଡୁରି ବା ନକ୍ଷତ୍ର ଏଣ୍ଡୁରି - ସାନ ସାନ ଏଣ୍ଡୁରି ପିଠା ।(୩) ପୁ ର ଏଣ୍ଡୁରି -ଯେଉଁ ଏଣ୍ଡୁରି ମଧରେ ପୁର ଦିଆଯାଇ ଥାଏ ।( ୪ ) ବାଂଝ ଏଣ୍ଡୁରି -ଯେଉଁ ଏଣ୍ଡୁରିରେ ପୁର ଦିଆଯାଇ ନଥାଏ ।( ୫ ) ମୁଆଁ ଏଣ୍ଡୁରି -ଧନୁ ମୁଆଁ ପରି ବଡ଼ ଏଣ୍ଡୁରି ।

୩୮୫୯. ଏଣକ୍ ବୁଲି ଗାଆଁକୁ ପଶେ
ଡ଼ାକ ବୋଲେ ପାଣି ନିଷ୍ଟେ ବରଷେ ।

୩୮୬୦. ଏ କାଳିଆ ଘୋଡ଼ାକୁ ତ ବାଖର ( =ଘୋଡ଼ା ପିଠିର ପଲାଣ) ଶହେ ଟଙ୍କା ।
ଛାଡ଼ିଦେଲେ ମାଡ଼ି ଯେ ବସିବ ଅଜୟ ଗଡ଼ ଲଙ୍କା
ଅଜୟ ଗଡ଼ ଲଙ୍କାରେ ଦଳେଇ ପାଞ୍ଚ ଜଣ
ପଚିଶ ପାଏକରେ ସେ ଗଡ଼ ନିରିମାଣ ।
ହାତୀ ଛତି ଧରି ନ ପାରନ୍ତି ଭେଦି
ଗଡ଼ କାଛି ତଳୁ ଝର ଯେ ବହୁଛି ,
ଯମୁନା ନାମେ ନଦୀ । - - କୃଷକ ବୋଲି

୩୮୬୧. ଏକି ଖୋଷା ଖୋସିଲୁ ବୋହୂ ଛାଇକୁ ଅନାଇଁ
ଖୋଷାହେଲା ନାଗ ଲୋ ଫେଣିଆଁ
ଭଲତ ଦିଶୁ ନାହିଁ । - କୃଷକ ବୋଲି

୩୮୬୨. ଏତ ପଟ ନୋହେ ଅଟେ କପଟ
କାମ ଜାଣଇ କେତେ ନଟ କୁଟ ।
ମାତ୍ର ସବୁ କଥାରେ ଏ କଥାଯେ
ଏତ ଛଇକି କୋଳ କଲା ପ୍ରାୟେ ।

୩୮୬୩. ଏତିକିରେ ଧନ ଏତିକି ,
ଯେତେଦିନ ଥିବ ପିଣ୍ଡରେ ପରାଣ
ନ ଆସିବି ତୋର କତିକି ।

୩୮୬୪. ଏତେ କରି କରି କଲି ଘର,ତେବେ ବି ଘଇତା କଲାପର ।

୩୮୬୫. ଏତିକି ଯୋଗ କୁଣ୍ଡାଖାଇକି (=ଖାଦ୍ୟାଭାବ) ''ନରସିଂହଭୋଗ'।

ସୌଭାଗ୍ୟ ଉଦୟ ହେଲେ ଅତି ମନ୍ଦ ଅବସ୍ଥାରୁ ଭଲ ଅବସ୍ଥାକୁ ଆସିଥିବା ବ୍ୟକ୍ତି । ଅର୍ଥାତ୍ ଖାଦ୍ୟାଭାବବେଳେ 'ନରସିଂହଭୋଗ'ପରି ଉତ୍କୃଷ୍ଟ ମିଷ୍ଟାନ୍ନ ଖାଇବ ।ପାଇଁ ମିଳୁଛି ।

୩୮୬୬. ଏତେ ଦୁଃଖରେ ମିଳିଛି ଗାଦି
ଆପଣା ହସ୍ତେ ଜିହ୍ୱା ଛେଦି ।
ତାକୁ ରଖିବାକୁ ଆମର ପଣ
କାହାରି ବୋଲରେ ଚାଲୁନୁ ଜାଣ ।

୩୮୬୭. ଏତେ ଧନ ପାଇଁ ,ସ୍ୱର୍ଗ ଛାଡ଼ି ନର୍କଯାଇ ।
୩୮୬୮. ଏମିତି ଦିନ ହେବ କେବେ ,ପ୍ରାଣବନ୍ଧୁ କଥା କହିବେ ।
୩୮୬୯. ଏତେ ଖାଇ ସେତେ ଖାଇ ,ଗତର(=ଶରୀର) ବେଳକୁ ନାଇଁ ।
୩୮୭୦. ଏତେ କାଳ ପଢାଇଲି 'କ' ,ଶେଷରେ କହିଲା ଦନ୍ତ 'ସ' ।
୩୮୭୧. ଏତେ କରି କଲି ଘର, ତଥାପି ବାସୁଛି ପର ।
୩୮୭୨. ଏତାଃ ସ୍ୱାର୍ଥପରା ନାର୍ଯ୍ୟଃ କେବଳଂ
ସ୍ୱସୁଖେରତାଃ ନତେସାଂ ବଲ୍ଲଭଃ କୋଽପି ସୁତୋଽପି ସ୍ୱସୁଖଂ ବିନା ।

ନାରୀମାନେ ସ୍ୱାର୍ଥପର ହୋଇ କେବଳ ନିଜର ସୁଖରେ ରତ ଥାଆନ୍ତି । ଆତ୍ମସୁଖ ନିକଟରେ ସେମାନେ ନିଜର ପତି ଓ ପୁତ୍ରକୁ ମଧ ଚାହାନ୍ତି ନାହିଁ ।

୩୮୭୩. ଏତାଂ ହସନ୍ତି ଚ ରୁହନ୍ତି ଚ କାର୍ଯ୍ୟ ହେ ତୋ
ବିଶ୍ୱାସୟନ୍ତି ପୁରୁଷଂ ନ ଚ ବିଶ୍ୱସନ୍ତି ।
ତସ୍ମାନ୍ନରେଣ କୁଳଶୀଳ ସମନ୍ୱିତେନ
ନାର୍ଯ୍ୟଃ ଶ୍ମଶାନ ଘଟିକା ଇବ ବର୍ଜନୀୟା ।

ନାରୀମାନେ କାର୍ଯ୍ୟ ଉଦ୍ଧାର ନିମନ୍ତେ ହସନ୍ତି ,କାନ୍ଦନ୍ତି,ଅନ୍ୟମାନଙ୍କର ନିଜ ପ୍ରତି ବିଶ୍ୱାସ ସୃଷ୍ଟିକରାନ୍ତି । କିନ୍ତୁ ସେମାନଙ୍କୁ ବିଶ୍ୱାସ କରନ୍ତି ନାହିଁ । ସେଥିପାଇଁ କୁଳୀନ ଓ ସଚ୍ଚରିତ୍ର ପୁରୁଷମାନେ ନାରୀମାନଙ୍କୁ ଶ୍ମଶାନ କଳସ ତୁଲ୍ୟ ବର୍ଜନ କରିବା ଉଚିତ ।

୩୮୭୪. ଏବଂ ଚ ଭାଷତେ ଲୋକଶ୍ଚନ୍ଦନଂ କିଲ ଶୀତଲମ୍
ପୁତ୍ର ଗାତ୍ରସ୍ୟ ସଂସ୍ପର୍ଶଶ୍ଚନ୍ଦନାଦତି ରିଖତେ ।

ଲୋକେ କହିଥାନ୍ତି ଯେ ଚନ୍ଦନ ଅତି ଶୀତଳ ,କିନ୍ତୁ ପୁତ୍ରର ଶରୀର ସ୍ପର୍ଶ ଚନ୍ଦନଠାରୁ ଅଧିକ ଶୀତଳପ୍ରଦ ହୋଇଥାଏ । ଏହି ପୁତ୍ର ୧୨ ପ୍ରକାର ,ମନୁସଂହିତା ଅନୁସାରେ -ଯଥା:-

(୧) ଔରସ = ନିଜ ଦ୍ୱାରା ଆପଣା ସ୍ତ୍ରୀ ଗର୍ଭରୁ ଉତ୍ପନ୍ନ ସନ୍ତାନ ।

(୨) କ୍ଷେତ୍ରଜ- ମୃତ ବ୍ୟାଧିଗ୍ରସ୍ତ,ନପୁଂସକ/କ୍ଲୀବ,ତଥା ଅସମର୍ଥ ବ୍ୟକ୍ତିର ଅନୁମତିକ୍ରମେ ତାହାର ସ୍ତ୍ରୀ ଗର୍ଭରୁ ଧର୍ମବିଧି ଅନୁସାରେ ଦିଅର ଶ୍ରେଣୀୟ ଅନ୍ୟ ପୁରୁଷର ଔରସରୁ ଉତ୍ପନ୍ନ ପୁତ୍ର ।

(୩) ଦତ୍ତ୍ରିମ/ଦତ୍ତକ- ଜନ୍ମକଲା ପିତାଙ୍କ ନିକଟରୁ ସ୍ୱେଚ୍ଛାରେ ଦୁର୍ଭିକ୍ଷାଦି ବିପଦ କାଳରେ ଦାନ ରୂପେ ପ୍ରାପ୍ତ ବାଳକ (ପୋଷ୍ୟ ପୁତ୍ର) ।

(୪) କୃତ୍ରିମ ପୁତ୍ର /ପାଳିତ ପୁତ- ଅନ୍ୟର ଗୁଣବନ୍ତ ପୁତ୍ରକୁ ପୁତ୍ରରୂପେ ଗ୍ରହଣ କରି ପାଳିଥିବା ପୁତ୍ର ।

(୫) ଗୂଢୋତ୍ପନ୍ନ /ଗୂଢଜ - ଭର୍ତ୍ତୃଗୃହରେ ପର ପୁରୁଷ ସଂସର୍ଗରେ ସ୍ତ୍ରୀ ଗର୍ଭରେ ଗୁପ୍ତ ଭାବରେ ଉତ୍ପନ୍ନ ବାଳକ ।

(୬) ଅପବିଦ୍ଧ- ଜନ୍ମଦାତା ପିତାମାତାଙ୍କ ଦ୍ୱାରା ପରିତ୍ୟକ୍ତ ଓ ଅନ୍ୟ ବ୍ୟକ୍ତି ଦ୍ୱାରା ଗୃହୀତ ଓ ପାଳିତ ପୁତ୍ର ।

(୭) କାନୀନ- ଅବିବାହିତା କନ୍ୟାର ଗର୍ଭଜାତ ପୁତ୍ର (ଅବିବାହିତା ସମୟରେ ସୂର୍ଯ୍ୟଙ୍କ ଔରସରୁ ଜନ୍ମିତ କୁନ୍ତୀଙ୍କ ପୁତ୍ର କର୍ଣ୍ଣ ) ।

(୮) ସହୋଢ- ବିବାହ ପୂର୍ବରୁ କନ୍ୟା ଗର୍ଭବତୀ ହୋଇ ବିବାହ ପରେ ଜନ୍ମ କରିଥିବା ସନ୍ତାନ ।

(୯) କ୍ରୀତକ - ମାତା ପିତାଙ୍କ ଠାରୁ କିଣି ନେଇ ପାଳିଥିବା ପୁତ୍ର ।

(୧୦) ପୌନର୍ଭବ- ସ୍ୱାମୀଦ୍ୱାରା ପରିତ୍ୟକ୍ତା ବା ବିଧବା ସ୍ତ୍ରୀର ଗର୍ଭରେ ଦ୍ୱିତୀୟ ବ୍ୟକ୍ତିର ଔରସରୁ ଜାତ ପୁତ୍ର ।

(୧୧) ସ୍ୱୟଂଦତ୍ତ- ଯେ ନିଜ ପିତାମାତାଙ୍କ ବିନା ଅନୁମତିରେ ବା ଅବିଦ୍ୟମାନରେ ଅନ୍ୟ ବ୍ୟକ୍ତିଙ୍କ ହାତରେ ଆପଣାକୁ ପୁତ୍ର-ରୂପେ ସମର୍ପଣ କରେ ।

(୧୨) ପାରଶବ, ଶୌଦ୍ର ବା ଦାସୀପୁତ୍ର- ଦ୍ୱିଜାତି ପିତାଙ୍କ ଔରସରେ ଶୁଦ୍ରାମାତା ଗର୍ଭରୁ ଉତ୍ପନ୍ନ ପୁତ୍ର । ଅର୍ଥାତ୍ ରକ୍ଷିତା ସ୍ତ୍ରୀର ପୁତ୍ର ।

ପୁଣି କୁହାଯାଉଛି ପୁତ୍ରକୁ ଆଲିଙ୍ଗନ ଜନିତ ସୁଖ ,ଆନନ୍ଦ ଓ ଶାନ୍ତିଠାରୁ ବଳି ଆଉକିଛି ସଂସାରରେ ନାହିଁ । ପିତାଠାରେ ଏପରି ଭାବ ଉଦ୍ରେକ ହେବାରତାତ୍ପର୍ଯ୍ୟ ଏହି ଯେ ପିତା ପୁତ୍ର ରୂପେ ଜନ୍ମ ଗ୍ରହଣ କରିଥାଏ, । ନିମ୍ନଲିଖିତ ପଦଟିରୁ ଏହା ପ୍ରତିପାଦିତ ହେଉଛି ।

ମାତା ଚର୍ମ ପୁଡ଼ା ସ୍ୱରୂପା ମହୀକ୍ଷିତ
ତା ଠାରେ 'ପୁତ୍ର' ରୂପେ 'ପିତା' ହୁଏ ଜାତ । - କୃଷ୍ଣ ସିଂହ -ମହାଭାରତ

୩୮୭୫. ଏତେ ଚାତର
ମାଛ ବିକି ବିକି ଦିନ ଯାଉଥିଲା
ନଗଉଛି ଗନ୍ଧ ଅତର ।

ବର୍ତ୍ତମାନ ଭାଗ୍ୟ ଉଦୟହୋଇଛି ବୋଲି ଗର୍ବକରିବା ଅନୁଚିତ । ପୂର୍ବ ଦୁଃଖର ଦିନ ଗୁଡ଼ିକ ସ୍ମରଣ କରିବ ।

୩୮୭୬. ଏତେଦିନ ଯାଏ ଥିଲୁ ବସି
ଆଷାଢ ମାସରେ ପାରୁଛି ଘସି ।

୩୮୭୭. ଏତେ ଭାଇ ଗଲେ ଲଙ୍କା ,ଶକୁନି ବସିଛି ଏକା ।

୩୮୭୮. ଏଥୁଁ ଅଧିକ ଫଳ ,ଅପବାଦ କେବଳ ।

କୁକର୍ମରୁ ଲାଭ କେବଳ ଅପବାଦ ।

୩୮୭୯. ଏ ପୁନିଅରେ ସେ ପିଠାନାହିଁ ।

କୌଣସି ବିଷୟ ଅନୁପଯୋଗୀ ହେବାସ୍ଥଳେ କୁହାଯାଏ - ଅବାନ୍ତର ବିଷୟ ପ୍ରତି ।

୩୮୮୦. ଏ ତ ମୋର ବାରଘଇତାର ଘର ,
ଏବେ କାହାକୁ କରିବି ପର ।

୩୮୮୧. ଏ' ତତ୍ତ୍ୱ ବିଚାରିଣ ଚିତ୍ତୁଁ ଭ୍ରାନ୍ତି ତେଜ
ତତ୍ତ୍ୱିକାର ନାଥ ହୃଦ ପଦ୍ମେ ଭଜ
ତର୍କ ବୁଦ୍ଧି ତୁହି ନ ଘେନିଲୁ ମନେ
ତତ୍ତ୍ୱ ଉପଦେଶ ମୂଢ ପାଇବୁ
ସାଧୁ ତ ଦରଶନେ । - ଶଗଡ଼ିଆ ଢମାଳି ।

୩୮୮୨. ଏତେ ବୟସରେ ତୁମ ରସଦେଖି ଅବାକ
ହାଣ୍ଡିରେ ଫୁଟୁଛି ଭାତ ବକ ବକ ବକ ।

୩୮୮୩. ଏତିକି ସରିଲେ ଖାଇବୁ କି ,ଘରେ ତ ନାହିଁ ଆଣ୍ଟବୁଢି ।

୩୮୮୪. ଏଥର ଯାକୁ କାଳ ଧରିଛି ,ଆଉ ରକ୍ଷା ନାହିଁ ।

୩୮୮୫. ଏ ' ଧନେ ଧନେଶ୍ୱର ନାମେ ଏକଇ ସାଉକାର
ଧନ ଘେନି ନାହିଁରେ ମାଗଣା କାରବାର
ନିଳାଦ୍ରି ସାହୁ ନାମରେ ଏକଇ ଗୁଡ଼ିଆ
ଲବଧ ନିମନ୍ତେ ମୂଢ ରେ ମନୁଆଁ
କରଇ ଖଜା ମୁଆଁ । - ଶଗଡ଼ିଆ ଢମାଳି

୩୮୮୬. ଏ ନାରାୟଣ -ଜହ୍ନି ରାଇତା ମୋର ମନକୁ ଜିତା
ପତିତ ପାବନ -ପଇଡି (=ପାଣିଆ ଡ଼ାଲି) ଦୂତୀଛାଡୁ ଆରୁଚା
ଗୋପୀନାଥ- ବଡ଼ି ବେଶର ତହିଁ ଥିବଟି ପାଣି
କଅଁଳ ଆମ୍ବୁଲ ରାଇତା ଦୂତୀ ଭାତ ନେବଟି ଟାଣି । - (ଚଷାପଦ)

୩୮୮୭. ଏ ବାଇଦ ମୁରୁଦଙ୍ଗ ପିତଳ କାହାଳୀ
ହରି ବୃନ୍ଦାବନେ ଯେ ରାହାସ
ନାଚୁଆ ବନମାଳୀ । - କୃଷକ ବୋଲି

୩୮୮୮. ଏ ବନମାଳୀ ନାମକୁ ରେ ବନମାଳା କରି
ଅତି ଯତନ କରି ହୋ ଗଳାରେ ଲମ୍ବାଇଲି
ବନମାଳୀ ନାମ ଯେ ନଉକା
ଭବରୁ ପାର ହେଲି । - କୃଷକ ବୋଲି

୩୮୮୯. ଏଥରକ ଗାର,ଆଉଥରକୁ ଧାର ।

ବ୍ୟବସାୟୀ ନଗଦ କାରବାର ଉପରେ ଜୋର ଦିଅନ୍ତି ,କାରଣ ଉଧାର ବାକି ବୁଡ଼ିଯିବାର ସମ୍ଭାବନା ଥାଏ ।

୩୮୯୦. ଏତେ ଦିନ ନଥିଲାତ ଖୋଜ ଖବର
ଭାଗ ବଣ୍ଟରାବେଳେ ଆସି ଜୋର-ଜବର ।

୩୮୯୧. ଏତେଦିନେ ସବୁ ଶେଷ
ଏବେ ଛାଡ଼ି ଚାଲ ବିଦେଶ ।

୩୮୯୨. ଏତେ ଟିକେ ଛୋରୀ (=ଟୋକୀ), ତାର ଛଇ ଦେଖି ମରି ।

୩୮୯୩. *ଏକାର୍ଥରେ-* ଏତୁଟିଏ ଛଣ୍ଡୀ,ଦେଖାଏ ଭଙ୍ଗୀ ।

ଫୁଲେଇ ଟୋକୀର ଛଇ ଛଟକ ପ୍ରତି ବ୍ୟଙ୍ଗ ।

୩୮୯୪. ଏତେ ଖାଇ ନ ପୂରିଲା ପେଟ
ବିରି ଓଳିଆରେ ମାରୁଛି ହାତ ।

୩୮୯୫. ଏତେ କାଳ ହେଜି ହେଜି
ଏବେ ଠେକିଲୁ ଯାହା
ତେବେ ଆଉଥରେ ହେବୁକି ବାହା ।

୩୮୯୬. ଏତେ ବୟସରେ ବି ତୁମର ଖୁବ୍ ରସ ଦେଖୁଛି ।

୩୮୯୭. *ଏକାର୍ଥରେ-* ଦ୍ୱିପ୍ରହରେ ଆଲିଙ୍ଗନ ଚାହିଁଲେ ଯେ ପତି
ଦିନବେଳେ ଲଜ୍ଜାକର କହିଲେ ଯେ ସତୀ ।

ବୟସ୍କ ପୁରୁଷଙ୍କ ପାଖରେ ଶୃଙ୍ଗାର ରସର ପ୍ରବଳତା ପ୍ରକାଶ ପାଇଲେ ଏହି ବ୍ୟଙ୍ଗ ସୂଚକ ବାକ୍ୟ ଓ ପ୍ରବାଦଟି ସେମାନଙ୍କ ଉଦ୍ଦେଶ୍ୟରେ ପ୍ରୟୋଗ କରାଯାଏ ।

୩୮୯୮. ଏତେ ରଙ୍ଗ ଢଙ୍ଗ ଦେଖିଲି
ମାରୁଆ ଘରକୁ ଆସି
ମାଈ ବିଲେଇ ତୁଳା ଭିଣେ
କଦଳୀ ବଣରେ ବସି ।

କଦଳୀ ବଣରେ ମାଈ ବିଲେଇର ତୁଳାଭିଣା ଯେମିତି ଅଜବ କଥା ,ସେହିପରି ଯେଉଁ ଘରର ଚାଲିଚଳଣ ଅଦ୍ଭୁତ ପ୍ରକାରର ତାହା କାହାରି ପ୍ରୀତି ଦାୟକ ହୁଏ ନାହିଁ ।

୩୮୯୯. ଏତେ ଭାତ ବାଢେ ଯେ ବିଲେଇ ଡ଼େଇଁ ପାରେନି ।

୩୯୦୦. ଏତେ ସୁଖ ଯେବେ ଥିଲା କପାଳେ,
ତେବେ କିଆଁ ଏବେ କନ୍ଥା କାଖରେ ।

୩୯୦୧. *ଏକାର୍ଥରେ*- ଏତେ ସୁଖ କପାଳେ (ଲଲାଟେ) ଥିଲା,
ଘଟ ଉପରେ ଗାମୁଛା ଦେଲା ।

୩୯୦୨. *ଏକାର୍ଥରେ*- ଏତେ ଯେବେ ଥିଲା ମନେ,
ତେବେ ସାଗର ବାନ୍ଧିଲୁ କେନେ (=କାହିଁକି) ।
( ତେବେ ଦେଖା ଦେଲୁ କେନେ) ।

୩୯୦୩. ଏତେବଡ଼ ହୋଇଲି ଯେ ଠାକୁରଙ୍କ ଭାତେ
ଦିନଟିଏ ନ ଖାଇଲି ଠାକୁରାଣୀ ହାତେ ।

୩୯୦୪. ଏତ ମୂଳା କ୍ଷେତ ନୁହେଁ ,
ଏଯେ ବାଇଗଣ ବାଡ଼ି (କ୍ଷେତ) ।

୩୯୦୫. *ଏକାର୍ଥରେ* - ବାଇଗଣ ବାଡ଼ିରେ ମୂଳା ରୋଇବା ।

୩୯୦୬. *-ଏଭଳ-* ପ୍ରଜା ଜମିଦାରଙ୍କ ବାଇଗଣ ବାଡ଼ି (କ୍ଷେତ) ।

୩୯୦୭. *-ଏଭଳ-* ମୂଳା ତୋଳା ,ନା ବାଇଗଣ ତୋଳା ।

ମୂଳାଚାଷ ବର୍ଷରେ ମାତ୍ର ଏକମାସ , ବାଇଗଣ ଚାଷ ବାରମାସ । ବାଇଗଣ ବାଡ଼ିରୁ ପ୍ରତିଦିନ କିଛିନା ମୂଳାଚାଷ ବର୍ଷରେ ମାତ୍ର ଏକମାସ । କିନ୍ତୁ ବାଇଗଣ ଚାଷ ବାରମାସ । ବାଇଗଣ ବାଡ଼ିରୁପ୍ରତିଦିନ କିଛି ନା କିଛି ମିଳେ । ସେହିପରି ପୁଅମାନେ ବଡ଼ ହେଲେ ବାପମା'ଙ୍କର ବାଇଗଣ କ୍ଷେତପରି ହୁଅନ୍ତି ବୋଲି କୁହାଯାଏ । ଯେତେ ହୁଙ୍କୁଡ କଲେବି ବାରମାସ ଲାଭ ପାଇଁ ବାଇଗଣ ଚାଷ ବଢାଏ ରଖିବାକୁ ହୁଏ ।

୩୯୦୮. ଏତେ ଟଙ୍କାର ଯେବେ ଖାଆଣ , ଟଙ୍କାଟିକର ଘିଅ କିଣ ।

୩୯୦୯. *ଏକାର୍ଥରେ* - ଋଣ ଯେବେ ଉଣେଇଶ ଟଙ୍କାର
ପୁଅ ମିଠେଇ ଖାଉ ଟଙ୍କାକର ।

୩୯୧୦. ଏତେ ଏତେ ମହାରଥୀ , ନ ପାଆନ୍ତି ଏକ ରତି ।

୩୯୧୧. ଏତେ ବଡ଼ ଟୋକା ,ନାଁଟି ତାର ବୋକ୍ା ।

୩୯୧୨. ଏତେ ଚୂନକୁ ଏତେ ପାନ,
ଖଇର ମିଶିଲେ କେତେ ତାନ ।

ଖାଲି ପାନରେ ଚୂନ ଦେଇ ଖାଇଲେ ପାଟି ଲାଲ ହୁଏ ନାହିଁ । ଖଇର ମିଶିଲେ ଯାଇ ଢକଢକିଆ ଲାଲ ହୁଏ । ଏହି ପରିପ୍ରେକ୍ଷୀରେ ହାସ୍ୟରସ ସୃଷ୍ଟି କରିବା ପାଇଁ ଢଗଟି ପ୍ରୟୋଗ କରାଯାଇ ଥାଏ ।

୩୯୧୩. ଏତେ କରି କରି ନୋହିଲି କିଛି
ନାରଣ (=ନାରାୟଣ)କରି ଗୁହାଳପୋଛି ( =ଯେ ଗୁହାଳ ପୋଛେ) ।

ସ୍ନେହ ଓ କଠିନ କାମ ତଥା ମେହନତ କରି କୌଣସି ସ୍ୱୀକୃତି ନ ମିଳିଲେ ,ଗୃହାଳ ପୋଛିକରି ଘର ଲୋକଙ୍କୁ ସନ୍ତୁଷ୍ଟ କରିବା ପାଇଁ ଅପଚେଷ୍ଟା ।

୩୯୧୪. ଏତେ କଥା ଥିଲା ମନରେ
କାଳିକି ଘେନି ଘର କରିବି
ଗୋରୀକି ଛାଡ଼ିଲି ବନରେ ?

ଜାଣି ଶୁଣି ଭଲ ପଦାର୍ଥଟିକୁ ହରାଇ ମନ୍ଦପଦାର୍ଥକୁ ଧରି ଅନୁଶୋଚନା କରିବା ।

୩୯୧୫. ଏତିକି ଟିକେ ଅଙ୍ଗାର ନୁତୁ ନୁତୁ କରେ
ରାଇକି ରତନ ,ଝୁରିଝୁରି ମରେ
ମୋ ଖେଳାଳୀକୁ ମାଇଲୁ ,
କି କି ସୁଖ ପାଇଲୁ ।

୩୯୧୬. ଏତକ ହେଲା
କିଛି ନ ଆଣି ମୋ ଭାଇ ଅଇଲା ।

ଖାଲି ହାତରେ ବିଦେଶରୁ ବାହୁଡ଼ିବା ଅଯୋଗ୍ୟ ଭାଇ ପ୍ରତି ।

୩୯୧୭. ଏତେ ଚଟକ ( = ଘର ଚଟିଆ ପରି ଚଞ୍ଚଳ ଓ ଚତୁର) ।
କୁଆ ନେଇଗଲା ଧାନ ପଟକ (= ଅଖାଏ /ବସ୍ତାଏ) ।

ସାମନାରେ ସାଧାରଣ ଚୋର ଚୋରିକରି ନେଉଥିବାବେଳେ ଚତୁରତା ମୂଲ୍ୟହୀନ ।

୩୯୧୮. ଏତେ ଦେଲି ସେତେ ଦେଲି
ନୋହିଲା କାରଣ
ଏକା ଝୁଅ ଜେମା ଲାଗି
ପଶିଲି ଶରଣ ।

ଯେତେ ଯୌତୁକ ଦେଲେ ମଧ ଶାଶୁଘରେ କନ୍ୟା ପ୍ରତି ସ୍ନେହାଦର ମିଳେ ନାହିଁ । ଅଥଚ କନ୍ୟାଦାନ ବେଳେ ଶ୍ୱଶୁର ଶରଣ ପଶିଥିଲେ । ଜୋଇଁ ଦଷାଦୋଷ କ୍ଷମା କରିବେ ବୋଲି ସ୍ୱୀକୃତି ଦେଇଥିଲେ ।

୩୯୧୯. ଏତେ ଦିନ ଏତେ ଖାଇଲି,
ବାଇଗଣ ପୋଡ଼ାରେ ହାଡ଼ ପାଇଲି ।

ଚିରାଚରିତ ପ୍ରଥାରେ ବ୍ୟତିକ୍ରମ ଘଟିଲେ ତାହା ଅସ୍ୱାଭାବିକ ଓ ଅବିଶ୍ୱାସ ଯୋଗ୍ୟ ବୋଲି ମନୁଷ୍ୟ ଗଣ୍ୟ କରିବା ସ୍ୱାଭାବିକ । ବାଇଗଣ ସହିତ ହାଡ଼ର କୌଣସି ସମ୍ପର୍କ ନାହିଁ । ବାଇଗଣ ପୋଡ଼ାରେ ଯଦି ହାଡ଼ର ସନ୍ଧାନ ମିଳେ ତାହାହେଲେ ଏପରି ବିରଳ ଅଭିଜ୍ଞତାଟି ଏହି ପ୍ରବାଦରେ ପ୍ରକାଶ ପାଇଛି

୩୯୨୦. ଏତେ ଡ଼ାଲି ଢାଳି ଦେଲା ଭାତରେ ,
କିଛି ନାହିଁ ଦେଢ଼ଶୁର ପାତରେ ।

ସାନବୋହୂ ଦେଢ଼ଶୁର ପତ୍ରରେ ଡ଼ାଲି ଦେଇନଥିବାରୁ ପ୍ରକାରାନ୍ତରେ ଦେଢ଼ଶୁର ପ୍ରତି ତାର ଅବହେଳା ପ୍ରକାଶିତ ହୋଇଛି । ଏହି କର୍ତ୍ତବ୍ୟହୀନତା ପାଇଁ ସାନବୋହୂକୁ ଉପହାସ ଓ ଭର୍ତ୍ସନା କରାଯାଇଛି ।

୩୯୨୧. ଏ ଦୁଃଖ କାହାକୁ କହିବା , କପାଳରେ ସିନା କର ଥୋଇବା ।

୩୯୨୨. ଏଟ ଟିଁକେ ଗୁଡ଼ି , ଯା ଯାରେ ଉଡ଼ି ।

୩୯୨୩. ଏତକୁ ଏତେ,
ମୁଦିନାହିଁ ଗୋଡ଼ କଟାଉ କେତେ ।

୩୯୨୪. *ଏକାର୍ଥରେ* - ତୁଚ୍ଛାକୁ ଏତେ ମୁଦିନାଇ ଗୋଡ଼ କଟାଉ କେତେ ।

୩୯୨୫. ଏ'ତ ଭାଇ ସେ'ତ ଭାରିଯା
କହିବୁ ଯେବେ ବାହାରି ଯା ।

## ୩୯୨୬. ପତର ସଉରା ବଚନିକା

(ପ୍ରଥମ)

୧ମପଦ- ଏତେ ରାତିରେ
ସଭା ମଝିରେ
ଗେଟେଇ ମାଆ
ଡ଼ାକୁଛି କିଆଁ
ମୋକାନ୍ତ ପରି ଶୁଭୁଛି ତୁଣ୍ଡ
ମୁଁ ତ ଦିନକେ ନ' ଥର ରାଣ୍ଡ ହେ, ପ୍ରାଣନାଥ ।

୨ୟ ପଦ- ମୁଁ ଥାଉଁ ଥାଉଁ କେମତି ରାଣ୍ଡ
ହୋଇଲୁ ତୁହିଁ କହୁଛୁ ଦାଣ୍ଡ
ମୋ ଚମ୍ପା ଫୁଲ ,କେ କଲା ମୂଲ
ତୋତେ କେହି ନ ବୋଲିବ ଭଲ ଲୋ, ଚମ୍ପାଫୁଲ ।

୩ୟ ପଦ- ବହୁତ ଦିନେ ଆଜି ହୋଇବ ଭେଟ
ବହୁତ କଥା ବାରତା ଚହଟ
ଆଟଛି ନାଥ,ନୁହେଁ ଆରତ

ଦେଖୁଦେଖୁ ନ ସାରିବ ମହତ
ସାଙ୍ଗରେ ଅଛନ୍ତି ପିଲା ବାଳୁତ
ମତେ କରୁଛନ୍ତି ହରକତ ହେ,ପ୍ରାଣନାଥ ।

(ଦ୍ୱିତୀୟ)

୧ମ ପଦ- ଏତେ ରାତ୍ରରେ
କିଏ ହେ ! କହ ବୃଥାରେ
ଛାଡ଼ ବୋବାଳି,ମୋ କାନ୍ତବୋଲି
କାନ୍ତମୋର ଗଲେ ବିଦେଶ ଚାଲି,
ଯେବେ ମୋ କାନ୍ତ ,କହ ତ୍ବରିତ
କେଉଁ ଦେଶେ ଘର,କି ବୃତ୍ତିକର
କେଉଁ ଦେବତା ସେବା ତୁମର ।

୨ୟ ପଦ- ଯାହା ପଚାରିଲୁ ପରାଣ ସହି
ଠିକ ଠିକ କରି ଦେଉଛି କହି-
ଜରାଶବର ମୋ ବଂଶରେ ସାର
ପଶୁ ପକ୍ଷୀ ମାରି କାନନେ ଘର
ଇଷ୍ଟ ଦେବତା ଯେ ହରଶଙ୍କର ।

୩ୟ ପଦ- ତୋ ବେଶ ବାସ ତୋରେ କିଏ ,ଦେଲାରେ ,ରମଣୀ ମଣୀ
ଏଣି ନୟନୀ ,କାମ ସଜନୀ,ହେମାଙ୍ଗୀ ଲୋ ସଉତୁଣୀ ।

୪ର୍ଥ ପଦ- କାନ୍ତ ହେ !
ଶାଡୀଖଣ୍ଡି ଦେଲେ ମାଆ ମଙ୍ଗଳା
ଦୁର୍ଗା ମାତା ଦେଲେ ପାହୁଡ଼ ବଳା
କର୍ଣ୍ଣେ କାପଚିତା ଦେଲେ ସାବିତ୍ରୀ
ରତ୍ନହାର କଣ୍ଠେ ଦେଲେ ସରସ୍ୱତୀ
ମଥା ସିନ୍ଦୁର ଦେଲେ ଭଗବତୀ
ପଦେ ଅଳତା ଖଞ୍ଜିଲେ ପାର୍ବତୀ (ତୃତୀୟ)

୧ମ ପଦ-　　ଏତେ ଡ଼ାକି ଶୁଣିଲୁ ନାହିଁ,
ଛଇଲି ଲୋ ,କାହା କୋଳେ ଥିଲୁ ଶୋଇ,
ବାନ୍ଧବୀଲୋ , କାହା କୋଳେ ଥିଲୁ ଶୋଇ ।

୨ୟ ପଦ-　　ଶୁଣ ଆହେ ପ୍ରାଣେଶ୍ୱର
ତୁମ୍ଭ ଡ଼ାକ ମୋରେ ଶୁଭିଲା ନାହିଁ
ଛଇଲ ହେ ,ନିଦ୍ରାରେ ପଡ଼ିଲି ଶୋଇ
ବାନ୍ଧବ ହେ, ନିଦ୍ରାରେ ପଡ଼ିଲି ଶୋଇ ।

୩ୟ ପଦ-　　ରୋହିଣୀ ତୋ ଲାଗି ହେଲାକେ ଜହ୍ନ
ଛଇଲି ଲୋ,ଗାଲେ ତୁମ୍ଭ ଦନ୍ତ ଚିହ୍ନ
ନାଗରୀ ଲୋ, ଗାଲେ ତୁମ୍ଭ ଦନ୍ତ ଚିହ୍ନ ।

୪ର୍ଥ ପଦ-　　ଶୁଣହେ ପ୍ରାଣ ଈଶ୍ୱର
ତୁମ୍ଭ ବିହୀନରେ ହେଲି କାତର
ହସ୍ତ ପରେ ମୁଖ ଦେଇ
ତମରି ସପନେ ପଡ଼ିଲି ଶୋଇ
ବାନ୍ଧବ ହେ, ସେ ଚିହ୍ନ କତୁରି ବାହି ।
ଛଇଲ ହେ, ସେ ଚିହ୍ନ କତୁରି ବାହି ।
ରମଣୀ ମଣୀ ଉତ୍ତର
ଶୁଣି କାମାତୁର ହେଲା ଶବର ।

୩୯୨୭.　　ଏଥୁ ଅନନ୍ତରେ ଜଗମୋହନରେ ଦେଖିବ ବେନିଭାଇଙ୍କି,
ବିଜେ ଘୋଡ଼ାରେ ଚଢିଣ ସତ୍ୱରେ କାଞ୍ଚିକାବେରୀ ପାଇଁକି ।

କାଞ୍ଚିକାବେରୀ ଯୁଦ୍ଧଯାତ୍ରା ଶ୍ରୀ ଜଗନ୍ନାଥ ମନ୍ଦିର (ପୁରୀ) ଜଗମୋହନରେ ଚିତ୍ରିତ ହୋଇଅଛି । ଏଥିରେ ଜଗନ୍ନାଥ ଓ ବଳଭଦ୍ର ଘୋଡ଼ାରେ ଚଢି ଯୁଦ୍ଧପାଇଁ ଅଭିଯାନ କରୁଥିବା କଥା ଚିତ୍ରିତ ହୋଇଛି । ଏଥିରୁ
ଜଣାପଡ଼େ ଯେ ଶ୍ରୀଜଗନ୍ନାଥଙ୍କ କୃପାରୁ କାଞ୍ଚି ବିଜୟ ସାଧିତ ହୋଇପାରିଥିଲା । କାରଣ ପୁରୁଷୋତ୍ତମ ଦେବଙ୍କ କାଞ୍ଚି ବିଜୟ ଅତି ଦୁଃସାଧ ଥିଲା ।

୩୯୨୮.　　ଏ ଦେଶର ଠାକୁର - ବଡ଼ ଠାକୁର (ଶ୍ରୀ ଜଗନ୍ନାଥ) ।

୩୯୨୯. ଏଦେଶର ଦେଉଳ- ବଡ଼ ଦେଉଳ (ଶ୍ରୀମନ୍ଦିର ,ଶ୍ରୀଜଗନ୍ନାଥଙ୍କ ଆସ୍ଥାନ )।

୩୯୩୦. ଏଦେଶର ଦାଣ୍ଡ - 'ବଡ଼ ଦାଣ୍ଡ'
(ଶ୍ରୀ ଜଗନ୍ନାଥଙ୍କ ରଥ ଯେଉଁ ଦାଣ୍ଡରେ ଚାଲେ)

୩୯୩୧. ଏଦେଶର ଭୋଗ-' ବଡ଼ ଭୋଗ' (ଶ୍ରୀଜଗନ୍ନାଥଙ୍କର ବଡ଼ଭୋଗ)

୩୯୩୨. ଏଦେଶର ପ୍ରସାଦ- ' ମହାପ୍ରସାଦ' (ଶ୍ରୀଜଗନ୍ନାଥଙ୍କ ପ୍ରସାଦ ) ।

୩୯୩୩. ଏ ଦେଶର ବିଅଁଙ୍କବେଶ - 'ବଡ଼ସିଂହାରବେଶ'
( ଶ୍ରୀଜଗନ୍ନାଥଙ୍କ ସର୍ବଶ୍ରେଷ୍ଠ ବେଶ )

୩୯୩୪. ଏ ଦେଶର ନଦୀ- 'ମହାନଦୀ' (ଶ୍ରୀଜଗନ୍ନାଥ ଦେଶ - ଓଡ଼ିଶାର ବଡ଼ ନଦୀ)।

୩୯୩୫. ଏଦେଶର କବି -'ଅତିବଡ଼ି' ( ଜଗନ୍ନାଥ ଦାସ ଓଡ଼ିଆ ଭଗବତର ରଚୟିତା)

୩୯୩୬. ଏଦେଶର କ୍ଷେତ୍ର- ' ଶ୍ରୀକ୍ଷେତ୍ର' (ଶ୍ରୀ ଜଗନ୍ନାଥଙ୍କ କ୍ଷେତ୍ର ପୁରୀ)।

୩୯୩୭. ଏଦେଶର କୀର୍ତ୍ତି - 'କୋଣାର୍କ' (ଅର୍କମନ୍ଦିର-ଓଡ଼ିଆଶିଳ୍ପୀଙ୍କର ଶିଳ୍ପଚାତୁର୍ଯ୍ୟ)

୩୯୩୮. ଏଦେଶର ରାଜା-'ଠାକୁର ରାଜା '( ଶ୍ରୀଜଗନ୍ନାଥଙ୍କର ଆଦ୍ୟ ସେବକ)।

୩୯୩୯. ଏଦେଶର ପୂଜକ-'ବଡ଼ ପଣ୍ଡା '(ଶ୍ରୀଜଗନ୍ନାଥଙ୍କର ଖୋଦସେବକ ପଣ୍ଡା)।

ହସ୍ତ ପଦ ହୀନ ଶୂନ୍ୟ ପୁରୁଷ ଜଗତର ନାଥ ,ଶ୍ରୀଜଗନ୍ନାଥ ଜାତି ,ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସାର୍ବଜନୀନ ,ଏକେଶ୍ୱର ,ପରମେଶ୍ୱର ଏବଂ ସର୍ବଧର୍ମର ଏକ ବିସ୍ମୟକର ପ୍ରତୀକ। ତାଙ୍କୁ ବ୍ରାହ୍ମଣ୍ୟ,ବୈଷ୍ଣବ ଜୈନ,ବୌଦ୍ଧ,ତାନ୍ତ୍ରୀକ ପ୍ରଭୃତି ଧର୍ମର ବିବର୍ତ୍ତନ ବୋଲି ଯାହା କୁହାଯାଏ। ସେ ସମ୍ପୂର୍ଣ୍ଣ ଭାବେ କୌଣସିଟି ନୁହନ୍ତି। ସମସ୍ତେ ନିଜ ନିଜର ଧର୍ମ ଭିତରକୁ ନେବାପାଇଁ'ଟକାଡ଼ୋଳା' କୁ ଓଟାରିଛନ୍ତି, ହେଲେ ସମସ୍ତେ ତାଙ୍କର ସତ୍ତା ମଧ୍ୟରେ ଲୀନ ହୋଇ ଯାଉଛନ୍ତି। ବିଶ୍ୱର ବିଭିନ୍ନ ଧର୍ମ ଭାବର ସକଳ ସାରତତ୍ତ୍ୱ ଓ ମହାତ୍ମ୍ୟ ମହାପ୍ରଭୁ ଜଗନ୍ନାଥଙ୍କ ଠାରେ ଯେପରି ପୁଞ୍ଜିଭୂତ ହୋଇଛି ତାହାର ପଟାନ୍ତର ନାହିଁ। ଶ୍ରୀଜଗନ୍ନାଥ କୌଣସି ନର୍ଦ୍ଦିଷ୍ଟ ଗୋଷ୍ଠୀ,ସମ୍ପ୍ରଦାୟ ଅଥବା ଧର୍ମର ଇଷ୍ଟ ଦେବତା ନୁହନ୍ତି। ଶତାବ୍ଦୀ ଶତାବ୍ଦୀ ଧରି ସେ ବ୍ରହ୍ମାଣ୍ଡର ଠାକୁର 'ବଡ଼ ଠାକୁର' ରୂପେ ପୂଜିତ। ପ୍ରତ୍ୟକଙ୍କର ଦୈନନ୍ଦିନ ଜୀବନ ଯାପନରେ ମହାପ୍ରଭୁଙ୍କର ସ୍ପର୍ଶ ଥିବାର ପରିଲକ୍ଷିତ ହୁଏ। ସେ ସମସ୍ତଙ୍କର ଓ ସମସ୍ତେ ତାଙ୍କର। ଶ୍ରୀଜଗନ୍ନାଥ ସମଗ୍ର ମାନବ ରାଷ୍ଟ୍ରର ଇଷ୍ଟ ଓ ଶ୍ରେଷ୍ଠ। କାଳେକାଳେ ଓଡ଼ିଶାର ଗଜପତି ମହାରାଜା ମହାପ୍ରଭୁ ଜଗନ୍ନାଥଙ୍କର ଆଦ୍ୟ ସେବକ ଏବଂ ତାଙ୍କର ନାମରେ ଶାସନ ପରିଚାଳନା କରୁଥିବାରୁ ସେମାନେ 'ଠାକୁର ରାଜା'' ତଥା 'ଚଳନ୍ତି ବିଷ୍ଣୁ' ବୋଲି ଆଖ୍ୟାୟିତ ହୋଇଛନ୍ତି।

୩୯୪୦. ଏ ଦକ୍ଷିଣାଭୋଗୀ ସେବକ
ଧୂପ ବେଢ଼ନ୍ତେ ,ତାଳିମାରି କରନ୍ତି
ପରମେଶ୍ୱରଙ୍କ ଯାବତ ଭୋଗ।

ଶ୍ରୀମନ୍ଦିର ସେବକ ବିଶେଷ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ପାଖରେ ଭୋଗରାଗ କରିବା ପାଇଁ ନିଯୁକ୍ତ ।

୩୯୪୧. ଏ ଦୁଃଖୀ ଆଗରେ ସେ ଦୁଃଖୀ କହେ
ଆଖିରୁ ଲୁହ ଝର ଝର ବହେ ।
ଅନ୍ୟର ଦୁଃଖ ଦୁଃଖୀର ସମବେଦନା ବୋଧ ଓ ଆଶ୍ୱାସନାରେ ଆଖିରୁ ଲୁହ ଝରିବା ।

୩୯୪୨. ଏ ଘର ମାଉସୀ ,ସେଘର ପିଉସୀ
କଥା କହେ ସର ,ପାଣି ପକାଇକି । - କଥା କୁହାରେ ଚାତୁରୀ ।

୩୯୪୩. ଏ ଦୁଃଖ ସୁଖ ସମକର ।
ଇନ୍ଦ୍ରିୟ ମାନଙ୍କୁ ନିବାର । - ଜଗନ୍ନାଥ ଭାଗବତ

୩୯୪୪. ଏ ଦଶାରୁ ସେ ଦଶା ବଳେ
ଦଦରା ହାଣ୍ଡିରେ ପେଜ ନଗଳେ ।

୩୯୪୫. ଏ ଦେଶ କୀରତି ,ଏଦେଶ ଗୌରବ
ଏଦେଶ ବିଭବ ,ଏଦେଶ ମହୀତଳେ
ଆଉ କାହିଁ ନାହିଁ ସମସ୍ତ ନିଷ୍ପ୍ରଭ
ହେଲେଟି ମନୁଷ୍ୟ କରମ ଫଳେ । - ରାଧାନାଥ

୩୯୪୬. ଏ ଦେହଥିଲେ ସର୍ବ ପାଇ
ଏଦେହ ଗଲେ କାର୍ଯ୍ୟ ନାହିଁ
ଏଦେହଟି ଦେବ ମନ୍ଦିର
ବ୍ରହ୍ମଚର୍ଯ୍ୟ ଥିଲେ ସୁନ୍ଦର ।
ସେ ବୀର୍ଯ୍ୟକୁ ଯେ କରେ ସୁରକ୍ଷା
ଦୀର୍ଘ ଜୀବୀ ଯୌବନ ରକ୍ଷା ।

୩୯୪୭. **ରଜ ଦୋଳି ଢମାଳି ପଦମାଳ**

ସ୍ତ୍ରୀ- ଏ ଦିନୁ ହେଲୁଣି ଏତେ
ପାଣି ପଇଲେ ହୁଅନ୍ତୁ କେତେ
ହୁଅନ୍ତୁ କେତେରେ ,ଛାନିଆ ଲାଗଇ ମୋତେ ।

ପୁରୁଷ- ବାରିରେ ବାଇଆ ବସା
ତରାଟ ଫୁଲରେ ଖୋସିଛି ଖୋସା
ଖୋସିଛି ଖୋସାଲୋ ,ଦାନ୍ତ ଅଛି ଦରଘସା ।

ତୋ ପରି ଦେଖିଛି କେତେ ରସିକ
କେତେ ରସିକରେ ,ମୋ ଗୋଲାମ ପଣକୁ ଲକ୍ଷ୍ୟ ।

ପୁରୁଷ- ବାଘକୁ ମାଇଲି ଟେକା
ଛନ୍ନ ଛନ୍ନ ଦିଶୁ ନବ ରସିକା
ନବ ରସିକାଲୋ, ଅଳି ମୋର କର ରକ୍ଷା ।

ସ୍ତ୍ରୀ- ନଈରେ ମଲା ବାଳିଆ
କେତେ ରଙ୍ଗେ କଥା କହୁ କାଳିଆ
କହୁ କାଳିଆରେ ,ସବୁ ଚଟକଣା ଖିଆ ।

ପୁରୁଷ- ଲାଉ ଫୁଲ ଦାଉ ଦାଉ
ହସି ହସି ଯେବେ ତୁ ଗୀତ ଗାଉ
ତୁ ଗୀତ ଗାଉଲୋ ,ମନ ମୋର ମୋହି ନେଉ ।

ସ୍ତ୍ରୀ- ବିଲେଇ ବେକରେ ପଘା
ପୁରୁଷ ଜାତିର କି ଅଛି ନଗା
କି ଅଛି ନଗାରେ ,ନିତି ଦେଉଥାନ୍ତି ଦଗା ।

ପୁରୁଷ- ଷଣ୍ଢ ଗଲା ଗିରି ଗିରି
ନଦେଖି ଛି ତୋହପରି ସୁନ୍ଦରୀ
ତୋହପରି ସୁନ୍ଦରୀଲୋ ,ଜୀବନ ହେଉଛି ଘାରି ।

ସ୍ତ୍ରୀ- ଧରମ ଅଛଇ ସାକ୍ଷୀ
ଏଡ଼ିକି ଡ଼ାହାଣା ପୁରୁଷ ଆଖି
ପୁରୁଷ ଆଖିରେ ,ଦେଖିଲେ ରହଇ ଲାଖି ।

ପୁରୁଷ- ହୋଇଛୁ ବଡିଆ ସଜ
ସଜବାଜ ରଙ୍ଗ ସିନା ମଉଜ
ସିନା ମଉଜଲୋ, ଆଜି ପାଳିଦେବା ରଜ ।

ସ୍ତ୍ରୀ- ଶୁଆ ଖାଏ ଛେନା ଗୁଡ଼
ପାକଳା ପାକଳି କଥାଟି ଛାଡ଼
କଥାଟି ଛାଡ଼ ରେ ,ନୋହିଲେ ଖାଇବୁ ମାଡ଼ ।

ପୁରୁଷ- ଉଡୁଛି ଲୋଟଣୀ ପାରା

ଯେତେ ଗୋଡ଼ାଇଲେ ନଦେଉ ଧରା
ନ ଦେଉ ଧରାଲୋ ,କରୁଛୁ ଖାଲି ଘାବରା ।
ସ୍ତ୍ରୀ- କ୍ଷୀର କୋଳି ଗଛ କଣ୍ଟା
ଦିନଟାରେ ଆସି କରୁଛୁ ହଟା
କରୁଛୁ ହଟାରେ , ସଖୀଏ କରିବେ ଥଟ୍ଟା
ପୁରୁଷ- ବଢେଇ କାଟଇ କାଠ
ବିମ୍ବ ଫଳ ଛିଣା ତୋହରି ଓଠ
ତୋହରି ଓଠଲୋ,ଦେଖି ମନ ଛଟ ପଟ ।
ସ୍ତ୍ରୀ- କୁକୁରର ନାହିଁ ଘର
ଭୁଲାଇ ତୁ କେତେ କହୁ ନାଗର
କହୁ ନାଗରରେ ,ଚିତ୍ତ କିଣି ନେବୁ ମୋର ।
ପୁରୁଷ- ସଜ ଫୁଟା ବଣମଲ୍ଲୀ
ଭଲା ଚାଲୁଅଛୁ ତୁ ଝୁଲି ଝୁଲି
ତୁ ଝୁଲି ଝୁଲି ଲୋ, ଦେଖ୍ ଛାତି ଉଠେଫୁଲି ।
ସ୍ତ୍ରୀ- ବନ୍ତଳ କଦଳୀ ଭଣ୍ଡା
ଦିନ ରାତି ବୁଲି ମରୁ ଉଦଣ୍ଡା
ମରୁ ଉଦଣ୍ଡାରେ ,ମଣିଷ ଭିତରେ ମେଣ୍ଢା ।
ପୁରୁଷ- ସରୁ ସରୁ ନଈ ବାଲି
କେତେ ଗେଲ ହେଉ ଟାକୁଆ ଗାଲି
ଟାକୁଆ ଗାଲିଲୋ ,କୁକୁର ପରି ତୋ ଚାଲି ।

ଓଡ଼ିଶାର ଏକ ପ୍ରଧାନ ପର୍ବ ରଜ । ରଜ ସଂକ୍ରାନ୍ତିର ପୂର୍ବ ଦିନଠାରୁ ଆରମ୍ଭ ହୋଇ ତା ପର ଦୁଇ ଦିନ ବ୍ୟାପି ଏହା ସର୍ବତ୍ର ପାଳନ କରାଯାଏ । ନୂଆ ଲୁଗା ,ବେଶଭୂଷା ଓ ପିଠା ପଣା ଛଡ଼ା ଦୋଳିଖେଳ ହେଉଛି ଏହି ପର୍ବର ବିଶେଷ ଆକର୍ଷଣ । ଆବାଳବୃଦ୍ଧବନିତା ସମସ୍ତେ ଦୋଳି ଖେଳରେ ମଜ୍ଜି ଯାଆନ୍ତି । ସ୍ତ୍ରୀ ,ପୁରୁଷ ମାନଙ୍କ ମଧ୍ୟରେ ଅନୁଷ୍ଠିତ ଢମାଳି ପ୍ରତିଯୋଗୀତା ଅତି ରୋମାଞ୍ଚକର ଓ ଚିତ୍ତାକର୍ଷକ । ଏହି ସମୟରେ ପ୍ରତିଯୋଗୀମାନଙ୍କ ମୁଖରୁ ନିସୃତ ସ୍ରୋତସ୍ୱନୀ ଅମୃତ ଧାରା ପରି ଢମାଳି ପ୍ରବାହର କୂଳକିନାରା କଳନା କରିବା ମୁସ୍କିଲ ।

୩୯୪୮. ଏ ଦହି ଦହିତ ବୁଲିଗଲେ ସାଇଁ

ରାଧିକା ଦହିରୁ ତ ସୁଆଦ ଆଉ ନାହିଁ
ରାଧିକା ଦୋଚାରୁଣୀ କିଏ ସେ କହଇ
ବିନା ଦୋଷେ ଗଞ୍ଜି ଯେ ମାରୁଛି
କହ୍ନେଇ ଦୋଷ ଦେଇ । - କୃଷକ ବୋଲି

୩୯୪୯. ଏ ନାହା (ନାଆ) ରେ ଗୋଡ଼ ,ସେ ନାହା(ନାଆ) ରେ ଗୋଡ଼ ।

୩୯୫୦. *ଏକାର୍ଥରେ* - ଦୁଇନାହା (ନାଆ) ରେ ଗୋଡ଼ଦେବା ।

ଦୁଇନାଆରେ ଗୋଡ଼ଦେଲେ ମଣିଷ ନଈରେ ପଡ଼ି ବୁଡ଼ି ମରେ । ସେହିପରି ଲକ୍ଷ୍ୟ ସ୍ଥିର ନହେଲେ ଜୀବନ ବିପନ୍ନ ହୁଏ ।

୩୯୫୧. ଏ ନଈ ସେପାରି ତ ଦିଅରଙ୍କ ଚାଷ
ଡ଼ଙ୍ଗା ଚଢି ଭାତ ଯେ ବୋହିବି ବରଷା ଚାରିମାସ
ବରଷା ଚାରିମାସ ଦିଅରକୁ ଆଶ
ଘର ଖାଉନ୍ଦକୁ ଲୋ ଝଞ୍ଜିକା(=ନିଶ୍କଳ)
ପଡ଼ିଆ ଭଙ୍ଗା ଚାଷ
ପଡ଼ିଆ ଭଙ୍ଗାଛାଡ଼ି କପା ତାସ(=ଚାଷ) କର
ବାଡ୍ଡୁଅ ରହିଲେ ସାନ ଯେ ଦିଅର
ବୁଡ଼େଇ ଦେବେ ଘର । - କୃଷକ ବୋଲି

୩୯୫୨. ଏ ନଈ ସେ ନଈଲୋ ବାର ବାଙ୍କ ନଈ
ଆଗ ବୁଲେ ନଙ୍ଗଳ ପଛେ ବୁଲେ ମଇ
ଶଶୁର ଅରଟକୁ ବୋହୂର କପା ଖାଇ
ନଣନ୍ଦ ରାଣ୍ଡିର ନାଠିକି (=ଲାଠି) ବିଞ୍ଚଣା
ବୁଲାଏ ସାଇଁ ସାଇଁ । - କୃଷକ ବୋଲି

୩୯୫୩. ଏ ନିଦରାଣୀ ଟିକେ ଅନେଇ ଦେ
ମୋ ମାଆର ପାଖକୁ ଆସି
ନିଦ ଟିକିଏ ଦେ ।

୩୯୫୪. ଏ ନାବ ତ ଦଦରା ଯେ ଝଲକି ପଶେ ପାଣି
ଜଣେ ଜଣେ ପାରି କରିବି ଗୋପର ଗଉଡୁଣୀ
ଗୋପର ଗଉଡୁଣୀ ଗୋପେ ତୁ ବୋଲାଉ
ଲବଣୀ ମାଗିଲେ ଯେ ପଣତ ଘୋଡ଼ାଉ

ଅବଶ୍ୟ ଯେବେ ଲୋ ଖାଇବି ଛଡ଼ାଇ
ଗୋପରେ କହ ଯାଇ ।
ଗୋପରେ କହି ଯାଇ ଧରାଇ ନେବୁ ସତେ
କଂସ ରାଜା ମୋର ଗୋ ମଉଳା
ସେତ କି କରିବ ମୋତେ । - କୃଷକ ବୋଲି

୩୯୫୫. ଏ ନାବ ତ ଦଦରା ଯେ ଝଲକି ପଶେ ପାଣି
ଜଣେ ଜଣେ ପାରି କରିବି ଗୋପର ଗଉଡୁଣୀ
ଗୋପର ଗଉଡୁଣୀ ଗୋପେ ହୁଅ ବାଇ
ଶ୍ରୀରାମ ବିଭାବୋଳେ ଲୋ ନଗଲ ବନ୍ଧାଇ
ତେଣୁ ଶାପ୍ୟ ଲୋ ପାଇଲ
ବୁଲାଇ ବିକ ଦହି ।

୩୯୫୬. ଏକ ପଇସାର ତେଲ
କିସ ଖର୍ଚ୍ଚ କଲ ?
ତୋ ମଥାରେ ,ମୋ ପାଦରେ
ଆଉ ଦେଲି ପୁଅ ଦିହରେ
ଝିଅପୁଅଙ୍କ ବାହା ସରିଲା
ସାତ ରାତି ଯେ ପାଲା ଲାଗିଲା,
ନିଉଁଛୁଣୀଟା ଘରେ ପଶି
ବାକି ତେଲ ତକ ଢାଳିଦେଲା ।- ଶିଶୁ ମନୋରଞ୍ଜନ ଢମାଳି

୩୯୫୭. ଏ ପେଜ ପିଆଙ୍କର ଶିରୀ ,ସାଗଖିଆ ଦେଖିପାରେ ନାହିଁ ।

୩୯୫୮. (କ) ଏପ୍ଲାଏ ,ଏପ୍ଲାଏ ,ନୋ ରିପ୍ଲାଏ । (ପଶ୍ଚିମ ବଙ୍ଗ)
(ଖ) ଏପ୍ଲାଏ, ଏପ୍ଲାଏ ,ନୋ ଭେକେନ୍‌ସି, ପ୍ରମ୍ପଟ୍ ରିପ୍ଲାଏ (ଦାକ୍ଷିଣାତ୍ୟ)
(ଗ) ଏପ୍ଲାଏ ଟୁଡ଼େ ,ଟୁଡ଼େ ଏପଏଣ୍ଟମେଣ୍ଟ ,ଟୁମରୋ ପ୍ରମୋଶନ ।( ଓଡ଼ିଶା)
ଚାକିରୀ ପାଇଁ ଦରଖାସ୍ତ ( ଏପ୍ଲାଏ )କରିବା ସମ୍ପର୍କରେ ବ୍ୟଙ୍ଗୋକ୍ତି ।

୩୯୫୯. ଏ ପାଖେ ବଳଦ ,ସେ ପାଖେ ବଳଦ
ମଝିରେ ନୋକ( =ଲୋକ)
ଗୋବର ଟୋକେଇ ମୁଣ୍ଡକୁ ଟେକ ।
କୌଣସି ଲୋକ ଛିଡ଼ା ହେବାର ସୁଯୋଗ ପାଇଲେ ,ତାକୁ ଗୋବର ଟୋକଇ ମୁଣ୍ଡକୁ ଟେକି

କୌଣସି ଲୋକ ଛିଡ଼ା ହେବାର ସୁଯୋଗ ପାଇଲେ ,ତାକୁ ଗୋବର ଟୋକଇ ମୁଣ୍ଡକୁ ଟେକି ଦେବା ପାଇଁ କହିବା ସୁଯୋଗ ନେଇ ଏହିପରି ଲୋକର ସାହାଯ୍ୟ ଗ୍ରହଣ କରାଯାଏ ।

୩୯୬୦. ଏ ପିଲାଟି (ମୋର) କିଏରେ ,''ହେଁସରେ ମୁତି ଦେ ରେ'' ।

ଯେଉଁ ଶିଶୁ ରାତିରେ ବିଛଣାରେ ପରିସ୍ରା କରେ ତାକୁ ଯଦି କେହି 'ହେଁସରେ ମୁତି ଦେ' ରେ, ବୋଲି ସମ୍ବୋଧନ କରି କହିଚାଲେ ତେବେ ଏହି ମନ୍ଦ ଅଭ୍ୟାସ ଛାଡ଼ିଯାଏ ।

୩୯୬୧. ଏ ପିଲାଟି କିଏ ରେ, ଦେଖିଲେ ହସି ଦିଏରେ ।

୩୯୬୨. ଏପାଖେ ଅନ୍ଧାର ସେ ପାଖେ ଅନ୍ଧାର
ମଝିରେ ତତଲା ନଈ
କେଉଁଠି ଥିଲୁ ତୁ ରାଜ କୁମାରରେ
ବସିଅଛି ତୋତେ ଚାହିଁ ।

୩୯୬୩. ଏପ୍ରାଣମିତଣୀ ,ବିନୟ ବାଣୀ
ଆଡ଼ ଉହାଡ଼ରେ ରହି ଶୁଣା ଗଲାଣି ।

୩୯୬୪. ଏପିତା ,ମାତା,ଗୁରୁ ,ଅଗ୍ନି ଯେ ଆତମାକୁ (=ଆତ୍ମାକୁ)
କରିବେ ପୂଜା ବିହି ଲେଖିଛି ନରକୁ ।

୩୯୬୫. ଏପାରି ଚତୁରା ସେ ପାରି ମଥୁରା
ମଝିରେ ଚଣ୍ଡାଳ ନଈ
ସୀତା ଠାକୁରାଣୀ ଖେଳ ଖେଳୁଥିଲେ
ଲକ୍ଷେ ସୁନା ମୁଦ୍ରା ଦେଇ ।

ଯୁବତୀର ସୌଭାଗ୍ୟ ପାଇଁ ତାର ଫୁଲାପଣିଆର ସୂଚନା ।

୩୯୬୬. ଏ ପଟେ ଚତୁରା ସେ ପଟେ ମଥୁରା
ମଝିରେ ଗୁଞ୍ଜରା ନଈ
ଚାରିଜଣ ଯାକ ଚାରିପଣ ଦେବା
ପାରି କରିବେ ମାଧୋଇ ।

୩୯୬୭. ଏପାରି କାଚରା ଘର ସେପାରି କାଚରା ଘର
ଦେ'ରେ କାଚରା କାଚ ଦି'ମୁଠା
ବୋହୂ ଯିବ ଶାଶୁଘର
ବୋହୂ ଯିବାଦିନ ଦୋଳ ଯାତରା
ବାଟରେ ଚୁଡ଼ା ବତରା (=ବତୁରା)।

୩୯୬୮. ଏପଟୁ ଓ ସେପଟୁ ,ଭ୍ରଷ୍ଟ । - ଦୁଇପଟୁ ଭ୍ରଷ୍ଟ ।

୩୯୬୯. *ଏକାର୍ଥରେ* -ଏପଟୁ ନଷ୍ଟ,ସେ ପଟୁ ମଧ୍ୟ ନଷ୍ଟ ।
ସଂସ୍କୃତରେ- ଅତୋଭ୍ରଷ୍ଟ ତତୋ ଭ୍ରଷ୍ଟ । ଅତୋ ନଷ୍ଟ ,ତତୋ ନଷ୍ଟ ।

୩୯୭୦. ଏତେ ଛଟପଟ ହେଉ କାହାପାଇଁ
ମରିହଜିଗଲେ କିସ ନେବୁ ବହ(=ବୋହି)
କାଠ ଦୁଇ ହଳ ଯଉତୁକ ଦେବେ
ଶମଶାନ ଭୂଇଁରେ ଦାହକରି ଦେବେ
ନିଆଁ ତ ପଣା ଖାଇରେ ମନାଇଁ ତୋ ଗୁଣ ସୁମରିବେ ।- କୃଷକ ବୋଲି

୩୯୭୧. ଏଫୁଲ ମହରଗ ଲୋ ଶିମିଳି ଫୁଲ ଗଭା
କହ୍ନାଇକି ବାର ଯେ ବରଷ ରାଧିକା ନବ ଯୁବା
ରାଧିକା ନବ ଯୁବା ଭାଗ୍ୟଥିଲେ ପାଇ
ନିଆଁ ପାଖେ ଘିଅରେ ବଉଳ,ତେସନ ତରଳାଇ । - କୃଷକ ବୋଲି

୩୯୭୨. ଏ ପଧାନ ବାଡ଼ିପଟେ ଅନ୍ଧାରୁଆ କୂଅ
ପାଣି କାଢୁଥିଲା ରଇତ(=ପ୍ରଜା) ଘର ଝିଅ
କାନ ମଲକଡି ଯେ ଯାଚଇ
ପଧାନ ସାନ ପୁଅ ।
ତୋହ କାନ ମଲକଡି ତୋହ ପାଖେ ଥାଉ
ଯେଉଥିପାଇଁ ଅଳି ହେ କରୁଚ
ମୋ ସ୍ୱାମୀ ନିଦ୍ରା ଯାଉ ।
ତୋ ସ୍ୱାମୀ ନିଦ୍ରା ଗଲେ ମୁଁ ଜାଣିବି କେମନ୍ତେ
ହଲାଇ ଦେବିରେ ଖଡ୍ଡୁ ବାହିକି କାଳିଆ ତୋହରି ନିମନ୍ତେ ।-କୃଷକ ବୋଲି

୩୯୭୩. ଏପଟେ ଗୋ ହତ୍ୟା ସେପଟେ ବ୍ରାହ୍ମଣ ହତ୍ୟା ।

୩୯୭୪. ଏ ବାହାରେ ଛିଡ଼ା ହୋଇଣ ମୃତନ୍ତି
ପାଣି ଘେନିବାର କଥାଟି ନ ଜାଣନ୍ତି ।

୩୯୭୫. ଏ.ବି.ସି.ଡ଼ି - ନ ପିଇବି ବିଡ଼ି ।
(A.B.C.D.)
ଇ.ଏଫ୍ .ଜି. ଏଇଚ୍.- ନଧରିବି ଇଲେକଟ୍ରି ସୁଇଚ ।
( E.F.G.H.)

ଆଇ.ଯେ.କେ.ଏଲ - ନହେବି ଜୀବନରେ ଫେଲ ।
(I.J.K.L.)
ଏମ,ଏନ.ଓ ପି- ଜୀବନେ ନ କରିବି କପି ।
(M.N.O.P.)
କିଉ.ଆର.ଏସ୍.ଟି.- ନ କରିବି ନଷ୍ଟି ।
(Q.R.S.T.)
କ୍ୟୁ.ଭି .ଡ଼ବଲ୍ୟୁ .ଏକ୍ସ.- ହେବି ମୁଁ ଏକ୍ସପ୍ରେସ ।
(U.V.W.X.)
ୱାଇ .ଯେଡ୍.- ତେବେ ଯାଇ ହେବି ହେଡ଼ ।
(Y.Z.)

ଉଚ୍ଚାଭିଳାଷୀ ବ୍ୟକ୍ତିତ୍ୱ ସମ୍ପର୍କରେ ପଦାବଳି ।

୩୯୭୬. ଏବେ ପୁଣି ଫୁ (= ଫୁଲ) ଫୁଟିଛି ।

୩୯୭୭. ଏବି ଏକ କସରତ ।

ଜଣେ ପହିଲିମାନ କସରତ ଦେଖାଉ ଦେଖାଉ ପଡ଼ିଗଲା । ପହିଲିମାନ ପଡ଼ିଯିବାଟା ଲଜ୍ଜାର କଥା । ତେଣୁ ସେ କହିଲା -'ମୁଁ ପଡ଼ିଗଲିବୋଲି କେହି କିଛିମନେ କରନାହିଁ ,। ଏବି ଗୋଟାଏ କସରତ । ସେହିପରି କୃତୀପୁରୁଷ ନିଜର ପତନକୁ ଏକପ୍ରକାର ବୈଶିଷ୍ଟ୍ୟ ବୋଲି ବୁଝାଇ ଥାଆନ୍ତି ।

୩୯୭୮. ଏବେ ଜାଣୁନି ଜାଣିବ ପରେ,ଈଆଡି ଜାଲରେ ପଡ଼ିଲେ(ମରିବ) ଥରେ ।

୩୯୭୯. ଏବେଳା ସାର ଘର ଛପର ,
ଆକାଶେ ଉଦେ (ଉଭା) ମେଘାଡ଼ମ୍ବର ।

୩୯୮୦. ଏ ବାଡ଼ି ବାଇଗଣ ,ଏପୋଥି ବାଇଗଣ ନୁହେଁ ।

ଶାସ୍ତ୍ରରେ ଅଛି -ଧଳା ବାଇଗଣ ଖାଇବା ନିଷେଧ । ଲୋକ ତ ଧଳା ବାଇଗଣ ଖାଉଛନ୍ତି । ଏପରି ସ୍ଥଳେ କୁହାଯାଏ ଯେ ପୋଥିରେ ବାଇଗଣ ଖାଇବା ନିଷେଧ ମାତ୍ର ବାଡ଼ି ବାଇଗଣ ନିଷେଧ ନୁହେଁ ।

୩୯୮୧. ଏ ବିଭାଘରେ ଏଇ ମନ୍ତ୍ର(ଆଚାର) ।

୩୯୮୨. *ଏକାର୍ଥରେ-* ଯେଉଁ ବିଭାଘରେ ଯେଉଁ ମନ୍ତ୍ର (ଆଚାର) ।

୩୯୮୩. ଏ ବାଡ଼ି ବାଇଗଣ ତୋଳୁଥିଲି ନଈଁ
କାଳିଆକୁ ଡ଼ର ମାଡୁଛି ଯେ ପଶିବ ବାଡ଼ି ଡେ଼ଇଁ
ଚନ୍ଦେଇ (=ନଷ୍ଟା ସ୍ତ୍ରୀ) ଭାଙ୍ଗିବ ମୋ କୋଳକୁ ଆଉଜାଇ ।-କୃଷକବୋଲି

୩୯୮୪. ଏ ବାରିଆଡ଼େ ମକା
ସେ ବାରିଆଡ଼େ ମକା
ତହିଁରୁ ବାହାରିଲା ଛଗଣ୍ଡା ଟଙ୍କା

ଅତୁଲ (= ସ୍ତ୍ରୀ ହାତଗଣ୍ଠି ଅଳଙ୍କାର) ଗଢେଇ ପକା ।
ଅତୁଲ ପାଖେ ଗୁଞ୍ଜର (= ହସ୍ତାଳଙ୍କାର)
ମୁଁ ଖଟି ନାହିଁ ବେଣୀ ପଦର
ପାଟଣା କେଡ଼େ ସୁନ୍ଦର ।

୩୯୮୫. ଏ ବ୍ରହ୍ମା ସ୍ତିରୀ ଯୋନି ହେଉ
ଅପୂଜା ହୋଇ ଦିନ ଯାଉ । - ଯଶୋବନ୍ତ ପ୍ରେମଭକ୍ତି ବ୍ରହ୍ମଗୀତା ।

୩୯୮୬. ଏ ବାରିଆଡ଼େ ମକା
ସେ ବାରିଆଡ଼େ ମକା
ଛଡ଼େଇ ଛଡ଼େଇ ତୁଣରେ (=ତରକାରୀ) ପକା
ଆସୁଥିବ ସାନ କକା ।

୩୯୮୭. ଏ ବନ୍ଧେ ମାଇଲି ଛେଲା କେରାଣ୍ଡି
ସେ ବନ୍ଧେ ମାଇଲି ମୀନ
ସବୁ ଝିଅଙ୍କର ହାର ସମାନ
ମୋହରି କରମ ହୀନ ।

୩୯୮୮. ଏ ବୃକ୍ଷର ନାମ ଅଟେ କାମିନୀ ବଶତ
ସ୍ତିରୀ ମାନଙ୍କୁ ଏ ଅଟେ ବଡ଼ଇ ପଦାର୍ଥ ।
ଏହା ଗୁଣ୍ଡି ସ୍ତିରୀ କପାଳରେ ଲଗାଇଲେ
ପୁରୁଷ ବଶ କରିବେ ସେ ବୃଦ୍ଧା ହୋଇଲେ । (ସାରଳା ମହାଭାରତ)

ପୌରାଣିକ ବୃକ୍ଷ ବିଶେଷ । ଯାହାଦ୍ୱାରା କାମିନୀ ପୁରୁଷଙ୍କୁ ବଶୀଭୂତ କରାନ୍ତି । ପୁରୁଷକୁ ବଶୀଭୂତକରାଇବାରେ ପ୍ରୟୋଗ ନାରୀମାନଙ୍କର ମନରେ ଯୁଗେ ଯୁଗେ ପ୍ଲାବିତ ହୋଇ ଆସୁଅଛି ।

୩୯୮୯. ଏ ବଣ ମାସ କି ସେ ବଣ ମାସ
ଆଶିଣ ମାସରେ କୁମ୍ଭ ଉପାସ
ନେତ ପୂଜିବାକି ଛେତ ପୂଜିବା
ମାଗି ଯାଚି କରି ଓଷା ପୂଜିବା ।

ନେତ ବା କୁମ୍ଭ ଓଷା,ଦଶହରା ଦିନ ଉଚ୍ଛୁଆଁ ହୁଏ । ଅବିବାହିତା ଝିଅମାନେ ଭଲ ବର ପାଇବାପାଇଁ ଏବଂ ନୂଆ ବୋହୂମାନେ ନିର୍ବିଘ୍ନରେ ଘର ସଂସାର କରିବା ପାଇଁ ଏହି ଓଷା ପାଳନ କରିଥାନ୍ତି । ଉଚ୍ଛୁ ଆଁ ଦିନ ଓଷେଇତିମାନେ ଉଲ୍ଲିଖିତ ଗୀତଟି ଗାନକରି ସାଇରେ ବୁଲି ମାଗୁଣି କରନ୍ତି । ଏହାକୁ ମାଗୁଣି ଗୀତ ବୋଲାଯାଏ ।

୩୯୯୦. ଏ ବଣ ମାସ କି ସେ ବଣ ମାସ
ଆଶିଣ ମାସରେ ନେତ ଉପାସ

ଆସ ଆସ ପାର୍ବତୀ ଦେଉଳ୍କୁ ଓହ୍ଲାଇ
ସୁବର୍ଣ୍ଣର କୁମ୍ଭ ଗୋଟି ଥାପିଛି ଏଠାଇ ।

ନେତଓଷା ପାଳନ କଲାବେଳେ ଦେବୀଙ୍କୁ ମନ୍ଦିରରୁ ଗାଁ ଦାଣ୍ଡକୁ ବିଜେ ହେବାପାଇଁ ଏହି ପ୍ରକାର ଗୀତ ବୋଲା ଯଇଥାଏ । ଏହାକୁ 'ମାଳାଶ୍ରୀ ଗୀତ' କହନ୍ତି ।

୩୯୯୧. ଏ ବାଶେଳୀ ଇଷ୍ଟ ତୋର ବଂଶରେ ରହିବ
ଚଇତ୍ର ପୂର୍ଣ୍ଣିମା ଦିନ ପୂଜା ଯେ ପାଇବ
ଏହାକୁ ପୂଜିବ ଜନ୍ମେ ଜନ୍ମେ ଅବତରି
ଏହାର ନାମ ଅଟେ ଅଶ୍ୱିନୀ ବାଶେଳୀ ।

ଅଶ୍ୱିନୀ ବାଶେଳୀ ଅର୍ଥାତ୍ ବାଶେଳୀ ଘୋଡ଼ି କୈବର୍ତ୍ତ ସମ୍ପ୍ରଦାୟର ଇଷ୍ଟ ଦେବତା । ପ୍ରଳୟ ପୟୋଧି ଜଳରେ ସ୍ୱୟଂ ଭଗବାନଙ୍କର କର୍ଣ୍ଣମୂଳରୁ ଏମାନେ ଜାତ ହୋଇଥିବାରୁ ଏମାନଙ୍କୁ ଜାତିରେ କୈବର୍ତ୍ତ ବୋଲି କୁହାଯାଏ । ପ୍ରଳୟ ଜଳରେ ଏମାନେ ଜାତ ହେଲା ମାତ୍ରେ ମୀନ(=ମାଛ) ଏମାନଙ୍କୁ ଗିଲିଲା । ତେଣୁ ଭଗବାନଙ୍କର ଆଜ୍ଞା ଅନୁସାରେ ସେହିଦିନଠାରୁ କୈବର୍ତ୍ତ ଜାତି କୁଟୁମ୍ବ ସମସ୍ତେ ଜନ୍ମେ ଜନ୍ମେ ଏଇ ଜୀବ ଅର୍ଥାତ୍ ମୀନ ମାନଙ୍କୁ ମାରି ପ୍ରତିପାଳିତ ହେଲେ । ତେଣୁ କୈବର୍ତ୍ତକୂଳ ମତ୍ସ୍ୟ ଶିକାର କରି ଜୀବିକା ଅର୍ଜନକରନ୍ତି ।ଡିଙ୍ଗି ମୁଣ୍ଡରେ ଅଶ୍ୱ ମୁଣ୍ଡକୁ ସ୍ଥାପନା କରି ଅଶ୍ୱିନୀ ବାଶେଳୀ ପୂଜା କରାଯାଏ । ଏହାକୁ ପୂଜିଲେ ମନୁଷ୍ୟକୁ ବୈକୁଣ୍ଠରେ ସ୍ଥାନ ମିଳେ । ଅପୁତ୍ରିକକୁ ପୁତ୍ରଲାଭ ହୁଏ । ଅଶ୍ୱିନୀ ବାଶେଳୀ (ଈଶ୍ୱରଙ୍କ ଅବତାର ବା ପୟଗମ୍ବର ବା ଦୂତ ନୁହେଁ )ସ୍ୱୟଂ ଭଗବାନଙ୍କର ଅଙ୍ଗବିଶେଷ ବୋଲି କୈବିର୍ତ୍ତମାନେ ବିଶ୍ୱାସ କରନ୍ତି । ମାଛ ଯେହେତୁ କୈବର୍ତ୍ତ ମାନଙ୍କର ବଇରୀ ,ସେମାନେ ମାଛ ଧରି ଜୀବିକା ନିର୍ବାହ କରନ୍ତି ସତ ମାତ୍ର ମାଛ ଖାଆନ୍ତି ନାହିଁ । ତା ପରିବର୍ତ୍ତେ କଙ୍କଡ଼ା ଖାଆନ୍ତି ,ତେଣୁ ପ୍ରବାଦ ଅଛି ''କେଉଟ ଧରେ ମାଛ ଖାଏ କଙ୍କଡ଼ା ''।

୩୯୯୨. ଏଁ ,ଖଡ଼ା- ବଡ଼ି- ଥୋଡ଼ - - (ଏକ)
ତାପରେ ,ବଡ଼ି- ଖଡ଼ା- ଥୋଡ଼-(ଦୁଇ)
ତାପରେ, ଥୋଡ଼- ବଡ଼ି -ଖଡ଼ା-(ତିନି)
ତାପରେ ,ଖଡ଼ା-ଥୋଡ଼ -ବଡ଼ି -(ଚାରି)
ତାପରେ ,ଥୋଡ଼ -ଖଡ଼ା -ବଡ଼ି -(ପାଞ୍ଚ)
ତାପରେ,ବଡ଼ି -ଥୋଡ଼ -ଖଡ଼ା - (ଛଅ)

ଖଡ଼ା,ବଡ଼ି,ଓ ଥୋଡ଼ ଗୋଟିଏ ମାତ୍ର ତରକାରୀକୁ ଛଅ ପ୍ରକାର ବୁଲେଇ ବୁଲେଇ କୁହାଯିବାର ଏକ ନମୁନା ।

୩୯୯୩. ଏମନ୍ତ ଦ୍ୱାଦଶ ଅକ୍ଷର
ଜପିବ ଶଏ ଆଠବାର ।

'' ଓଁ ନମୋ ଭଗବତେ ବାସୁ ଦେବାୟ ' ଏହି ବାରଟି ଅ'କ୍ଷରକୁ ଶହେ ଆଠଥର ଜପ କରିବ । ଭଗବାନ ଶ୍ରୀକୃଷ୍ଣଙ୍କୁ ନମସ୍କାର ।

୩୯୯୪. ଏ ପୁତ୍ର ଦାରା ବନ୍ଧୁ ସଙ୍ଗ । ଯେସନ ସମୁଦ୍ର ତରଙ୍ଗ । (ଭାଗବତ)

୩୯୯୫. ଏ ବାଟେ ଖମଣ ସେ ବାଟେ ଖମଣ
ମଝିରେ ଯାଉଛି ଢଡ଼ି
ଢଡ଼ିର ମାଛକୁ ଏ ଫୁଲ ବଡ଼ି
ନ' ପାରେ ତୋତେ ଛାଡ଼ି
ବାଲିଫୁଲ ମ'ର ବଦଳି କୋଳି
ନିଶ୍ଚେ ତୋତେ ରସି ଗଲି ।

୩୯୯୬. ଏବେ ନୀଳାଚଳେ ବିଜେ ଜଗନ୍ନାଥ
ତେବେ କିମ୍ପା କହ ଉତ୍କଳ ଅନାଥ ।
ନୀଳାଚଳ ନାଥ ପ୍ରଭୁ ଶ୍ରୀନିବାସ
ପୁରାଇବେ ଆଶା ରଖ ଏ ବିଶ୍ୱାସ । - ଉତ୍କଳମଣି ଗୋପବଂଧୁ

୩୯୯୭. ଏବେ ପାଇଗଲ ନୂଆ ସାଙ୍ଗକୁ
ଫିଙ୍ଗି ଦେଇ କଳା କେନ୍ଦୁକୁ ପାସୋରି ଦେଲ ଆମ୍ବକୁ ।

୩୯୯୮. ଏବାଟ କେଉ ସାଇକି
ଟେକାକାଟି ବାଟ ଦେବି ବନ୍ଧାଇ
ମୋ କହ ସଜନୀ
ଏବାଟ ତଳ ସାହିକି ।

୩୯୯୯. ଏ ବାଟେ କିଏ ଯାଉଛି
ତାରେ ନାରେ ଫୁଲ ଦିକରା ଅଛି
ଭଙ୍ଗୀରୁ ଜଣା ଯାଉଛି ।

୪୦୦୦. ଏମିତି ଗଲାଣି କାଳକ
କାଉ ନେଇଗଲା ପାଳକ ।

ଏପରି ଅବସ୍ଥାରେ ଜୀବନର ଦୀର୍ଘକାଳ ଅତୀତ ହେବା ।

୪୦୦୧. ଏମନ୍ତ ମାରି ମାରି ଗଲା କାଳକ,ବାକି ରହିଲା ପାଳକ ।

ଏମିତି ଜୀବନର ଅଧିକାଂଶ ସମୟ କଟିଲାଣି ।ବାକି ସମୟତକ ବିତିଯିବ । ଅଯଥା ବ୍ୟସ୍ତ ବା ବିଷର୍ଣ୍ଣ ହେବାରେ ଲାଭ କିଛି ନାହିଁ ।

୪୦୦୨. ଏବୁକୁର ଶୀତଟା ରଖି ହେଉ ନାହିଁ ,
ମୁଁ କରତଳେ ଆଛାଦିବି କେତେ ?

୪୦୦୩. ଏବି ଜଣା ସେ ବି ଜଣା
କିଛିତ ନାହିଁ ବାକି,

ସଉତୁଣୀ ନେଲା    ସୁନା ଗହଣା
ମତେ ଦେଲେ ଫାଙ୍କି ।

ପ୍ରଥମ ସ୍ତ୍ରୀ ଯେତେ କରିତ୍‌କର୍ମା ହେଉନା କାହିଁକି  ସଉତୁଣୀ ଆସିଲେ ,ସ୍ୱାମୀ ପ୍ରଥମ ସ୍ତ୍ରୀକୁ ଉପେକ୍ଷିତ କରି ତାର ସମସ୍ତ ସ୍ନେହ ,ସରାଗ ଓ ପ୍ରୀତି ସଉତୁଣୀ ଉପରେ ଢାଳି ଦିଅନ୍ତି । ଏଥିପାଇଁ ସର୍ବଗୁଣ ସମ୍ପନ୍ନା ପ୍ରଥମ ସ୍ତ୍ରୀର ଅନୁଶୋଚନା ।

୪୦୦୪.    ଏବେ ବେକରେ ପଡ଼ିଛି ଢୋଲ,
ଭଜୁଥାରେ ଭାଇ ହରିବୋଲ ।

୪୦୦୫.    *ଏକାର୍ଥରେ* - କାନ୍ଧରେ ଜୁଆଳି ପଡ଼ିବା  ।

ସଂସାରିକ ଦାୟିତ୍ୱ ପଡ଼ିଲେ ,ସେଇ ଦାୟିତ୍ୱକୁ ତୁଲାଇବା ପାଇଁ ମନୁଷ୍ୟକୁ ଫୁରୁସତ ମିଳେନି । ଏପରିକି ହରିଙ୍କ ନାମ ନେବାକୁ ମଧ ସମୟ ନଥାଏ ।ଅନ୍ୟ ଅର୍ଥରେ- ସାଂସାରିକ ଦାୟିତ୍ୱ ବହନ କରୁ ନଥିବା ଫୁଲାଫାଙ୍କିଆ ଅବିବାହିତ ବ୍ୟକ୍ତିକୁ ବିବାହ କରାଇ ସଂସାରିକ ଜୀବନ ମଧ୍ୟକୁ ଠେଲି ଦେଲେ ସେ ତ୍ରାହି ତ୍ରାହି ଡ଼ାକେ ।

୪୦୦୬.    ଏ ବଡ଼ ଲୋକଙ୍କର ମତ, ଅଳପ ଲୋକେ ବିପରୀତ ।

ବଡ଼ବଡ଼ ଲୋକ କଲେବୋଲି ସାଧାରଣ ଲୋକ ତାହାକୁ ଅନୁସରଣକଲେ ଫଳ ଓଲଟା ହୁଏ ।

୪୦୦୭.    ଏ ବାଆକୁ ଥର ଥର ଓଶସ୍ତ ପତର
ତା ସଙ୍ଗେ ମଇତର କଦଳୀ ପତର
ଶାଶୁ ସାଙ୍ଗ ବୋହୂ ଯେ ମକର (=ଖଣ୍ଡା କୁମ୍ଭାର)
ନଣନ୍ଦ ଧାନ ଫୁଲ ।        - କୃଷକ ବୋଲି

୪୦୦୮.    ଏ' ବାଙ୍କୁନାଳ ପରେ ଅଭେଦରେ ଅଛି
ବନମାଳୀ ନାମ ବସ ହୃଦେ ଘୋଷି
ବେଳ ଥାଉଁ ବିଚାର କର ତୁ ବହନ
ବେଳ ବୁଡ଼ିଯିବ ମୂଡରେ
ମନାଇଁ ନ ଚିହ୍ନିଲୁ ମନ । -  ଶଗଡ଼ିଆ  ଡମାଳି

୪୦୦୯.    ଏ ବୋପା ମଲା , ମା' ଘଇତା ଘିଚି କଲା
ଭାତ ଗୁଣ୍ଡିଏ ଦିଅହେ ସାଆଁନ୍ତାଣିଏଁ ।
ବାଡ଼ିଆଡ଼େ କୁହ କିଲୋ ଦାଣ୍ଡ ଆଡ଼େ କୁହ  .
କିଣି ଦେବି  ଦରପଣ ପିଲେରେ
ଦେଖୁଥିବା ମୁହଁ କି ଚାହୁଁଥିବା ମୁହଁ  ।

ଯାଇଥିଲି ମାମୁଁ ଘର
ଢୋଲ ଖଣ୍ଡି ନେଲା ଚୋର
ସାଆନ୍ତେ ହେ - ଚାରିଦିନ ଉପାସିଆ
କାହିଁକି ଡ଼କରା ମୋତେ ସାଆନ୍ତେ ହେ
ବଣିଆ -ପୋକ
ସାହୁଘର ଲୋକ -ହାଉଁ ( =ହିଂସ୍ର ଜନ୍ତୁ ଖାଇବାପାଇଁ)।

କଥିତ ଅଛି ୧୮୯୬ ମସିହା ଦୁର୍ଭିକ୍ଷ ସମୟରେ ଗୋଟିଏ ଦୁର୍ଭିକ୍ଷ ପ୍ରପୀଡ଼ିତ ଅସହାୟ ହରିଜନ ପିଲାଟିର ବାପା ମରିଯିବାରୁ ମାଆ ଆଉ କାହାସାଙ୍ଗରେ ଚାଲିଗଲା , ଜମି ଡ଼ିହ ବାଡ଼ି ଅନ୍ୟର କବଳିତ ହେଲା । ତା ଜୀବନର କାହାଣୀ ନିଜେ ରଚନା କରି ଏହି ପଦାବଳିକୁ ବୋଲି ଗାଁ ଗାଁ ଭିକ୍ଷା ମାଗି ବୁଲୁଥିଲା । ସୁନ୍ଦରୀସ୍ତ୍ରୀକୁ ଛାଡ଼ି ଯେଉଁ ପୁରୁଷ ଅସୁନ୍ଦର ପଛରେପଡ଼େ ତାକୁ ମେଣ୍ଢାବୋଲି ଆକ୍ଷାୟିତ କରାଯାଇଛି ।

୪୦୧୦. ଏମିତି ଦେଖିନି ବାପର ବାପେ (= ଜେଜ ବାପା)
ଝିଅ ହୋଇ ସେ ବଳଦ ଚଢେ (=ଚଢିବା)।

୪୦୧୧. ଏମିତି ଅପଦାର୍ଥ ଭଲ ମଣିଷ ଖାଏ ,
ପାଖାଳ ଭାତରେ ଘିଅ ଭାସୁ ଥାଏ ।

୪୦୧୨. *ଏକାର୍ଥରେ* - ତତଲା ଭାତରେ ଲୁଣ ଲୁଟେନି ,
ପାଖାଳ ଭାତରେ ଘିଅ ।

୪୦୧୩. -ଏଜନ- ପଖାଳ ଭାତରେ ଘିଅ ନଷ୍ଟ ।
ବାପଘରେ ଝିଅ ନଷ୍ଟ ।

୪୦୧୪. -*ଏଜନ* - କିଶରେ ନାହିଁ କି ? ପଖାଳ ଭାତରେ ଘି',
କାହାର ନାମ କି ? ନଳିତା ଶାଗରେ ଘି' ।
(ବାଇଗଣ ପୋଡ଼ାରେ ଘି')

୪୦୧୫. ଏମିତି କଥାକୁ ମୁହଁରେ ପାଉଁସ
(ମୁଁ) ଖାଏ କି କାହାର ରନ୍ଧା ମାଉଁସ ।

୪୦୧୬. ତୁଣରେ (=ତରକାରୀ) ନ ଦିଏ ଲୁଣ ,
ଘର କେଉଁଠି ? ନା ଅମାନନ(= ଅବମାନନା)।

୪୦୧୭. ଏବେ (ଏତେ) ବୁଢା,
ତଥାପି (ତେବେବି) ଅଛି ରସଗୁଡ଼ା ।

୪୦୧୮. *ଏକାର୍ଥରେ* -ବୁଢା ନୁହେଁ ରସଗୁଡ଼ା ।

୪୦୧୯. -ଏଚନ - ବୁଢା ତ ରସର ଗୁଣ୍ଡା/ଗୁନ୍ଦା(=ଗେଣ୍ଡୁଫୁଲ )।

୪୦୨୦. ଏମିତି କୁଟୁମ୍ବ କିଏବା ପାଏ
କଣ୍ଡା କାଢି ଥୋଇ ଲାଞ୍ଜ ଖଣ୍ଡି ଖାଏ ।

୪୦୨୧. ଏ ମହାପ୍ରସାଦ ସେବନେ । କରିବ ନାହିଁ ଗର୍ବ ମନେ ।।
ପାଇବା ମାତ୍ରକେ ସେବନ । ମହାପ୍ରସାଦର ବିଧାନ ।।
ଭକ୍ତିରେ ପ୍ରସାଦ ସେବିଲେ । ନାଶ ହୁଅଇ ରୋଗ ହେଲେ ।।
ଦାରିଦ୍ର୍ୟ ଦୋଷ ହୁଏ ନାଶ । ଆୟୁ ଯେ ବଢଇ ବିଶେଷ ।।
ନାହିଁ ଏ ପ୍ରସାଦର ତୁଲେ । ପବିତ୍ର ବସ୍ତୁ ମହୀତଳେ ।।

## ଶିଶୁ ମନୋରଞ୍ଜନ ପଦାବଳୀ

୪୦୨୨. ଏତେ ଦିନେ କହିଲୁ କଥା
କାହିଁଥିଲୁ ଲୋ କଲମି ଲତା ।
ଏତେଦିନ ବଣରେ ଥିଲି
ଯେଉଁ ବଣରେ ସୁନା ମିରିଗ
ଚୁଡ଼ା ଦହି ଖାଇ ସରଦ ।
ତୁମେ ନିଅ ବଇଁଶୀ ହାତେ
ମୁଁ ନଉଛି କଳସୀ କାଖେ
ଚାଲିଯିବା ରାଜ-ପଥେ ।
ପୁଅର ମା ଗହଣା ଗୁନ୍ଥେ
ପୁଅଟି ନାଚେ ତା' ଥୋଇଥେ ।

୪୦୨୩. ଏ ଭାଇ ତୁମେ
କଟକ ଯାଅ
ତିନି ଟଙ୍କା ଅଣେ
ଦରମା ପାଅ ।
ମୋ ଭାଇ ଗଳାରେ
ପୁଞ୍ଛି ମାଳା
ବୋହୂ ବରିବେ
ଚନ୍ଦ୍ର କଳା ।

ଭାଇ ହେ ତମ
ଗୋଡ଼ ଧରୁଛି
ବୋହୂ ଆଣି ଦିଅ
ଖେଳିବୁ ପୁଚି ।

୪୦୨୪. ଏ ଭାଇ ଚୂଡ଼ା ଭଜା ଖାଇ,
ଭାକୁର ମାଛର ମୁଣ୍ଡ,
ହଜାରେ ଟଙ୍କାରେ ବୋହୂ ଆଣିଛି
ଖାନ୍ଦିଆ ନାକରେ ଚଣ୍ଡ ।
ଖେନ୍ଦୀ ହଉ କନ୍ଦି ହଉ
ସବୁ ପାରେ ସହି
ଝମକ କଟା ମୁହଁ ନେଫେଡ଼ା
ଏଇ ଜ୍ୱଳାରେ ମରି ।

୪୦୨୫. ଏ ମାଉସୀ ବଣଗାଁ ବାସୀ
ବଣ ଭିତରେ ଘର,
ଅକାଳେ ସକାଳେ କୁହନି ତ
ଖଇ ମୁଆଁଟା ଧର ।
କିଏ ମାଉସୀ କିଏ ପିଉସୀ
କାହିଁ ବୃନ୍ଦାବନ,
ଏତେ ଦିନେ ଜାଣିଲେ ଯେ
'ମାଆ' ବଡ଼ ଧନ ।
ମା'କୁ ଦେଲି ସରୁପାଟ,
ବାପାକୁ ଦେଲି ନୀଳ ମାଠ ।
ଏକା ଗଲି ଗୌଡ଼ ,
ଆଣିଲି ସୁନା ମଉଡ଼ ,
ବାହା ଦେବି ଭାଇକି
ଫୁଲ ଚନ୍ଦନ ଦେଇ ।

ଘଡ଼ିରେ ତ ତେଲ ନାହିଁ
ନାଚିବି ଥେଇ ଥେଇ ।
ଇଆଡ଼େ ବାଇଗଣ ଭଜା
ସିଆଡ଼େ ଦେଖ ଝୋଳ,
ନୀଚ ଗୋ କଳା ବୋହୂ
ବାଜୁଛି ମାଦଳ ।

୪୦୨୬. ଏ ପାରେ ପ୍ରାଚୀ ସେ ପାରେ ପ୍ରାଚୀ
ମଝିରେ ଯେ ଚର,
ତା ଭିତରେ ବସିଅଛି
ଶିବ ସଦାଗର ।
ଶିବଗଲା ଶ୍ୱଶୁର ଘର
ବସିତେ ଦେଲେ ପିଢା ।
ଜଳଖିଆ ଖାଇତେ ଦେଲେ
ଶାଳି ଧାନର ଚୁଡ଼ା ।
ଶାଳି ଧାନର ଚୁଡ଼ା ନୁହେଁରେ
ଭୁତା ଧାନର ଖଇ
ମୋଟା ମୋଟା ବାଂଝ କଦଳୀ
କାକ ବାଂଝୀର ଦହି ।

୪୦୨୭. ଏ ଭାଇ ଥମ୍ ଥମ୍
ଓଲୁ ବଣରେ ଯିଏ ଅଛି,
ସିଏ ବା କି କମ ।

୪୦୨୮. ଏ ଭାଗବତ ଧର୍ମ -କଥା
ହେଲେ ଖଣ୍ଡଇ ଭବ -ବ୍ୟଥା । - ଚନ୍ଦ୍ରମୋହନ ମହାରଣା

୪୦୨୯. ଏମିତି ଦରବ ଛାଡ଼ି,
ମାଳା ଜପେ କେଉଁ ଭେଣ୍ଡାର ଭେଡ଼ି ( = ମେଣ୍ଢା) ।

୪୦୩୦. ଏମିତି କରିଛ ବିଧି
ଦୁଧ ପିଇବେ କୃଷ୍ଣ ଦାସେ, କଉଡ଼ିଦେବ ନିଧି ।

୪୦୩୧. ଏମିତିକା ବୋହୂ ଯାହା ଘରକୁ,
ଘୋଷାଡ଼ି ଆଣେ ସେ ବିପାକ ସବୁ ।
ଅଯୋଗ୍ୟା ତଥା କଳିହୁଡ଼ି ବୋହୂକୁ କଟାକ୍ଷ ।

୪୦୩୨. ଏ ମନ ଭାବୁ ଥାଇ ଯାହା
କାଳେ ପ୍ରାପତ ହୁଏ ତାହା । - ଜଗନ୍ନାଥ ଭାଗବତ

୪୦୩୩. ଏ ମାୟା ସଂସାର ମାୟା ଖେଳଘର
କେହି କାହାର ନୁହନ୍ତି
ଯେଉଁ ଭାରିଯାକୁ ବିଭା ହୋଇ ଥାଇ
ସେ ଲୋଡ଼େ ନବୀନ ପତି ।

୪୦୩୪. ଏ ମୋର ଦୁହିତା ହୋଇବ ।
ଏଣେ ବଞ୍ଚିଲେ ସର୍ବ ଜୀବ ॥
ଜୀବର ଜୀବଦାତା ଯେଣୁ ।
ଏହାର ପୃଥୀ ନାମ ତେଣୁ ॥ - ଜଗନ୍ନାଥ ଭାଗବତ

୪୦୩୫. ଏମିତି ଦିନ ବି ଯାଏ ,
ନଡ଼ା ଦେଇ ଯେ ଯୁଡ଼ା ପାରେ
ସିଏକି ଘଇତା ପାଏ ।

୪୦୩୬. ଏମିତି କଲ ଶେଷରେ,
ରହିତେ ନ ଦେଲ ଦେଶରେ ।

୪୦୩୭. ଏ ମୌଜାରେ ଯେତେ ଚୋର ,
ସମସ୍ତେ ମୋ ପ୍ରିୟବର ।
ଯେତେ ଯାଗା କାରବାର,
ଆମେ ତାର ଭାଗିଦାର ।

୪୦୩୮. ଏମିତି ସୁନ୍ଦର ମୁହଁ ନଚାହିଁ ,ଯାର ଜାତି କୁଳ ଠିକ୍ ନାହିଁ ।

୪୦୩୯. ଏମିତି ସୁନ୍ଦରୀର ଗବାବର ,ଦୁଃଖରେ ପ୍ରାଣ ଜର-ଜର ।

୪୦୪୦. ଏମିତି ଚଞ୍ଚଳୀ ଏ ଘରେଥିଲା
ବୁଢା ତୁଚ୍ଛା ଖାଇ ହାଟକୁ ଗଲା ।

ଅଳସେଇ ସ୍ତ୍ରୀର ମନ୍ଥରତା ଯୋଗୁଁ ବୁଢା ଭାତଲୁଣ ଖାଇଲେ ବି ନିଜକର୍ମର କ୍ଷିପ୍ରତା ଦେଖାଇହେବା ପ୍ରତି କଟାକ୍ଷ । ସ୍ତ୍ରୀର ଅଳସୁଆମି ପାଇଁ ।

୪୦୪୧. ଏମନ୍ତ ମଜାରେ - କହି ଯାଉଥିବ
କେହି ନ କହିବେ ଝୁଟ୍ (= ମିଛ) ।
ଏମନ୍ତ ସଜରେ- ବସି ଯାଇଥିବ
କେହି ନ କହିବେ ଉଠ୍ ।

ଏମନ୍ତ ମଜଗରେ (=ବାଗରେ )-ଚାଲି ଯାଉଥିବ
କେହି ନକହିବେ ଝୁଣ୍ଟ ।

ଯିବା, ଆସିବା,ବସିବା ,କଥା କହିବା ପ୍ରଭୃତି ସବୁଥିରେ ବାଗସାଗ ଆବଶ୍ୟକ , ନହେଲେ ଲୋକେ ଖୁଣ୍ଟିବେ ।

୪୦୪୨. ଏମଡ଼ା ମାଉଁସ କରୁଅଛି ବଡ଼ ବାସ
କି ରୂପେ ବିଲୁଆ କରୁଛୁ ତୁ ଗ୍ରାସ ।

୪୦୪୩. ଏମିତିକା ଦିଅଁ ପରା ନାହିଁ ଆଉ କେଉଠି
ଯା ମହାପ୍ରସାଦ ତଳେ ପଡ଼ିଲେ
ଆନନ୍ଦରେ ଖାଉ ଥାଆନ୍ତି ସାଉଁଟି ।

ଶ୍ରୀଜଗନ୍ନାଥଙ୍କ ଠାରେ ଯେଉଁ ଭୋଗ ଲାଗେ ତାକୁ ମହାପ୍ରସାଦ କହନ୍ତି । ଆଉ କୌଣସି ଦେବା ଦେବୀ ବା ଠାକୁରଙ୍କ ଭୋଗ ମହାପ୍ରସାଦ ନାମରେ ଅଭିହିତ ନୁହେଁ । ମହାପ୍ରସାଦର ଛୁଆଁ ଅଛୁଆଁ ନାହିଁ ,ଉଚ୍ଛିଷ୍ଟ ବା ଅଇଁଠା ନାହିଁ । ଭୂଇଁରେ ପଡ଼ିଲେବି ମହାପ୍ରସାଦ । ମହାପ୍ରସାଦକୁ ଲୋକମାନେ ଭୂଇଁରୁ ସାଉଁଟି ଆନନ୍ଦରେ ସେବା କରନ୍ତି । ଏଥିରେ ଧୂଳି ,ମଳି, କିଛି ନାହିଁ ।

୪୦୪୪. ଏ ମୁଣ୍ଡ ପୋଡ଼ିଲେ ଯୋଗୀ (= ଭିକାରୀ)
ସେ ମୁଣ୍ଡକୁ ଯାଏ ।
ସେ ମୁଣ୍ଡ ପୋଡ଼ିଲେ ଯୋଗୀ
ଶିଂଘାନାଦ ବାଏ ।

ଭିକ୍ଷା ଉପରେ ନିର୍ଭରକରି ଚଳୁଥିବା ବ୍ୟକ୍ତି ବେପରୁଆ ଗାଁର ଏ ପାଖ ପୋଡ଼ିଗଲେ ସେ ଭିକ୍ଷା ଲାଗି ଅନ୍ୟ ପାଖକୁ ଯାଏ । ପୁଣି ସେପାଖ ପୋଡ଼ିଗଲେ ସେ ଆନନ୍ଦରେ ଗୀତ ଗାଇ ଗାଇ ବୁଲୁଥାଏ ।

୪୦୪୫. ଏମିତି କହୁ
ଲୁଣ ଘେନି ଭାତ କେମିତି ଖାଉ ?

ବିନା ତରକାରୀରେ ଭାତଲୁଣ ଦେଇ ଖାଇବା ବ୍ୟକ୍ତିକୁ ଥିଲାବାଲା 'କେମିତି ଖାଉ ' ବୋଲି ତାଚ୍ଛଲ୍ୟ କରି କହିବା ଅର୍ଥ ତା ମର୍ଯ୍ୟାଦା ଉପରେ ଆଘାତ କରିବା ।

୪୦୪୬. ଏମିତି ଜଣେ
କାଲି ଦେଖି ଥିଲି କବାଟ କୋଣେ
ଆଜି ଦେଖିଲି ବାଉଁଶ ବଣେ ।
( ଚରିତ୍ରର ଅଧୋଗତି ପ୍ରତି ଆକ୍ଷେପ)

୪୦୪୭. ଏମନ୍ତ ବିଚାରୁ ବିଚାରୁ
ଆସି ମିଳିଲା ବୋଝେ ସାରୁ;

ତାକୁ ରାନ୍ଧିଲା ଯିତ୍ନ କରି
ଖାଇଲି ତାହା ପେଟ ଭରି ।

୪୦୪୮. ଏସା କରେଙ୍ଗେ ,ତେସା କରେଙ୍ଗେ
ସିପାହୀ ଦେଖିଲେ ,ଶୋଇ ପଡ଼େଙ୍ଗେ ।

ମୁହଁ ଟାଣ କିନ୍ତୁ କର୍ମଭୀରୁ ପୁରୁଷ ପ୍ରତି କଟାକ୍ଷ ।

୪୦୪୯. *ଏକାର୍ଥରେ*- ଟାଣ କରୁଥାଏ ମାଇପ ଆଗେ
ବୁଦ୍ଧି ନ ଆସଇ ପାଇକ ଆଗେ ।

୪୦୫୦. ଏରୁଣ୍ଡି (=ଦୁଆର ବନ୍ଧ) ତଳିଆ କାଦ (=କାଦୁଅ)
ଘରୁ ବାହାରି ପଡ଼ ଅଦିନ ଚାନ୍ଦ
ବାଜିବ ଦୁଆର ବନ୍ଧ ।

୪୦୫୧. ଏରେଣ୍ଡା (=ପିପ୍ଳୀ) କେରେଣ୍ଡା (=ଖଟା କରନ୍ଦା) କୋଳି
କଉଡ଼ି (=ପଇସା) ନ ଦେଲେ ନ ଦେବି କାଳି(=ଉଧାର)
ଶାଶୁ ଘରେ ଦେବେ ଗାଳି ।

ପସାରୁଣୀ ବୋହୂ ସଉଦା ଦେଇ ନଗଦ ପଇସା ନେଉଛି । ଉଧାରଦେଲେ ଶାଶୁଘର ଗାଳି ଦେବେ ।

୪୦୫୨. ଏରଣ୍ଡ (= ଜଡ଼ା) ବି ଗଛ ,ପୁଣ୍ଟି ବି ମାଛ ।

ପୁଣ୍ଟି ମାଛକୁ ଅତ୍ୟନ୍ତ ହେୟ କରାଯାଇ ତାକୁ ଏରଣ୍ଡ ସହିତ ତୁଳନା କରାଯାଇଛି । ଯେପରି କୁହାଯାଏ -'ଅସରପା କ'ଣ ଚଢେଇ ?''

୪୦୫୩. ଏକାବୋଳେ ଭାକୁଡ଼
ଚୁନା ପୁଣ୍ଟି ଫୋପାଡ଼ ।

ଏକାଥରକେ ବଡ଼ହେବା ବା ଅତ୍ୟଧିକ ଲାଭର ଆଶା କିଛି ମାତ୍ରାରେ ଅସ୍ୱାଭାବିକ ହେଲେ ମଧ୍ୟ ଏହି ମାନସିକତା ସମାଲୋଚନାକୁ ଆହ୍ୱାନ କରେ ତାହା ଏହି ପ୍ରବାଦଟିରେ ପରିସ୍ଫୁଟିତ ।

୪୦୫୪. ଏରୁଣ୍ଡି ବନ୍ଧରେ ଆଗ ବୋହୂ ନଣନ୍ଦ ବସିଲେ ,
ମହୁ ଯେ ଚଖାଇ ତାକୁ ନଣନ୍ଦ ଉଠ ଗୋ ବୋଇଲେ ;
ଉଠ ଉଠ ନଣନ୍ଦ ଗୋ ଛାଡ଼ିଦିଅ ବାଟ
ତୁମ୍ଭ ପାଇଁ ଆଣିଅଛି ଚିତ୍ରମେଘି ପାଟ ।

ପହିଲି ପାଳି ବୋହୂ ଆସିଲା ମାତ୍ରେ ଏରୁଣ୍ଡି ବନ୍ଧରେ ତାକୁ ବସାଇ ତା ପାଟିରେ ମହୁ ଦିଆଯାଏ । ତାହେଲେ ବୋହୂର କଥା ମୁହଁରୁ ମଧୁର ହେବ ଏବଂ ଶାଶୁ ବା ନଣନ୍ଦ କାହାକୁ କର୍କଶ କଥା କହିବ ନାହିଁ ।

୪୦୫୫. ଏ ରଙ୍ଗ ରହିବ ନାହିଁ ।

ବାହାଦୁରୀ ବାକ୍ୟଫୁର୍ତ୍ତୀ ମାରୁଥିବା ବ୍ୟକ୍ତିକୁ କଟାକ୍ଷକରି ଏହା କୁହାଯାଏ । ଅର୍ଥାତ୍ ତୋର ଏହି ବାହାଦୁରୀ ସଦାବେଳେ /ବେଶୀଦିନ ରହିବ ନାହିଁ ।

୪୦୫୬. ଏ ରୂପେ ଭେଦ ଭାବ ବହି ।
ଏକଇ ରସ ନା ନା ଥାଇ । - ଜଗନ୍ନାଥ ଭାଗବତ

୪୦୫୭. ଏରଣ୍ଡୋପି ଦ୍ରୁମାୟତେ ବା ଏରୁଡ୍ରୋପି ଦ୍ରୁମାୟତେ ।

୪୦୫୮. ଏ ଶାଗ ,ଶାଗ ବୋଲି ଡ଼ାକିଗଲା ବୁଢୀ,
ଶାଗ ମୁଁ ତୋଳି ଗଲି କଇଁଚି କାକୁଡ଼ି,
ଶାଗତ ନେଉଟିଆ ମଦରଙ୍ଗାକଢି
ହେଙ୍ଗୁତ ମରିଚରେ ଶାଗ ତ ସୁଆଦ
ରାନ୍ଧୁଣୀ ଅଧା ବୁଢୀ ।

ସବୁରି ଘରେ ଶାଗ,ଭାତ,ଡ଼ାଲି, ତରକାରୀ ପରି ଏକ ନିଶ୍ଚିତ ଖାଦ୍ୟ ପଦାର୍ଥ । ଶାଗ ନଥିଲେ ଘରଣୀ ଗୃହକର୍ତ୍ତାଙ୍କୁ ସୂଚିତ କରାଇଥାଏ । ସେ ବାଡ଼ିରୁ ବିଭିନ୍ନ ପ୍ରକାର ଶାଗ ତୋଳି ଆଣେ । ଘରଣୀ ତାକୁ ସୁଆଦିଆ କରି ରାନ୍ଧେ । ଶାଗର ଆଗ୍ରହ ଓ ସ୍ୱାଦିଷ୍ଟତା ଏଥିରେ ପ୍ରକାଶ ପାଇଛି।

୪୦୫୯. ଏ ଶିବ ,ତାଏଟ୍ କୁନେ (=କଣରେ) ଥିବ
ଚୁଟିଆ ମୂଷା ଚାବି ଦେଲେ (=କାମୁଡ଼ି ଦେଲେ )ବାହାରି ପଡ଼ିବ ।

୪୦୬୦. ଏ ସନ (=ବର୍ଷ) ମାଗୁଣି (=ପୂର୍ବେ ଗଡ଼ଜାତ ଓ ଜମିଦାରୀ ଅଞ୍ଚଳରେ ବିବାହାଦି ଉତ୍ସବରେ ପ୍ରଜାମାନଙ୍କ ଠାରୁ ମାଗୁଣି ଆଦାୟ କରାଯାଉଥିଲା )
ଆଗତ ସନକୁ କର ( ଏ ବର୍ଷ ଯେଉଁ ପ୍ରଜାମାନେ ମାଗୁଣି ଦେଲେ ନାହିଁ ତହିଁ ଆରବର୍ଷ 'ମାଗୁଣି' କର ଆକାରରେ ଆଦାୟ ହେଉଥିଲା )

୪୦୬୧. ଏସାକୁ (=ଯେସାକୁ) ତେଷା । -ଯେଉଁ କର୍ମକୁ ଯେଉଁ ପ୍ରତିକାର ।

୪୦୬୨. ସି ଅକ୍ଷର ବିବର୍ଜିତ ,ଚିତା ପଇତାଦି ଶୋଭିତ ।

ବ୍ରାହ୍ମଣର ପୂର୍ବ ଆଦର୍ଶ -' ବ୍ରହ୍ମ ଜାନାତି ଇତି ବ୍ରହ୍ମଣ ' ଆଉ ନାହିଁ । ବର୍ତ୍ତମାନ ବ୍ରାହ୍ମଣର ବ୍ୟବସାୟିକ ମନୋବୃତ୍ତି ପାଇଁ ଚିତା ପଇତା ହିଁ କେବଳ ତାର ଶୋଭାବର୍ଦ୍ଧକ ହୋଇ ରହିଛି ।

୪୦୬୩. ଏଇଲେ କ'ଣ ବିଶ୍ରାମ ? ଶ୍ରମ ପରେ ସିନା ବିଶ୍ରାମ ।

୪୦୬୪. ଏ ଷଡ଼ ରସେ ଯେ ପୁଅ ଖାଏ ,
ଭୋକେ ମରି ଟାକର ଖାଏ ( =ଅପମାନିତହୁଏ) ।

୪୦୬୫. ଏ ସମାଜ ଗଢି ଅଛୁ ହାତେ
ଦରିଦ୍ର ମରଇ ଧନୀକ ପ୍ରହାରେ
ବଳହୀନ ସବଳ ଆଘାତେ । - ପଣ୍ଡିତ ଗୋଦାବରୀଶ

୪୦୬୬. ଏ ସଖା ପାଖରେ ସେ ସଖା ରହେ
ଆଖିରୁ ଲୁହ ଝର ଝର ବହେ ।

ବିରହ ବା ବିଚ୍ଛେଦରେ ଲୁହ ବୋହିବା ସ୍ୱଭାବିକ ମାତ୍ର ବନ୍ଧୁଙ୍କ ପାଇଁ ଲୋକ ଦେଖାଣିଆ ତଥାକଥିତ ଭାବବିହ୍ୱଳ ହୋଇ କୁମ୍ଭୀର କାନ୍ଦଣାକରିବା ସ୍ୱାର୍ଥ ସିଦ୍ଧିର ଆଭାସମାତ୍ର ।

୪୦୬୭. ଏ ଶୂନ୍ୟ ନିଜେ ନିରଞ୍ଜନ । ଅନାଦି ଚୈତନ୍ୟ ନିଦାନ ।।
ଶୂନ୍ୟରୁ ସବୁ ହୁଏ ଜାତ । ଶେଷରେ ସର୍ବେ ଶୂନ୍ୟେ ହତ ।।
ସେଶୂନ୍ୟ ଅଟଇ ଅନନ୍ତ । ସାଧନା ବଳେ ମିଳେ ଅନ୍ତ ।।
ଏକର୍ମ ଭାବ ଜାଣେ ମନେ । କାମନା ବାସନା ପୂରଣେ ।।
ତନ୍ମାତ୍ରା ଅହଂକାର ଛଳେ ।ଶୂନ୍ୟକୁ ପାଶୋରନ୍ତି ହେଳେ ।।
ମଜ୍ଜି ରହିବ ଶୂନ୍ୟ ଅଙ୍ଗେ । ନ ବୁଡ଼ି ମାୟା ମୋହ ରଙ୍ଗେ ।।

୪୦୬୮. ଏ ସାହି କାଚିଲି ସେ ସାହି କାଚିଲି
ବୋଉ ଘରେ କଲି ବସା (=ଘର)।
ମଞ୍ଜିଆ ମଞ୍ଜିଆ ଝଟା ଚାରି ଫେଡ଼ା
ତୋରାଣି ପିଆକୁ ବସା (= ବସିବାକୁ କହିବା)।

୪୦୬୯. ଏହା ଉତ୍ତାରୁ ଖାଇବ କିଶ
ବୁଢୀମା ନାହିଁ ଜଳଦି ଖସ ।

ପରିବାରରେ ବୁଢା ବୁଢୀମାନଙ୍କ ଉପସ୍ଥିତି ପରିବାର ସଦସ୍ୟମାନଙ୍କ ପାଇଁ ଶୁଭଙ୍କର, କାରଣ ସେମାନଙ୍କର ସଂସାରିକ ଅଭିଜ୍ଞତା ପରିବାର ବର୍ଗଙ୍କପାଇଁ ପଥ ପ୍ରଦର୍ଶକ ହୋଇଥାଏ ।

୪୦୭୦. ଏହା ଉପରେ ଯେତେ ଜନ । ଗ୍ରାମ ଔଷଧି ଗିରିବନ ।
ସମୁଦ୍ର ଆଦି ଜଳସ୍ଥଳ । ଆଶ୍ରିତ ତୋହର ଚରଣ । (ଜଗନ୍ନାଥ ଭାଗବତ)

୪୦୭୧. ଏ ହଡ଼ା ବଳଦକୁ ଯେ ଯୁଆଳିଆ ଘାସ
ଖାଉ କି ନଖାଉ ରେ ମେଲି ଦେଇ ଆସ ।- କୃଷକ ବୋଲି

୪୦୭୨. ଏ ହଡ଼ା ବଳଦକୁ ତ ହଳିଆ ମଙ୍ଗୁନାହିଁ
କାହୁଁ ଆଣି ଦେବି ଗଳା ଯେ ଦାମୁଡ଼ି
ମଲକଡି ଦେଇ
ତୋହ କାନ ମଲକଡି ତୋହ କାନେ ଥାଉ

ଠେଲା ପେଲା କରିଲୋ ମାରିବା ଯେ
ବରଷ ମୁଣ୍ଡ ପାଉ । - କୃଷକ ବୋଲି

୪୦୭୩. ଏହାର ଦେଖି ତାହାର ଦେଖି ,
ଫରକିଲା(= ଡ଼େଇଁଲା) ମୋର ଡ଼ାହାଣ ଆଖି ।

ସ୍ତ୍ରୀ ଲୋକର ଡ଼ାହାଣ ଆଖି ଡ଼େଇଁବା ଭଲନୁହେଁ । ଅନ୍ୟର ସୁଖ ସମ୍ପଦ ଦେଖି କୌଣସି ସ୍ତ୍ରୀ ଲୋକ ଈର୍ଷାପର ହେବା ପ୍ରତି ।

୪୦୭୪. ଏହାଙ୍କ ଭାଇ କାଲୁ
କାହା ପତରରେ ମାଗୁର ମାଛ
କାହା ପତରରେ ଆଳୁ ।

୪୦୭୫. ଏହାତ ମୂଢ଼ ନ ଜାଣଇ ।
ବିଷ୍ଣୁ ମାୟାରେ ହୋଇ ମୋହି । - ( ଜଗନ୍ନାଥ ଭାଗବତ)

୪୦୭୬. ଏହି କଳିକାଳେ ହେଲି ମାୟା ମୋହେ ବନ୍ଦୀ
ଏଥିରୁ ମୁକତି ବେଗେ କର ଗୋ ଅନାଦି । -(ସାରଳା ଦାସ)

୪୦୭୭. ଏହାଙ୍କ ପରି ଆଉଅଲାଜୁକ ନାହିଁ ,
ମାଇପକୁ ପରେ କେ ଦେବ୍ ଖେଳେ ନେଇ । - କୃଷ୍ଣ ସିଂହ

ମହାଭାରତରେ ପଶାଖେଳରେ ଦ୍ରୌପଦୀଙ୍କୁ ବାଜିରଖି ଖେଳିବା ପରିପ୍ରେକ୍ଷୀରେ ।

୪୦୭୮. ଏହାଗଚ୍ଛ, ପତୋତିଷ୍ଠ ,ବଦ ,ମୌନଂ ସମାଚର
ଏବ ମାଶା ଗ୍ରହଗ୍ରସ୍ତେ କ୍ରୀଡ଼ନ୍ତି ଧନିନୋଽର୍ଥିଭିଃ ।

ଆସ,ଯାଅ,ବସ,ଉଠ,କହ,ଚୁପକର ଏହିପରି ଆଦେଶ ଦେଇ ଦେଇ ଧନୀମାନେ ଆଶାଗ୍ରସ୍ତ ଯାଚକମାନଙ୍କ ସହିତ କ୍ରୀଡ଼ା କରୁଥାନ୍ତି ।

୪୦୭୯. ଏହିପରି ପଚାରିଲି ବେଶ,
ପାଣିରେ ଭାସେ ଯୋଡ଼ା ସନ୍ଦେଶ ।

୪୦୮୦. ଏହି ମନ ଗୋଟି ଭୋଗୀ
ଏହି ମନ ଗୋଟି ଯୋଗୀ
ଏହିମନ ଗୋଟି ହସ୍ତୀ
ଏହି ମନ ବଇରାଗୀ ।

୪୦୮୧. ଏହେ ଚାଲ ଚାଲ ବଳଦ ନ କର ଭାଳେଣି
ଆହୁରି ଘଡ଼ିଏ ହେଲେ ପାଇବୁ ମେଲାଣି,
ଦେବେ ତ କଞ୍ଚା ଘାସ ଝରଣାର ପାଣି,
ସୀତୟା ଠାକୁରାଣୀ । କୃଷକ ବୋଲି ।

୪୦୮୨. ଏ ହାତୀ ଖପର କାତି
ତୋ ମାଆ ମଲା ଉଆଁସ ରାତି ;
ପଠାଣ ଘରେ ଖାଇଲୁ ଭାତ ,
ତୋର ଗଲା ଜାତି ।

ପୂର୍ବେ ଅନ୍ୟ ଜାତି ଘରେ ଖାଇଲେ ଜାତି ଯାଉଥି ଲା । ସମାଜ ତାକୁ ବାଛନ୍ଦ କରୁଥିଲା । ବର୍ତ୍ତମାନ ଜାତିଆଣ ଭାବ ଲୋପ ପାଇଛି । ତେଣୁ ସେଇ କଥାକୁ ପୁନରାବୃତ୍ତି କରି ପରିହାସ କରେ ।

୪୦୮୩. ଏ ହେ ହଳଦୀ ବାଟିଲି ପିଠଉ ବଟା ଶିଳେ ।
ରଙ୍ଗ ନଧଇଲା ,ବନ ଯେ ହଳଦୀ ,କରମ ବାମ ବେଳେ ।

୪୦୮୪. ଏହି ପିଲ୍ଲାଟି (=ଟୋକିଟି) ,କାହାର ବେଟୀ?

ଝିଅ ପିଲା ପ୍ରତି ପରିହାସ ତଥା ବ୍ୟଙ୍ଗ ।

୪୦୮୫. ଏ ହଳକୁ ହଳିଆ ଯେ ଲଙ୍ଗଳକୁ ତ ଲୁହା.
ଆଷାଢ ମାସରେ ଯେ ରଥ ତ ଦ୍ୱିତୀୟା,
ଛଇଳିରେ ଶ୍ରାବଣ ମାସରେ ପହ୍ନାରୁଥା । - କୃଷକ ବୋଲି

୪୦୮୬. ଏହି ତାଡ଼ ଲାଞ୍ଜ ଦେଲା
ଆଇ ବୁଢୀ ମୋର ଘରେ ନଥିଲା
ମୋତେ ଘେନି ପଳାଇଲା ।

୪୦୮୭. ଏହା ମୁହଁ ଚାହିଁଲେ ପ୍ରାୟଶ୍ଚିତ କରିବାକୁ ହୁଏ ।
ଏହା ମୁହଁଟା ଯେମିତ ହାଡ଼ିର କୋଦାଳ ।

୪୦୮୮. ଏହି ଗାଣ୍ଡିମ ଏହି ହାତେ
ଏହି ଗାଣ୍ଡିମ ଏହି ମାଥେ ।

୪୦୮୯. ଏ ହରିଡ଼ା ଗଛ ମୂଳରେ କିଏ ସେ ତିନି ଜଣ
ମଧ୍ୟେ ତ ବିଜୟେ ମୋ ନିରିଗୁଣ ବ୍ରହ୍ମ ।
ଭୁଜକେ ଲଙ୍ଗଳ ତ ଭୁଜକେ ଧାନ କେଣ୍ଡା
ପଛେ ମୋ ଧନୁ ଧରି ନହୁଲିଆ ଭେଣ୍ଡା
ଆଗେତ ପୁଷ୍ପଗଦା ପ୍ରାୟେକ ତନୁ ଶୋଭା
ମନୁଁ ତ ପାସୋର ନ ଯାଏ ଶିରିଷ ଫୁଲ ଗୋଭା

ଶିରିଷ ଫୁଲ ଗୋଭାତ ଭିତରେ ପାଷାଣ
ପାଷାଣ ମଧ୍ୟେ ଅଗ୍ନି ଜଳୁଛି ନିଶିଦିନ
ଚାହିଁ ଦେବ ଶକତି କାହାର ଯେ
ପାଦେ ତ ସର୍ବେ ଲୀନ । - କୃଷକ ବୋଲି

୪୦୯୦. ଏହାଟ ତ କରିଗଲି ହଟିଆ ସଙ୍ଗରେ
ନାନା ହଟ କଲା ଯେ ହଟିଆ ତେଲଙ୍ଗି ବାଇଦରେ । - କୃଷକ ବୋଲି

୪୦୯୧. ଏହେ ରାମଯେ ଲଇଖନ୍ ଦୁଇ ଗୋଟି ଭାଇ
ରାମର ଭାରିଯା କେ ନେଲା ଚୋରାଇ
ଖୋଜୁଥିଲେ ରାମ ଯେ ଲକ୍ଷ୍ମଣ ଭ୍ରମର ରୂପ ହୋଇ ।- କୃଷକ ବୋଲି

୪୦୯୨. ଏ ହେ ବଇଲାରେ ଫୁଲ ଫଳ ବୋଲି ଡ଼ାକିଲା ମାଲୁଣୀ
ଫୁଲକୁ ରସିଆ କାହ୍ନୁକୁଳମଣି ଦିଅ ତ ଦିଅ ଆଣି । - କୃଷକ ବୋଲି

## ପାଟୁଆ ଗାୟକ ପଦାବଳୀ

୪୦୯୩. ଏହି ସମୟରେ ଦୂତୀ ଆସିବେ ମୋ ପ୍ରାଣପତି
ନଥିବ ଜନ୍ମ ମରଣ ,ନଥିବ ଦିବସ ରାତି ।
ପେଚା ଗୃହେ ଥିବ ରହି ,ମାନବ ନଥିବେ କେହି ,
ନଥିବ ଶ୍ରୀକୃଷ୍ଣ ନାମ, ନ ଥିବ ରାଧା ସନ୍ତତି ।
ନଥିବ ଚନ୍ଦ୍ର କିରଣ, ଦାଣ୍ଡେ ନ ଥିବ ନନ୍ଦନ
ନଥିବେ ତାରାଗଣ ,ନଥିବ ଶେଯ ସୁପାତି ।
ନଥିବ ସଭାରେ ରାଜା,ନଥିବ ଦେବତା ପୂଜା
ନଥିବ ସୂର୍ଯ୍ୟ କିରଣ ,କାନ୍ତେ ଭେଟିଆ ଝଟତି,
ଏହି ସମୟ ଜାଣିଣ ,ପାଶେ ଆସିବେ ମୋହନ
କ୍ଷତିପତି ଅପରତି ଶରଣ ମାଗେ ଭକତି ।

୪୦୯୪. ଏ ହାଟରେ କିଣି ,ଆର ହାଟରେ ବିକିବା ।

୪୦୯୫. *ଏକାର୍ଥରେ-* ଏକ ହାଟରୁ କିଣି ପାରେ
ଏକ ହାଟରେ ବିକି ପାରେ ।

ଅତ୍ୟଧିକ ଧୂର୍ତ୍ତ ବ୍ୟକ୍ତି ପ୍ରତି ପ୍ରଯୁକ୍ତ ।

୪୦୯୬. ଏକ ହାଟରେ ଦୁଇଟି ଦର ।

୪୦୯୭. *ଏକାର୍ଥରେ-* ସଂସାର ହାଟରେ ଦୁଇଟି ଦର,
କାହାକୁ ତୁଚ୍ଛ କାହାକୁ ଆଦର ।

୪୦୯୮. ଏକ ସେର ଚାଉଳରେ ପାଞ୍ଚ ପିଠା
ଯାହା କଥା ଶୁଣିଯିବ ତାର କଥା ମିଠା ।

ବେଶି ଚାଉଳରେ କମ ପିଠା ହେଲେ ପିଠାର ଆକାର ବଡ଼ ହୁଏ । ଖଣ୍ଡେ ପିଠା ଯିଏ ଖାଏ ତାର ମନ ବୋଧ ହୋଇଯାଏ ,ସେହିପରି ଅପ୍ରିୟ କଥା ନକହି ଯିଏ ଶ୍ରୋତାଙ୍କୁ ସନ୍ତୁଷ୍ଟ କଲାଭଳି କଥା କହେ ଶ୍ରୋତାଙ୍କୁ ତାହା ମିଠା ଲାଗେ ।

୪୦୯୯. ଏ ହାତରେ ଦେଲେ ଯାହା ,ସେ ହାତରେ ନେଲେ ତାହା ;
କିମ୍ବା ତେବେ ଚଉବାହା (=ଦେବତା) ।

ଦେବା ମାତ୍ରେ ଯେ ହରଣଚାଳ କରେ ,ତାକୁ ଲୋକେ ଦେବତା ବୋଲି କାହିଁକି ପୂଜିବେ ।

୪୧୦୦. ଏହା କଲା କିଏ ତାହା କଲା ।
ହଗି ଯିବାକୁ ସାତ ସୁଆରୀ ଗୁହାଳ କାଢିବା ବିହି କଲା ।

ଆଗେ ବଡ଼ ଲୋକ ଥିଲା ଓ ବହୁ ଆଡ଼ମ୍ବ ର ସହକାରେ ଚଳୁଥିଲା ;କିନ୍ତୁ ପରବର୍ତ୍ତୀ କାଳରେ ବିଧିର ବିଧାନ ଅନୁସାରେ ତାର ଭାଗ୍ୟର ଅଧୋଗତି ହେଲା । ଫଳରେ ନିଜର ଭରଣ ପୋଷଣ ପାଇଁ ତାକୁ ପରର ଗୁହାଳ ସଫା କରିବାକୁ ପଡ଼ିଲା ।

୪୧୦୧. ଏହିକି ଏତେ ,ମୁଦି ନାହିଁ ଗୋଡ଼ କଚାଡୁ କେତେ ।
ଗୋଡ଼ରେ ଯେବେ ମୁଦି ଥାଆନ୍ତା
କଚାଡ଼ି କଚାଡ଼ି ଭାଙ୍ଗି ଦିଅନ୍ତା ।

ଧନ ଜନ ନଥାଇ ଏତେ ଗର୍ବ ଯଦି ଥାଆନ୍ତା ତେବେ ତାର ଗର୍ବ ସହି ହୁଅନ୍ତା ନାହିଁ । ଦରିଦ୍ର ସାମାନ୍ୟ ଧନପାଇଲେ ଉଦ୍ଧତ ହୋଇଉଠେ , ତାର ଚାଲିଚଳଣରୁ ଧନର ପରାକାଷ୍ଠା ସ୍ପଷ୍ଟ ହୋଇଉଠେ ।

୪୧୦୨. ଏହି ଦିହ ଫେର୍ ଏମନ୍ତ ହୋଇ ,ହାତୀକୁ ପାରଇ ବାନ୍ଧି;
ଏଇ ଦିହ ଫେର୍ ଏମନ୍ତ ହୋଇ ,କେଶ ନ ପାରଇ ବାନ୍ଧି ।

ମଣିଷ ସମର୍ଥ ଥିଲାବେଳେ ଅସାଧ ସାଧନ କରେ । ମନୁଷ୍ୟ ଦୁର୍ବଳ ହେଲେ , ବ୍ୟାଧି ଯୁକ୍ତ ହେଲେ ବା ବାର୍ଦ୍ଧକ୍ୟ ହେଲେ ଅତି ସାମାନ୍ୟ କାର୍ଯ୍ୟ କରିବାକୁ ଅସମର୍ଥ ହୁଏ ।

୪୧୦୩. ଏହି ସହକାର ତଳେ
ସେଦିନ ପ୍ରିୟାର କର କଙ୍କଣ
ଭିଡ଼ିଥିଲା ମୋର ଗଳେ । - ମାୟାଧର ମାନସିଂହ

୪୧୦୪. ଏହାତ ନେଇ ଜାଣେ ,ଦେଇ ଜାଣେନି

୪୧୦୫. ଏହି ଗୌର ରାମ ରୂପେ ରାବନ ବଧିଲ,
ଗୋଲକ ବୈଭବ ଲୀଳା ଆପନି ସର୍ଜିଲ

ଶ୍ରୀଚୈତନ୍ୟ ମହାପ୍ରଭୁହିଁ ରାମରୂପ ଧାରଣକରି ରାବଣକୁ ବଧ କରିଥିଲେ । ତାଙ୍କଦ୍ୱାରା ସଂସାରର ସକଳ ବୈଭବ ଓ ମାନବ ଲୀଳା ସର୍ଜନା ହୋଇଛି । ବଙ୍ଗଳାରେ କବିକର୍ଣ୍ଣଙ୍କ ଦ୍ୱାରା ରଚିତ।

୪୧୦୬. **ଚଷା ବଚନିକା ପଦମାଳ**

**ପ୍ରଶ୍ନ** - ଏହେ ଗହିର ବିଲରେ ମୁଠି ଯେ ମୁଠି କିଆ,
ମୋତେ ଛାଡ଼ି ଦିଅର ନୋହିବୁ ଅନ୍ୟ ବିହା (=ବିବାହ) ।
ଯଦି ବିଭାହେବୁ ମା ବାପର ବୁଲେ (=କହିବାରେ ),
ଛିଡ଼ାଇବି ତୋର ନୁଲ (=ନୋଳି) ଯେ ମୁକୁଟ
ବରୁଣ ବେଦି ତଲେ (=ତଳେ) ।

**ଉତ୍ତର**- ଏହେ ନଛିଣ୍ଡ ନଛିଣ୍ଡ ମୋହର ଶୁଭ ବେଳେ,
ଯେତେକ ହୋଇବ ବନ୍ଧାଣ ଦେବି ମୁଁ ପଣତରେ ।
ଘରେ ଦେଇଗଲେରେ ଜାଣିବ ଜଗତେ,
ଦେଇ ପରାଯିବି କାନି ପଣତେ ରହିବ ଗୁପତେ ।

× × × ×

**ପ୍ରଶ୍ନ**- ଏହେ ପଧାନରେ ଘରକୁ କେଉଁ ଦେଇଯେ ବାଟ ।
**ଉତ୍ତର**- ଚାରିକଣେ ଚାରି କବାଟ ମଧରେ ଗଲା ବାଟ ।
ସେଇ ଗଲା ବାଟରେ ଯାଉଥିଲି ଗଳି
ପଧାନର ଝିଅ ନବ ଯେ ଛଇଳୀ,
ନେଲାଯେ କାଖ କରି ।

**ପ୍ରଶ୍ନ** - ଏହେ କାଖ କରି କିସ ସେ କରାଇବ ।
**ଉତ୍ତର**- ବାରିଯା ପଟେ ଗୁଜି ଲଙ୍ଗଳ ଈଶ ମରାଇଦେବ ।
ଈଶ ପଶୁ ପଶୁରେ ବାହୁଟି ପଶିଲା ।
କଣ୍ଟିତ ମୁଣ୍ଡେ ଲୋ ପାଣି
ପହଁରା ହଲିଆ (=ହଳିଆ) ବୁଡ଼ିମଲା ।

୪୧୦୭. ଏ ହେ ଖରାଦିନେ ନଦୀରେ ବଢଇ କେମନ୍ତେ
ମାରୁଚି ଲହଡ଼ାରେ ଉଚ୍ଚ ପରବତେ
ଏକା ଲହଡ଼ାରେ ଯେ ପଥର ଗଲା ଶହେ

ଭାସି ଯା ଗଲା ଲଣ୍ଡା ଦେଉଳ ଏ ଯାଜପୁର ଯାଏ
ଯାଜପୁର ଲୋକେ ରେ ଘରେ ଘରେ ଯେ ଚେତା
ହାତୀ ଦାନ୍ତରେ ଗଜ ଯେ ମୁକ୍ତା ,ତେଲଙ୍ଗା ପାଟସୂତା
ତେଲଙ୍ଗୀରେ ସୂତାକୁ ଭରତ କରେ ପୂଜା
ବକଳ ପିନ୍ଧି ମୋ ଭରତ ,ଅଯୋଧ୍ୟା ଗଡ଼େ ରାଜା ।

୪୧୦୮. ଏହିତ ସମ୍ମୁଖେ ସେ ବାରପାହାଡ଼
ଭଙ୍ଗିଥିଲା ଯହିଁ ଲକ୍ଷ ବକ୍ଷ ହାଡ଼ ।

ବୀର ସୁରେନ୍ଦ୍ର ସାଏଙ୍କର ଲୀଳାକ୍ଷେତ୍ର ଐତିହାସିକ ବାରପାହାଡ଼ର ଡ଼େବ୍ରିଗଡ଼ ଗିରିଦୁର୍ଗ ଏହାଙ୍କ ପ୍ରଧାନ ଯୁଦ୍ଧ ଘାଟିଥିଲା । ଏହାର ଉଚ୍ଚତା ୨୨୬୭ ଫୁଟ । ଶୃଙ୍ଗର ଶିଖର ଦେଶରେ ବିପ୍ଲବୀମାନଙ୍କର ବିପ୍ଲବ ଧ୍ୱଜା ଉଡୁଥିଲା । ଯୁଦ୍ଧକାଳୀନ ବାଜା ମଧ ବାଜି ଉଠୁଥିଲା । ଦୁର୍ଗର ବିଭିନ୍ନ ସ୍ଥାନରେ ୧୨ଟି ଗମ୍ବୁଜ ଥିଲା ଓ ସେଥିରେ ତୋପ ବନ୍ଧୁକ ଆଦି ଖଞ୍ଜା ଯାଇଥିଲା । ଦୁର୍ଗର ବିଭିନ୍ନ ସ୍ଥାନକୁ ସୁଡ଼ଙ୍ଗ ଦ୍ୱାରା ସଂଯୁକ୍ତ କରାଯାଇଥିଲା । ଏହି ଦୁର୍ଗର ଅନତିଦୂରରେ ବାରବଖରା ଗିରିଗୁମ୍ଫା ରହିଛି । ବର୍ଷା ଋତୁରେ ବିପ୍ଲବୀମାନେ ନିରାପଦରେ ଆଶ୍ରୟ ନେଉଥିଲେ । ୧୮୩୬ ମସିହା ରାସ ପୂର୍ଣ୍ଣିମାର ଅର୍ଦ୍ଧରାତ୍ର ସମୟରେ, ଯେତେବେଳେ ସୁରେନ୍ଦ୍ର ସାଏ ,ତାଙ୍କ ଭ୍ରାତା ଉଦନ୍ତ ,ପିତୃବ୍ୟ ବଳରାମ ଓ ଲଖନପୁରର ଗଣ୍ଡ ଜମିଦାର ବଳଭଦ୍ର ସିଂହ ଦାଉ ବିପ୍ଳବର ଭବିଷ୍ୟତ ରୂପରେଖ ପ୍ରସ୍ତୁତ କରିବାରେ ମଗ୍ନ ,ସେତେବେଳେ ହଠାତ୍ ଇଂରେଜ ସେନା ସେଠାରେ ପହଞ୍ଚିଲେ ( ଜଣେ ପାହାଡ଼ି ଗଣ୍ଡା ଲୋକର ସହାୟତାରେ ) । ସିଧା ସଳଖ ଗୁଳିକରି ବଳଭଦ୍ର ସିଂହଙ୍କୁ ମାରିଦେଲେ । ମାତ୍ର ସୁରେନ୍ଦ୍ର ଓ ଅନ୍ୟମାନେ ଏକ ସୁଡ଼ଙ୍ଗରେ ପଶି ଆତ୍ମରକ୍ଷାକଲେ । ଏହାପରେ ଜମିଦାର ବଳଭଦ୍ରଙ୍କର ତିନିପୁଅ -କମଳ,ନୀଳାମ୍ବର ଓ ଖଗେଶ୍ୱର ବାର ପାହାଡ଼ର ଗିରି କନ୍ଦରରେ ଆହତ ସିଂହପରି ଭୟଙ୍କର ଗର୍ଜନ କରି ବିପ୍ଲବକୁ ଜନ୍ମ ପ୍ରଦାନ କଲେ । ଇଂରେଜ ସହିତ ଯୁଦ୍ଧକରି ଲକ୍ଷ ଲୋକ ମୁକ୍ତି ସଂଗ୍ରାମରେ ବକ୍ଷ, ଲୁହ ,ହାଡ଼ ଦେଇ ସହୀଦ୍ ହୋଇଥିଲେ । ସେହିମାନଙ୍କ ସ୍ମୃତିରକ୍ଷାର୍ଥେ ଏହି ପ୍ରବାଦଟି କୁହାଯାଏ ।

## ୪୧୦୯. ବାରମାସୀ ଢମାଳି ପଦମାଳ

ଏହି ମଗୁଶିର ମାସ କାକର ପଡ଼େ ବିଶେଷ
କାକର ପବନ ବହେ ଘନ ଘନ
ମୋ ପୁତ୍ର କରିବ କିସ ।
ପୁଷମାସେ ବଡ଼ ଶୀତ କଷ୍ଟ ଦିଏ ଅପ୍ରମିତ
ବିନାବସନ୍ନରେ ବୃକ୍ଷ ବକଳରେ
କି ଦୁଃଖ ନହେବ ଜାତ ।
ମାଘରେ ତହୁଁ ଅଧିକ ଗରିବ ଦୁଃଖ ଦାୟକ

ଅମୂଲ୍ୟ ସୁପାତି ତେଜି ରଘୁପତି
ବୁଲଇ କାନନ ଯାକ ।
**ଫଗୁଣେ** ଫଗୁଖେଳରେ ମାତିଛନ୍ତି ଘରେ ଘରେ
ମୋ ଅନ୍ଧୁଣୀଧନ ମୋଠୁଁ ହୋଇ ଭିନ୍ନ
ଭସାଇଲା ଶୋକ ନୀରେ ।
**ଚଇତ** ମାସର ଖରା ନୀରସ କରଇ ଧରା
ଶରୀରରୁ ଝାଳ ବହେ ଅନର୍ଗଳ
ପରାଣ ହୋଏ ଗାବରା ।
**ବଇଶାଖ** ଖରା ଚାହିଁ ବାହାରକୁ ନୋହେ ଯାଇ
କଉଁବୃକ୍ଷ ମୂଳେ ଜୀବନ ବିକଳେ
ଥିବ ମୋର ପୁତ୍ର ରହି ।
**ଜ୍ୟେଷ୍ଠେ** ମୋ ଜ୍ୟେଷ୍ଠ ନନ୍ଦନ ଜାନକୀ ସହ ଲକ୍ଷ୍ମଣ
ନାନା ପକ୍ୱଫଳ ଖୋଜି ବୁଲୁଥିବେ
ବିଧିର ଏ ବିଡ଼ମ୍ବନ ।
**ଆଷାଢ** ମାସରେ ମେଘ ଗରଜଇ ଯେହ୍ନେ ବାଘ
ବେଳେବେଳେ ଦିଶି ହୁଅଇ ଅଦୃଶ୍ୟ
ଘୋଟିଯାଏ ଚଉଦିଗ ।
ଦେଖ ଧାରା **ଶିରାବଣ** ଜଳପଡ଼େ ଅନୁକ୍ଷଣ
ଘରଘାଟ ନାହିଁ ମୋ ଦୁଃଖି ସଂଖାଳି
କି ରୂପେ କାଟିବ ଦିନ ।
**ଭ୍ରଦ୍ରବ** ହେଲେ ପ୍ରବେଶ ସୁନିର୍ମଳ ଦଶ ଦିଶ
ଅତିସୁକୁମାରୀ ଜନକ କୁମାରୀ
ମନେ ଭାକୁ ଥିବ କିସ ।
**ଆଶ୍ୱିନେ** ଚନ୍ଦ୍ର କିରଣ କରଇ ମନହରଣ
କେତେ ମତେ କେତେ ଉତ୍ସବ କରନ୍ତେ
ଘରେ ଥିଲେ ରଘୁରାଣ ।
ଏ ମହା କାର୍ତ୍ତିକ ମାସ ଭଣିଲେ ଶଙ୍କର ଦାସ

ସୀତା ସଙ୍ଗେ ଘେନି ରଘୁକୁଳମଣି
ଭୋଗକଲେ ବାରମାସ ।

୪୧୧୦. ଏ ଟୋକିଟି (ଝିଅଟି)କିଏରେ
ମୁଣ୍ଡରେ ଲୁଗା ଦିଏରେ ।

୪୧୧୧. ଏ ଟୋକାଟା - କାହାର ବେଟା,
ଏ ଟୋକିଟା - କାହାର ବେଟୀ ।

୪୧୧୨. ଏ ଟୋକାଟି କିଏରେ
କଜଳପାତି କହି ଯାଇଛି ମୁଣ୍ଡରେ ଲୁଗା ଦିଏରେ ।
କଳାଧଳା ବାଇଗଣ ଧଳାଧଳା କଉଡ଼ି
ନେଇଯା ତୋ ବାଇଗଣ ଦେଇ ଯା ମୋ କଉଡ଼ି ।
ବାରିଆଡ଼େ କୂଅ ଗୋ ଦାଣ୍ଡ ଆଡ଼େ କୂଅ
ଗୁଣ୍ଡୁଚି ମୂଷା କହି ଯାଇଛି ଚାଉଳ ମୁଠେ ଥୁଅ ।

କୁମାରପୂର୍ଣ୍ଣମୀ ଦିନ କୁମାରୀମାନେ ଗାଁ ଦାଣ୍ଡରେ ଘର ଘର ବୁଲି ମାଗୁଣି କଲାବେଳେ ଏହି ପଦଟି ବୋଲନ୍ତି । ଏହି ମାଧୁର୍ଯ୍ୟଭରା ପଦଟି ସମବେତ କଣ୍ଠରେ ସଚରାଚର ଆଉ ଶୁଣିବାକୁ ମିଳେନାହିଁ । ଏହାର ଝଙ୍କାର ଶ୍ରୋତାମାନଙ୍କୁ ମୁଗ୍ଧ ଓ ଉଲ୍ଲସିତ କରୁଥିଲା ।

୪୧୧୩. ଏଠି ବି ଆଲ (= ଆଳୁଅ) ସେଠି ବି ଆଲ,
କେମିତି ପାଇବି ତାଳ ।

୪୧୧୪. ଏଠି ନ' ସେଠି ଛ' । ନ' ଛ' କରିବା ।

ଏପାଖ ସେପାଖ କରିବା ଅର୍ଥାତ୍ ଗୋଳମାଳ ବା ଗଡ଼ବଡ଼ କରିବା ।

୪୧୧୫. ଏଠିବି ପେଢ-ତୋଡ଼ାଣି (=ତୋରାଣୀ)
ସେଠିବି ପେଢ -ତୋଡ଼ାଣୀ ;
ଗୋରୁ ତୋତେ ବିକିବିନି ।

୪୧୧୬. ଏଇସା ତେଇସା ।

ମନ୍ଦଚାଲିଚଳଣ ,ଆର୍ଥିକ ଦୃଷ୍ଟିରୁ ଶ୍ରୀହୀନ ,ଅଶିଷ୍ଟ ବା କ୍ଷୁଦ୍ର ।

୪୧୧୭. ଐସାକୁ ତେଇସା ।

ଭଦ୍ରଲୋକମାନଙ୍କ ଦ୍ୱାରା ଏକ ପ୍ରକାର ଗାଳି ଖରାପ ଭାଷା ପୟୋଗକରି ଗାଳିଦେଇ ନପାରିବା ବ୍ୟକ୍ତି ଏହି ଉକ୍ତିରେ ଗାଳି ଦେଇଥାଆନ୍ତି ।

୪୧୧୮. ଏଇସା ତେଇସା ହେବା । - ନାଶ ହେବା ।

୪୧୧୯. ଏଇସିକି ତେଇସି । - ପ ରବାୟ ନ୍ଥୋ ତଥା ବେପରବାଏ ବ୍ୟକ୍ତି ।

୪୧୨୦. ଏଇସି ତେଇସି କରିବା । - ଦୁର୍ଦ୍ଦଶା ଘଟାଇବା ,ବଳତ୍କାର କରିବା ।

୪୧୨୧. ଏମିତି ସେମିତି ପକେଟରେ ପଡ଼ିବା ।- ଅନ୍ୟକୁ ତୁଚ୍ଛ ଗଣ୍ୟ କରିବା ।

୪୧୨୨. ଏମିତି ଗରପଞ୍ଚ କଲ୍ୟାଣ ।

ଏପରି ଲୋକ ଯାହାରକି କୌଣସିଠାରେ ଇଜତ ନଥାଏ । ଅର୍ଥାତ୍ ନୀଚଜାତି ,ଶ୍ରୀହୀନ, ମୁଫତଖିଆ ପ୍ରଭୃତି ଅବାଞ୍ଛିତ ଲୋକ ।

୪୧୨୩. ଏମିତି ପଦାର୍ଥ ଛାଡ଼ି ,ମାଳା ଜପୁଥାଏ ଚେଡ଼ୀ( =ରକ୍ଷିତା ସ୍ତ୍ରୀ) ।

୪୧୨୪. ଏମିତି ବୁଦ୍ଧିରେ ,କଚୁ-ପୋଡ଼ା (=ସାରୁ-ପୋଡ଼ା) ଖାଅ ।

୪୧୨୫. ଏମନ୍ତେ ବିଚାରୁ ବିଚାରୁ ,
ଆସି ମିଳିଲା (ତେଣୁ ଆସିଲା ) ବୋଝେ ସାରୁ ।
ସାରୁ ରାନ୍ଧିଲି (ରାନ୍ଧିବ) ଯତ୍ନକରି,
ଖାଇଲି (ଖାଇବ) ତାହା ପେଟଭରି ।

ଭାଗବତ ରାଗ ଅନୁକରଣରେ ପରିହାସ ପଦ ।

୪୧୨୬. ଏକା ବିଧାକେ କରିବି ସିଦ୍ଧା (ସିଧା) ।

୪୧୨୭. ଏତେ କରି କରି ଫାଟରେ ଗଲା,
ବୁଡା ବସି ବସି ସନ୍ତାପ କଲା ।

୪୧୨୮. ଏତେ ଛନ୍ଦମ (ଛନ୍ଦ,ଛନ୍ଦମନ୍ଦ) କିଏ ଜାଣିଥିଲା ?

ସରଳ,ସିଧାସିଧା ଲୋକର ଅନୁଶୋଚନା ।

୪୧୨୯. ଏଥର ମନେ (=ମଲେ)ସାହେବ (ସାହାବ,ସାହିବ) ହେବି,
ଲାଲ୍ ମୁଣ୍ଡରେ କ୍ୟାପ୍ (cap) ଦେବି ।
( ଗୋବିନ୍ଦରଥ - ଫିଉଚର ସାହେବ )

୪୧୩୦. ଏହାତକୁ ସେ ହାତ ,
ଖଣ୍ଡିଆ ହାତକୁ ଜଗନ୍ନାଥ ।

୪୧୩୧. ଏରେଣ୍ଡା କେରେଣ୍ଡା କୋଳି,
କଉଡ଼ି ନଦେଲେ ନଦେବି କାଳି
ଶାଶୁଘର ଦେବେ ଗାଳି ।

୪୧୩୨. ଏବକା ଟୋକାଏ ମାନ ମହତ ସବୁ ପୋଡ଼ି ଖାଇଲେଣି ।

ମରହଟି ,ପୁରାତନ ବ୍ୟକ୍ତିମାନଙ୍କର ନବ୍ୟଶିକ୍ଷିତ ଯୁବକମାନଙ୍କ ପ୍ରତି ବିରକ୍ତି ଭାବ

୪୧୩୩. ଏମିତି ଦମଲଗାଏ ,
ଭେଲକି ଦେଖାଇ ମେଣ୍ଢା ବନାଏ ।
ଦିନବେଳେ ତର(ତାରା) ଦେଖାଏ ।

୪୧୩୪. ଏ' ସୁ ଖ ବେଳର ଗୋ ସାଥି ନୋହୁ ତୁହି
ଦୁଃଖବେଳେ ସଖି ମୋ ବୈଦେହୀ
ମୋ ଦୁଃଖେ ହେଲୁ ବାଇ । - ଶଗଡ଼ିଆ ଢମାଳି ।

୪୧୩୫. ଏ' ଲଲାଟ ଲିଖନ ଅନ୍ୟଥା ନୁହଇ
ଲୋଭ ମାୟା କାମେ ଜଡ଼ିତ ତୋର ଦେହୀ
ନାହିଁ ତୋତେ ବାଟ ଅଖଡ଼େ ନ ମର
ଲୟ କାଳେ ମୂଢରେ ମନାଇଁ
ଜଗତୁ ହେବୁ ପାର । - ଶଗଡ଼ିଆ ଢମାଳି

୪୧୩୬. ଏମାଟିରେ ମାଠିଆ କାଖକୁ ହେଉଲଗା
ମୁଣ୍ଡର ମାଠିଆ ଯେ ହୋଇ ଯାଉଛି ଅଲଗା
ମୁଚୁଳା ଫାଟି ତୁଳା ଗଗନେ ଗଲା ଉଡ଼ି
ସେହିମତି ପରଯେ ପୁରୁଷ ।
ବଚନ ଯାଏ ଝୁଡ଼ି ।

୪୧୩୭. ଏ ସବୁ ତ ମନ ବୋଲୁରେ ମୋହରି ମୋହରି
ପିନ୍ଧିଲା ବସ୍ତ୍ର ଖଣ୍ଡିରେ ନୁହଇ କାହାରି
ଦଢ ଖଣ୍ଡି ନେଇ ଛିଡ଼ା ଖଣ୍ଡି ଦେବେ
ମଶାଣି ଭୂଇଁରେ ଧନରେ ପକାଇ
ତୋ ମୁଖେ ଅଗ୍ନି ଦେବେ ।
ତୋ ମୁଖେ ଅଗ୍ନିଦେଇ ଯିବେଟି ଯେଝାଘର
ଗାଁଆର ଶେଷ ମୁଣ୍ଡରେ କାଟିବେ ତିନିଗାର
ଯୁଗକୁ ଯୁଗ କାନ୍ଦିବ ମାଆଥିଲେ ତୋର
ଭଉଣୀ କାନ୍ଦିବରେ ଛ'ମାସ ଅନ୍ତର
ଯାହାକୁ କରିଛୁ ଘରର ଘରଣୀ
ସେ ଖୋଜେ ଅନ୍ୟବର ।

୪୧୩୮. ଏଞ୍ଚପେଞ୍ଚ କହିବା । - ଚାଲବାଜ କଥା କହିବା ।

୪୧୩୯. ଏଣ୍ଠି (ଏଡ଼ି) (=ଗୋଇଠି ଆଘାତ)ମାରିବା । - ଉସକେଇବା,ପ୍ରୋରଣାଦେବାୟ ।

୪୧୪୦. ଏଣ୍ଠି ବେଣ୍ଠି ଚାଲ ଖେଳିବା । - ଆଙ୍କେବାଙ୍କେ ଚଲାଣି ବା ଫନ୍ଦି ବାହାର କରିବା ।

୪୧୪୧. ଏଣ୍ଠି ବେଣ୍ଠି ଶୁଣାଇବା । - ଭଲମନ୍ଦ କହିବା ବା ଗାଳିଦେବା ।

୪୧୪୨. ଏଣ୍ଡା ଏଣ୍ଡା ହୋଇ ବୁଲିବା ।

୪୧୪୩. *ଏକାର୍ଥରେ* - ଢଙ୍ଗ -ଢଙ୍ଗ ହୋଇବୁଲିବା । -ବେପରୱାହୋଇ ବୁଲିବା ।

୪୧୪୪. ଏପାଖ ସେପାଖ କଥା । - ବାଜେକଥା ।

୪୧୪୫. ଏ ଅମାର ଧାନ ସେ ଅମାର କରିବା । - ବୃଥା କାର୍ଯ୍ୟକରିବା ।

୪୧୪୬. *ଏକାର୍ଥରେ* - ଏ ଓଳିଆ( ପୁଡୁଗ) ଧାନ ସେ ଓଳିଆ (ପୁଡୁଗ) କରିବା ।

୪୧୪୭. ଏ ତିଳରୁ ତେଲ ନ ବାହାରିବା ।

ଅତି କୃପଣଠାରୁ କିଛି ପ୍ରାପ୍ତ ହୁଏ ନାହିଁ ।

୪୧୪୮. ଏତେ ଟିକିଏ ଜାନ (=ଜୀବନ) ଲମ୍ୱ ଲମ୍ୱା ଜବାନ୍ (=କଥା) ।

୪୧୪୯. ଏ ପଟ ନହେଲେ ସେପଟ ।

୪୧୫୦. ଏ ପାର (ପାରି) ନ ହେଲେ ସେ ପାର (ପାରି) ।

ଅନ୍ତିମ ନିର୍ଣ୍ଣୟ କରିବା ।

୪୧୫୧. ଏ ହାତରେ ଦେଇ ସେ ହାତରେ ନେବା ।

୪୧୫୨. *ଏକାର୍ଥରେ* - ଯେପରି କର୍ମ ସେପରି ଫଳ ।

୪୧୫୩. -ଏଜନ- ଏ ହାତରେ ଦିଅ ସେ ହାତରେ ନିଅ ।

ଦାନରୁ ବହୁ ପୁଣ୍ୟ ଲାଭହୁଏ ।

# ଓ-ଓ-ଓ

୪୧୫୪. ଓଁ ।

ଏହା ଏକ ବୀଜମନ୍ତ୍ର । ଏହି ବୀଜ ମନ୍ତ୍ରର ଧ୍ୱନି ସକଳ ପ୍ରକାର ମନ୍ତ୍ରର ଆଦ୍ୟରେ ଉଚ୍ଚାରିତ ହୁଏ । ଅ ,ଉ ଏବଂ ମ ଏହି ତିନୋଟି ଅକ୍ଷର ସଂଯୋଗରେ ଏହାର ସୃଷ୍ଟି ବା ଉତ୍ପତ୍ତି । ଅ=ବିଷ୍ଣୁ,ଉ= ଶିବ ଏବଂ ମ= ବ୍ରହ୍ମା । ଏହି ବୀଜ ମନ୍ତ୍ରରେ ତିନିଗୋଟି ଦେବତାଙ୍କର ନାମ ଥିବାରୁ ଏହା ସକଳ ମନ୍ତ୍ର ଆଦ୍ୟରେ ଲାଗେ । ଏହାକୁ ପ୍ରଥମେ ଉଚ୍ଚାରଣ ନକରି ମନ୍ତ୍ର ପାଠକଲେ ମନ୍ତ୍ର ସିଦ୍ଧି ହୁଏ ନାହିଁ । ଅ କାର- ସୂର୍ଯ୍ୟବୀଜ, ଉ କାର- ଚନ୍ଦ୍ରବୀଜ,ଏବଂ ମ କାର -ଅଗ୍ନି ବୀଜ ।

୪୧୫୫. ଓଁ (ଅ-ଉ -ମ)।
ଓଁ ରୁ ପ୍ରକୃତି ;ଜନମ ।
ପ୍ରକୃତି ହେଲେ ତିନି ଗୁଣ । ଯଥା- 'ଅ' 'ଉ' 'ମ' ।
(୧) 'ଅ' କାରରୁ 'ସତ୍ତ୍ୱ' ଗୁଣ
'ଉ' କାରରୁ 'ରଜଃ'
'ମ' କାରରୁ 'ତମ' ଗୁଣ
ମନେମନେ ହେଜ ।
ତମ' ଗୁଣେ ହେଲେ 'ଶିବ'
'ସତ୍ତ୍ୱ' କୁ 'ବିଷ୍ଣୁ' ଉଦ୍ଭବ
'ବ୍ରହ୍ମା' ଯେ 'ରଜ' ଗୁଣ ବହି
ତ୍ରିଗୁଣେ ତ୍ରିଦେବତା ଏହି ।
ବିଷ୍ଣୁ - ପାଳନ ,ବ୍ରହ୍ମା-ସୃଷ୍ଟି,ଶିବ- ସଂହାର,
ପାଳନ ସୃଷ୍ଟି ସଂହାର ।
ଏହି ତିନି ଶକ୍ତି ଅବିଦ୍ୟା ମୋହିନୀ ,
ଶବ୍ଦରୂପେ ବିରାଜନ୍ତି ।
(୨) 'ଅ' କାରରୁ ଋକ୍ ପୁଣି 'ଯଜୁ' 'ଉ' କାରରୁ,
ଜନମ ହୋଇଛି 'ସାମ' ବେଦ 'ମ' କାରରୁ ।
ଏହି ତିନି ବେଦ ମିଳି ହେଲେ 'ଅଥର୍ବ'
ଏକ୍ ଓଁ କାରର ଶକ୍ତି କରିଅଛି ସର୍ବ ।
ଓଁକାର ବ୍ରହ୍ମାଣ୍ଡ ଉତ୍ପତ୍ତି ।
ସେହି ଓଁକାର କରେ ସ୍ଥିତି ।
ତା ବିନୁ ନାହିଁ ଅନ୍ୟ କିଛି ।
(୪) ସତ୍ତ୍ୱ (ବିଷ୍ଣୁ) -ବାୟୁ,ରଜ(ବ୍ରହ୍ମା) -ବୀର୍ଯ୍ୟ ,ତମ (ଶିବ) ମନ ।
'ବାୟୁ' ରୂପେ 'ବିଷ୍ଣୁ' ପୁଣି 'ବ୍ରହ୍ମା' 'ବୀର୍ଯ୍ୟ' ରୂପେ ।
'ଶିବ'ମନ ରୂପେ ସ୍ଥିତି ଶରୀରରେ ଆପେ ।
'ତ୍ରିବୀଜ' 'ତ୍ରିଗୁଣ' ତିନିଶକ୍ତି ବଳେଜାତ ।
ନିଖିଳ ବ୍ରହ୍ମାଣ୍ଡେ ତତ୍ତ୍ୱ ପ୍ରଭାବରେ ସ୍ଥିତ ।

(୫) ଏହି ଓଁ କାର ଅଟଇ ସୃଷ୍ଟି ସ୍ଥିତି ଲୟ ।
ସାଧିଲେ ସାଧକ ନିଶ୍ଚେ ପାଇବ ଅଭୟ ।।
ଚଞ୍ଚଳମନକୁ ସ୍ଥିର କରିବ ଏ ମନ୍ତ୍ର ।
ସମଆସନରେ ବସି ଜପକର ନିତ୍ୟ ।।
ଏମନ୍ତେ ବ୍ରହ୍ମଆନନ୍ଦ ଲଭିବୁ ନିଶ୍ଚୟ ।
ପାପ ତାପ ନବାଧିବ ଚିତ୍ତ ହେବ ଥୟ ।।
ସତ୍ୟ ସରଳ ବିଶ୍ୱାସେ ଓଁ କାର ଜପିଲେ ।
ସ୍ୱୟଂ ନିରାକାର ତୁଲେ ମିଶିଯିବୁ ଭଲେ ।।

(୬) ଓଁ କାର ଅଟେ ଏକାକ୍ଷର ।
ଓଁକାର ସୃଷ୍ଟିର ସମ୍ଭାର ।।
ଓଁକାର ଅଙ୍ଗହୀନ ଦେହ ।
ସଂସାର ଶେଷେ ପୂରି ରହେ ।।

(୭) ଓଁ କାର ହୁଁ କାର ଦୁଇ
ନକାର ଇକାର ଲକାର ଦେଇ
ନାଦ ବିନ୍ଦୁଟି ଶୋଭଇ ।
ପ୍ରାନ୍ତରେ ସେ ବହ୍ନି ଜାୟା
ଏମନ୍ତ ଭଜନ୍ତି ଶ୍ରୀମତୀ ଶ୍ରୀୟା
ଯଶୋବନ୍ତ ଭାବେ ଏହା । - ( ବୀଜସାର ସଂହିତା,ଯଶୋବନ୍ତ)

(୮) ଓମ ଅକ୍ଷର ଭେଦ କଲେ
ତହିଁରୁ ସିଦ୍ଧି ପ୍ରକାଶିଲେ ।
ଅନନ୍ତ ଏ ବିଚାର କରି,
ଅକ୍ଷର ମୁଖରୁ ଉଦ୍ଧାରି । -( ପ୍ରାଚୀ -ନିର୍ଗୁଣ ମାହାତ୍ମ୍ୟ )

୪୧୫୬. ଓଁ କାର ହେଉଛି ଗାୟତ୍ରୀର ବୀଜ ,ତେଣୁ ବେଦରେ ଉଲ୍ଲିଖିତ ଅଛି ଯଥା-
ଓଁ କାରଂ ବିନ୍ଦୁ ସଂଯୁକ୍ତଂ ନିତ୍ୟଂ ଧ୍ୟାୟନ୍ତି ଯୋଗିନଃ
କାମଦଂ ମୋକ୍ଷଦଂ ଚୈବ ଓଁ କାରାୟ ନମୋନମଃ ।

୪୧୫୭. ଓଁ ଅଥ ଓଁ ଅଥ ଓଁ ଅଥ ଓଁ ମଙ୍ଗଳଂ ମେ ଅସ୍ତୁ । - (ମଙ୍ଗଳାଚରଣ)

୪୧୫୮. ଓଁ ପ୍ରାଣାୟ ସ୍ୱାହା । ଓଁ ଉଦାନାୟ ସ୍ୱାହା । ଓଁ ସମାନାୟ ସ୍ୱାହା ।

ଯେଉଁମାନେ ଏହି ଉପନିଷଦ ବିଧି ଅନୁସାରେ ଆହୂତି ବିଧିପୂର୍ବକ ଏହି ପ୍ରକାର ହବିଷ୍ୟାନ୍ନ ଛୋଟ ଛୋଟ ବାଟୁଳା କରି ଦନ୍ତ ସ୍ପର୍ଶ ନ କରାଇ ଜିହ୍ୱା ଦ୍ୱାରା ପଞ୍ଚଗ୍ରାସ କରିଥାଆନ୍ତି - ଫଳପ୍ରାପ୍ତି ସ୍ୱରୂପ ସେମାନେ ଚିରକାଳ ପର୍ଯ୍ୟନ୍ତ ସ୍ୱର୍ଗରେ ବାସ କରନ୍ତି । ତେଣୁ କୁହାଯାଏ 'ପଞ୍ଚଗ୍ରାସ ,ସ୍ୱର୍ଗରେ ବାସ' ।

୪୧୫୯. ଓଁ ନମୋ ଗଣେଶ ବିଘ୍ନେଶ !
ଗିରିଜା ନନ୍ଦନ ପ୍ରଭୋ ;
ମମ ବିଘ୍ନ ବିନାଶାୟ
ଗଣାଧିପତୟେ ନମଃ ।

ପ୍ରାର୍ଥନା -

ଅସତୋ ମା ସଦ୍‌ଗମୟ
ତମ ସୋ ,ମା ଜ୍ୟାତିର୍ଗମୟ,
ମୃତ୍ୟୋର୍ମା ଅମୃତଂ ଗମୟ ।

ଅସତ୍ୟ ଜଗତରୁ ସତ୍ୟ ଜଗତକୁ ନେଇଯାଅ, ଅନ୍ଧକାରମୟ ପରିବେଶରୁ ଆଲୋକିତ ରାଜ୍ୟକୁ ଘେନିଯାଅ । ମୃତ୍ୟୁ ରାଜ୍ୟରୁ ଅମୃତତ୍ୱର ରାଜ୍ୟରେ ପହଞ୍ଚାଇ ଦିଅ ।

୪୧୬୦. ଓଁ ନମୋ ଭଗବତେ ବାସୁଦେବାୟଃ ।

ଏହ ଦ୍ୱାଦଶାକ୍ଷର ମନ୍ତ୍ର ଜପକଲେ ସକଳ ଦୁଃଖ ,ରିଷ୍ଟ ବିନଷ୍ଟହୋଇ ସର୍ବ ଅଶାନ୍ତି ଦୂର ହୁଏ । ଅନ୍ତର ଶାନ୍ତିରେ ରୁହେ ।

୪୧୬୧. ଓଁ ନମଃ ଶିବାୟ ।

ଏହା ଶିବ ଷଡ଼ାକ୍ଷର ମନ୍ତ୍ର । ଏହାକୁ ପାଠ କରି ଗୋଟିଏ ଫୁଲ ଓ ଜଳ ଶିବ ଲିଙ୍ଗର ମସ୍ତକରେ ଯେ ଦିଏ ତାର ପୂନର୍ଜନ୍ମ ହୁଏ ନାହିଁ ।

୪୧୬୨. ଓଁ ଶୂନ୍ୟ ବ୍ରହ୍ମଣେ ନମଃ ।

ପଞ୍ଚଦଶ ଶତାବ୍ଦୀର ଦିବ୍ୟଦ୍ରଷ୍ଟା ମହାପୁରୁଷ ଅଚ୍ୟୁତାନନ୍ଦଙ୍କର ଶ୍ରୀଜଗନ୍ନାଥଙ୍କୁ ଧ୍ୟାନ କରିବାର ମନ୍ତ୍ର । ରହସ୍ୟମୟ ଶ୍ରୀଜଗନ୍ନାଥଙ୍କୁ କିଏ ବା ଜାଣିପାରିବ ? ଜ୍ୟୋତି ସ୍ୱରୂପ ପରଂବ୍ରହ୍ମ ନିରାକାର ଶୂନ୍ୟ ମଣ୍ଡଳରେ ଉପଲବ୍ଧ ହୁଅନ୍ତି ।

୪୧୬୩. ଓଁ ମଣିପଦ୍ମେହୁଁ ।

ତିବ୍ବତୀୟ ଲାମାମାନଙ୍କର ଜପକରିବା ମନ୍ତ୍ର । ତିବ୍ବତରେ ପ୍ରବାଦ ଅଛିଯେ ,ମାନସରୋବର ପୂର୍ବେ ରାକ୍ଷସଙ୍କ ଆବାସ ଭୂମିଥିଲା । ପଦ୍ମମୁନି କାଶୀଠାରୁ ଜ୍ୱଳାମୁଖୀ ବାଟେ ତିବ୍ବତକୁ ଆସି ଧର୍ମପ୍ରଚାର ଓ ମଠ ସ୍ଥାପନ ପୂର୍ବକ ତିବ୍ବତ୍‌ବାସୀଙ୍କୁ ଏହି ମନ୍ତ୍ରରେ ଦୀକ୍ଷିତ କଲେ । ଏଥିପାଇଁ ତିବ୍ବତବାସୀ 'କାଶୀଲାମା' (=ଭାରତୀୟ ଯୋଗୀ) ମାନଙ୍କୁ ସମ୍ମାନ କରନ୍ତି । ତେଣୁ କୌଣସି ଗ୍ରନ୍ଥ ଲେଖିବା ପୂର୍ବରୁ ତିବ୍ବତରେ ପ୍ରଥମେ ଦେବତାଙ୍କ ନାମ ପରି 'କାଶୀ' ନାମ ଲେଖାଯାଏ ।

୪୧୬୪.　ଓଁ ତତ୍‌ସତ୍ । - ବ୍ରହ୍ମପ୍ରତିପାଦକ ବାକ୍ୟ ତଥା ମହାବାବ୍ୟ ।

୪୧୬୫.　ଓଁ ତତ୍‌ସତ୍ ଓଁ ଏକମେବା ଦ୍ୱିତୀୟଂ ।

୪୧୬୬.　ଓଁ କାର ରୂପେ ଥିଲା ବେଦ ,କେହି ନ ଜାଣନ୍ତି ତାର ଭେଦ ।

୪୧୬୭.　ଓଁ ପକ୍ଷୀନ୍ଦ୍ରାୟ ନମଃ (= ଗରୁଡ଼ଙ୍କ ମନ୍ତ୍ର) ।

ଶଙ୍କରଙ୍କର ବାହନ ବୃଷଭ ଓ ବ୍ରହ୍ମାଙ୍କର ବାହନ ମରାଳ । ଶ୍ରୀବିଷ୍ଣୁଙ୍କୁ ଆବାହନ କରିବା ପୂର୍ବରୁ ତାଙ୍କର ବାହନଙ୍କ ପ୍ରୀତି ଭାଜନ ହେବା ବିଧେୟ । ଶାସ୍ତ୍ରୀୟ ବିଧାନ ଅନୁସାରେ ଶିବ, ବିଷ୍ଣୁ , ଦୁର୍ଗା , ଗଣେଶଙ୍କୁ ଯଥାକ୍ରମେ ସେମାନଙ୍କର ବାହନ ବୃଷଭ ,ଗରୁଡ଼,ସିଂହ ଓ ମୂଷିକମାନଙ୍କୁ ପ୍ରଣାମ କରିବାକୁ ହୁଏ । ଗରୁଡ଼ ଅହିକୁଳର ଶତ୍ରୁ ହୋଇଥିବାରୁ ଗରୁଡ଼ ମନ୍ତ୍ରରେ ଉପଚାର କଲେ ବିଷ ନଷ୍ଟହୁଏ ଓ ସର୍ପଭୟ ଦୂର ହୁଏ । ଓଡ଼ିଆରେ ଏହାକୁ 'ଗାରୁଡ଼ି' ମନ୍ତ୍ର କହନ୍ତି । ମନ୍ତ୍ରଟି ହେଲା 'କ୍ଷିପ୍ ଓଁ ସ୍ୱାହା' ।

୪୧୬୮.　ଓଠ ଖଣ୍ଡିଆ ,ଚପଳ ମତି,
ପିଙ୍ଗଳ ଆଖି ,ଅଲକ୍ଷଣ ଅତି ।
ପେଟ ପିଠି ଉଚ୍ଚ ଲଲାଟ,
ଦେଖିବ ଯେବେ ଛାଡ଼ିବ ବାଟ ।
ଦିଅର ବଧ ସ୍ୱାମୀକୁ ମାର,
ଡ଼ାକ ବୋଲେକି ପାଇଟି (=କାମ) ତାର ।
× × × ×
ଓଡଣା କାଢି କରେ ଇସାରା,
ତା' ସଙ୍ଗେ କି ଘର ପସରା ।
× × × ×
ଖରାରେ ରାନ୍ଧେ କାଠ ନଡ଼ାରେ ,
ବର୍ଷାଦିନେ ଚାଳ ଆଞ୍ଜୁଡ଼େ ।
ଓଦା ହାତରେ କାଢେ ଲୁଣ ,
ଗୁରୁ ଗ୍ରାସରେ କରେ ଭୋଜନ ।

ଏକ କଥାକୁ ଦୁଇ କଥା କରେ ,
ସ୍ୱାମୀ ଶେଯକୁ ଗୋଇଠା ମାରେ ,
କିଛି କହିଲେ ବର୍ଷେ ଗାଳି ,
ତା ସ୍ୱାମୀ କିଆଁ ନୁହେଁ ଭିକାରି ?
× × ×

ଅତିଥି ଦେଖିଲେ କୁପିତ ହୁଏ, ଦାସ ଦାସୀଙ୍କୁ ଗାଳି ଦିଏ ,
ନ ବୁଝି ନ ଶୁଝି ହସ କାନ୍ଦଣା ,ସେ ଗୃହିଣୀର ଘର କରଣା ?

× × × ×

ଗୃହିଣୀ ହୋଇ ରୂପରେ ଭୁଲେ (ରୋଷେ)
ସ୍ୱାମୀ ପିତାକୁ ପାଦରେ ଠେଲେ (ଘସେ) ।
ଘର ନାଶ ଯାଏ ଅଳପ ଦିନେ ,
ଡ଼ାକ ବୋଲେ ୟାକୁ ହେଜିବ ମନେ ।

× × × ×

ବଡ଼ି ସକାଳୁ ନିଦ୍ରା ଯାଏ ,
ବାସୀ ଶଯ୍ୟା ସୂର୍ଯ୍ୟ ନ ପାଏ ।
ଉଦୟ ବେଳେ ଚଡ଼ା (= ତ୍ୟାଗ କରିବା)
ସଞ୍ଜ ହେଲେ ବାରା(= ବାରନାରୀ)
ସେ ଗୃହିଣୀ ମୁହଁଟା ପୋଡ଼ା

× × × ×

ଘର ସ୍ୱାମୀ ଯେବେ ବାହାରେ ବସେ,
ସଭିଙ୍କୁ ଚାହିଁ ମୁଚକି ହସେ ,
ଏପରି ସ୍ତ୍ରୀ ସଙ୍ଗେ କଲେ ବାସ,
ଜୀବନଟି ତାର ହୁଏ ହତାଶ ।

× × × ×

ଯେଉଁ ନାରୀ ଦିନରେ ଶୁଏ,
ଗାଳି ଦିଏ ,ରୋଷି( =କ୍ରୁଦ୍ଧିତ) ଧାଏଁ,
ଚେଡ଼ୀ ' ପୋ ରହେ ଅପୁଛେ (=ଅପୁଛା)
ଡ଼ାକ ବୋଲେ -ବାହା ହେଲେ ମିଛେ ।

୪୧୬୯. ଓଟ ପେଟରେ ଜଳର ଜ୍ୱାଳା,
କିଆଁ ସେ ଶୋଷରେ ହୋ ହୋଲ୍ଲା ।

୪୧୭୦. ଓଟ ପାଣି ଖାଏ ଲମ୍ୱାଇ ବେକ,
ଆଉ ନ କରିବୁ ଝିଅ ସୋହାଗ ।

୪୧୭୧. ଓଉ ,ଆମ୍ବଡ଼ା, ତାଳ,ଆବାଳ ବୃଦ୍ଧ ଭଲ
ଏହି ତିନୋଟି ଯାକ ଫଳ ସବୁ ଅବସ୍ଥାରେ ପ୍ରଶଂସିତ ।

୪୧୭୨. ଓଢଣା ପଡ଼ିଛି ନାକ ସରିକି ,
ପାଟି ଶୁଭୁଅଛି ଚଉପାଢିକି ।

୪୧୭୩. *ଏକାର୍ଥରେ* -ଓଢଣା ପଡ଼ିଛି ଘୋଡ଼ଣା(=ଗୋଡ଼ମୂଳ) ଯାଏଁ ।
ତୁଣ୍ଡ ଶୁଭୁଅଛି ରେମୁଣା ଯାଏଁ ।

ଉପରେ ଚିକଣଚାକଣ ଓ ଭଦ୍ର ପରିଧାନ ମାତ୍ର ପ୍ରକୃତିରେ କଳିହୁଡ଼ି ସ୍ତ୍ରୀ । ଏଡ଼େପାଟିରେ କଳି କରୁଛିଯେ ବାଲେଶ୍ୱଠାରୁ (ଛଅ କି:ମି:) ରେମୁଣା(କ୍ଷୀରଚୋରା ଗୋପୀନାଥଙ୍କ ପୀଠ)ପର୍ଯ୍ୟନ୍ତ ଶୁଣାଯାଉଛି ବୋଲି ଉପମା ଦିଆଯାଇଛି ।

୪୧୭୪. ଓଷା ଯାକରେ 'ଖୁଦୁରୁ କୁଣୀ'
ଯାତ ଯାକରେ 'ତିରିବିଣୀ'
ଧାନ ଯାକରେ 'ବଉଳା'
ବନ୍ଧୁ ଯାକରେ 'ମଉଳା'
ଫୁଲ ଯାକରେ' ବଉଳ'
ମାଛ ଯାକରେ 'ଶେଉଳ'
ବିଲ ଯାକରେ ଯୋରି (=ଯୋଡ଼ଜମି)
ବୋହୂ ଆଣିବ ଗୋରୀ ।

ପୂର୍ବେ ଯୋଡ଼ଜମିର ବିଶେଷତ୍ୱ ଥିଲା । ଏବେ ନାଳପାଣି ମାଡ଼ିବା ପରେ ଯୋଡ଼ଜମିର ବିଶେଷତ୍ୱ ଆଉ ରହିଲା ନାହିଁ ।

୪୧୭୫. ଓଷା କଲେ ବେଳ ବୁଡ଼,ଘର କଲେ ଭାଙ୍ଗେ ହାଡ଼ ।

୪୧୭୬. ଓସ୍ତ ପତର ପାନିଆଁ
ଚଉଧୁରୀ ଝିଅ କନିଆଁ ,
ସାଆନ୍ତାରା ପୁଅ ବର,
ବାଇଦ ବାଜେ ଢଙ୍ଗର ଢଙ୍ଗର ।

୪୧୭୭. ଓଃ ! କୁଜି ଗେଣ୍ଡା ଶଙ୍ଖ ପାଲଟି ଗଲେ ।

୪୧୭୮. ଓଲଟା(= ଉଲଟା) ଚୋର ମଶାଣିରେ ଗାଏ (=ଗାଇବା) ।

ପ୍ରାଚୀନକାଳର ପ୍ରଥା ଅନୁସାରେ ଶ୍ମଶାନ ନେଇଯିବା ସମୟରେ ଚୋରର ଦୋଷକୀର୍ତ୍ତନ ଓ ଶାସ୍ତି ସମ୍ପର୍କରେ ଉଲ୍ଲେଖ କରିବା । ଏପରି କରିବାଦ୍ୱାରା ଚୋରର ଦୁର୍ଗୁଣ ଜନିତ ପାପ କ୍ଷମଣୀୟ ହେବ ବୋଲି ଲୋକ ବିଶ୍ୱାସ ।

୪୧୭୯ ଓଳି ତଳେ ଲୁଣ ,କୋଟିଏ ମହଣ
ବୋଇଲେ କି ହେବ ,ଖାଇବାକୁ ହେବ
ଲିଭର ପୁଲ୍‌ର ଲୁଣ । - (ଫକୀର ମୋହନ )

ଇଂରେଜ ସରକାର ଲୁଣମରା ଉପରେ କର ଓ କଟକଣା କରି ବିଲାତର ଲିଭରପୁଲ୍‌ରୁ ଲୁଣ ଆଣି ଭାରତରେ ବିକ୍ରି କରାଉଥିଲେ । ମହାତ୍ମାଗାନ୍ଧୀଙ୍କର ଯୁଗାନ୍ତକାରୀ ଲବଣ ସତ୍ୟାଗ୍ରହ ସର୍ବଜନ ବିଦିତ ।

୪୧୮୦. ଓଳିଆ ଗାଣ୍ଡି ପୁଇ କଗଣ୍ଡି
ପଚା ମାଛ ଖାଏ
ଓଡ଼ିଆଙ୍କର ପାଡ଼ଶୁଙ୍ଗି ଶୁଙ୍ଗି
ଦିନ ରାତି ଯାଏ ।

୪୧୮୧. ଓଲଟ କଦମ୍ବ ମୂଳ ଉପରେ ରହିଛି ,
ଡ଼ାଳ,ପତ୍ର, ଫଳ,ମୂଳ, ଓହଳି ପଡ଼ିଛି ।
ସେଠାରେ ହେଉଛି ନୀତି ମୁରଲୀର ସ୍ୱର,
ସ୍ଥିର କରି ଲୟକର ଶୁଣିବ ଶୂନ୍ୟର । ( ଶ୍ରୀ ବୀରସିଂହ ଚଉତିଶା )

୪୧୮୨. ଓଲଟେଇଲେ ଯାହା ,ପାଲଟେଇଲେ ତାହା ।

୪୧୮୩. -ଏଜନ- ଏ ପିଠି ସେ ପିଠି ,ଦୁଇ ପିଠି ସମାନ ।

୪୧୮୪. ଓଜସ୍ଚ' ତେଜସ୍ଚ ସହସ୍ଚ ବଳଂଚ,
ବାକ୍ ଚେନ୍ଦ୍ରିୟଂ ଚ ଶ୍ରୀଶ୍ଚ ଧର୍ମଶ୍ଚ ।

ପରିବାରରେ ଓଜ,ତେଜଶକ୍ତି ,ବଳ,ଭାଷଣଶକ୍ତି , ହୃଷ୍ଟପୁଷ୍ଟ ଇନ୍ଦ୍ରିୟ, ଲକ୍ଷ୍ମୀ ଓ ଧର୍ମର ନିବାସ ହେଉ

୪୧୮୫. ଓଲୁଅ ପରି ବଢିଯା
ବଣସାରୁ ପରି ମାଡ଼ିଯା ।
ଜାଁ ଜାଁ -ବଜ୍ର ହୋ ! ବଜ୍ର ହୋ ! ।

ଷଠିଓଷା ,ଷଷ୍ଠିଦେବୀଙ୍କ ପୂଜା ଭାଦ୍ର ଶୁକ୍ଳ ଷଷ୍ଠି ତିଥିରେହୁଏ । ଏହାର ପରଦିନ'କକୁଟୀ' ବା 'ଲଳିତା ସପ୍ତମୀ' ବ୍ରତ ପାଳିତହୁଏ । ଏହି ଦିନ ଶିଶୁମାନଙ୍କ ପିଠିରେ ମାଆ ଆଦି ବର୍ଷିୟସୀମାନେ ବଜ୍ରମୁଳୀ,ସାରୁନାଡ଼,ବାଉଁଶପତ୍ର,ଧାନପତ୍ରର ବିଡ଼ା ବାନ୍ଧି ଧୀରେ ଧୀରେ ଆଘାତ କରନ୍ତି । ଏହାକୁ ଷଠିବାଡ଼ିଆ କହନ୍ତି । ଏହିପରି ଆଘାତ କରୁଥିବା ସ୍ତ୍ରୀ ର ବୋଲି ବା ପଦ ।

୪୧୮୬. ଓଳାଅ ଜୀବନ ବାଟ
ସତ୍ୟର ଛାଞ୍ଚୁଣି ଧରିଣ ହାତରେ
ଜିତିବା ସଂସାର ହାଟ । - (ବାଳକୃଷ୍ଣ -ଫୁଲ ବଉଳ ବେଣୀ)

୪୧୮୭. ଓକିଲ ଯେବେଟି ନ ଜାଣେ ଫାନ୍ଦି
ନୂଆ ବୋହୂ ଯେବେ ନ ଜାଣେ ରାନ୍ଧି ।

ଚାକର ନ ଜାଣେ ଚାଟୁ ବଚନ,
ଯେତେ ଗୁଣୀ ହେଲେ ସେ ଅକାରଣ ।

୪୧୮୮. ଓଳିଆ ଗାଈ,ଠକିବା ଭାଇ
ଦୋଚାରୁଣୀ ନାରୀ, ଭଣ୍ଡଇ ଆଇ ।
ଗାଁ ବୁଲାଝିଅ,ଲଫଙ୍ଗା ପୁଅ
ଯାଙ୍କ ଲାଗି ବହେ ଗାଳିର ସୁଅ ।

୪୧୮୯. ଓକିଲ ଆଉ ଗାଡ଼ିର ଅଖ,
ଘିଅ ତେଲ ଦେଇ ଶଖ ।

ଗାଡ଼ି ଅଖରେ ତେଲଦେଲେ ତାହା ଯେପରି ଠିକ୍‌ଭାବରେ ଗଡ଼େ ,ସେହିପରି ଓକିଲଙ୍କଠାରୁ ଭଲ କାମ ପାଇବାପାଇଁ ତାଙ୍କୁ ଘିଅ ଅର୍ଥାତ୍ ଅର୍ଥ ଦେଇ ତେଲ ଅର୍ଥାତ୍ ଖୋସାମତ କରି ସନ୍ତୁଷ୍ଟ କରିବାକୁ ପଡ଼େ ।

୪୧୯୦. ଓଢଣ ଷଷ୍ଠୀ ।

ମାର୍ଗଶିର ଶୁକ୍ଳ ଷଷ୍ଠି । ଏହି ଦିନ ଶ୍ରୀ ଜଗନ୍ନାଥ ଶୀତବସ୍ତ୍ର ଲାଗିହୁଅନ୍ତି । ଏହା କୁମ୍ଭାର ମାନଙ୍କର ପ୍ରଧାନ ପର୍ବ ।

୪୧୯୧. ଓଳିଆ ଉପରେ ନୋଳିଆ (=ଅନାର୍ଯ୍ୟ) ଖଦି ,
କିଏ ହଜାଇଲା ତୁମର ବୁଦ୍ଧି ?

୪୧୯୨. ଓଡ଼ିଶାର ଛୁଇଁ ମାଟି
ଆସ ଗଜପତି ଖେଳିମା ବାଟି (=କଉଡ଼ି ଖେଳ) ।
ପଡ଼ିଛେ ଜହ୍ନକ ରାତି ।

୪୧୯୩. ଓଡ଼ିଶା ଦେଉଳରେ ଝାଂଜିରି କବାଟ,
ମାଛିକି ଶିକୁଳି ,ଯମକୁ ନାହିଁ ଭେଟ ।
କେଉଁବାଟେ ଚୋର ପଶିଲେ ନେଲେଣି ରତ୍ନଖଟ ।

୪୧୯୪. ଓଲୁତ ଓଲୁ ,ଓଲୁଙ୍କ ବୋକଚା ବୁହା ।

୪୧୯୫. ଓକିଲ ଦଲାଲ ପକାଏ ଖେପା ଜାଲ ।

ଓକିଲର ଦଲାଲ ଅର୍ଥାତ୍ ମୋହରିର ମହକିଲ ଯୋଗାଡ଼ ପାଇଁ ଫାନ୍ଦ ପାଦେ ।

୪୧୯୬. ଓଧୁଅ (=ଓଧ) ସାଙ୍ଗରେ ବଣ ଭୁଆ ବାଇ ।

ବିପରୀତ ପ୍ରକୃତିଯୁକ୍ତ ଆଚରଣ କରୁଥିବା ବ୍ୟକ୍ତି ମଧରେ ଭାବ ଅସମୀଚୀନ ।

୪୧୯୭. ଓଲଟ ବୁଝଲିୟା ରାମା ।

ଥରେ ଜଣେ ଲୋକ ଭଗବାନଙ୍କୁ ପ୍ରାର୍ଥନା କରି କହିଲା 'ମୋତେ ଘୋଡ଼ାରେ ଚଢ଼ାଅ' । ଏହି ସମୟରେ ଜଣେ ପଥିକ ଘୋଡ଼ୀ ପିଠିରେ ବସି ଲୋକଟି ପାଖରେ ପହଞ୍ଚିଲା । ଘୋଡ଼ୀଟି ଗର୍ଭବତୀ ଥିଲା । ତାର ଗୋଟିଏ ଘୋଡ଼ା ଛୁଆ ହେଲା । ପଥିକ ସେ ଘୋଡ଼ାଛୁଆଟିକୁ କାନ୍ଧେଇ ନେଇଯିବା ପାଇଁ ଲୋକଟିକୁ କହିଲା । ଲୋକଟି ଘୋଡ଼ା ଚଢ଼ିବ ବୋଲି ଘୋଡ଼ା ଛୁଆଟିକୁ କାନ୍ଧେଇଲା । ଯେଉଁ ଲୋକ ଘୋଡ଼ା ପିଠିରେ ଚଢ଼ିବ ବୋଲି ପ୍ରାର୍ଥନା କରୁଥିଲା ,ଏବେ ଘୋଡ଼ା ତା ପିଠିରେ ଚଢ଼ିଲା । ଏଇ ଗଳ୍ପକୁ ଉପଲକ୍ଷ କରି ଏଇ ହିନ୍ଦୀ ପ୍ରବଚନଟି ଓଡ଼ିଶାରେ ପ୍ରଚଳିତ ।

୪୧୯୮.　ଓଶକା କଣ୍ଢି

ତୋ ମନରେ ଥାଉ କି ନଥାଉ

ମୋ ମନରେ ଷୋଳଘଡ଼ି (=ଦିନରାତି) ।

ଅଶୋକ କଢ଼ି ପରସ୍ପର ମୁହଁରେ ଦେଇ ଦିବନ୍ଧୁ 'ଓଶକା' ଅର୍ଥାତ୍ ସଙ୍ଗାତ ବସନ୍ତି । ବାଲ୍ୟ ଓ କୈଶୋର ସଙ୍ଗିନୀକୁ ସର୍ବଦା ସ୍ମରଣ କରି ଯୁବତୀଟି ଆନନ୍ଦ ପାଉଛି ।

୪୧୯୯.　ଓଡ଼ିଆ ତିନ୍ତିଲେ ଘର ଛପର କରନ୍ତି ।

ଓଡ଼ିଆ ନ ତିନ୍ତିଲେ ଘର ଛାଆନ୍ତି ନାହିଁ ।

୪୨୦୦.　ଓଳିଆ ଗଲାଣି ବମାଖାଇ (=ପୋକରା ଶସ୍ୟାଦି)

ଚକୁଳି ପଡ଼ିଛି ଠାକରା (=ଶୁଷ୍କ) ହୋଇ ।

୪୨୦୧.　ଓଟ ଯାଏ ନାଳେ ନାଳେ

ଥାଳେ ପିଏ ପାଣି

ଥାଳକୁ ରସି ମୁଁ ଥାଳିକୁ ଛାଡ଼ିଲି

ବୁଲିଲି ପତର କିଣି ।

ମନୁଷ୍ୟନିଜେ ହିଁ ନିଜର କ୍ଷତି କରେ । ନିଜ ମନକୁ ଠିକ୍ ରଖି ନପାରି ଅଧୋଗତିକୁ ବରଣ କରେ । ଉଦାହରଣ ସ୍ୱରୂପ ଥାଳିରୁ ,ଥାଳ ଓ ଶେଷରେ ଖଳିପତ୍ର ହିଁ ତାର ଭୋଜନ ପାତ୍ର ହୋଇଥାଏ - ଅର୍ଥାତ୍ ଦିନକୁ ଦିନ ତାର ଆର୍ଥିକ ଅଧୋଗତି ହୋଇଥାଏ ।

୪୨୦୨.　ଓଢ଼େ କମ୍ବଳ ପଢ଼େ ରହେ ।

ଅଳସୁଆ ଲୋକପ୍ରତି । ଅନ୍ୟ ଅର୍ଥରେ ବିପଦ ବେଳେ ସବୁ ଦୁଃଖ ଆଖିବୁଜି ସହିଯିବା ଉଚିତ ।

୪୨୦୩.　ଓଡ଼ିଆ ମାଈ, ପଶ୍ଚିମା ଗାଈ

ବଙ୍ଗାଳୀ କେଶ,ତେଲେଙ୍ଗା ବେଶ ।

ଓଡ଼ିଶାର ସ୍ତ୍ରୀ ଲୋକମାନେ ଦେଖିବାକୁ ସୁନ୍ଦର । ପଶ୍ଚିମା ଗାଈ ଦୁଧିଆଳୀ । ବଙ୍ଗାଳୀ ସ୍ତ୍ରୀ ଲୋକଙ୍କ କେଶ ଓ କେଶବନ୍ଧା ଯେପରି ସୁନ୍ଦର ସେହିପରି ତେଲଙ୍ଗା ସ୍ତ୍ରୀମାନଙ୍କର ବେଶ ସୁନ୍ଦର ।

୪୨୦୪. ଓଧ ଖାଇଲା ପାଚେଲା କଦଳୀ
ଘୁଷୁରି ଖାଇଲା ପାନ
ଭୁଆ ବିରାଡ଼ି ବଇଷମ ହୋଇ
ସଭାରେ କହୁଛି ଜ୍ଞାନ ।

୪୨୦୫. ଏକାର୍ଥରେ-ଓଧ ଖାଇଗଲା ପାଣି କଖାରୁ ଲୋ,
(ଗେଧ)(=ଅଣ୍ଡିରା ମାଙ୍କଡ଼)ଖାଇଗଲା ପାନ
ଭୁଆବିରାଡ଼ି ବଇଷମ (=ବୈଷ୍ଣବ)ହୋଇ
ଖାଇଗଲା କୋଡ଼ିକୋଦାଳ ଲୋ,
ଏ କଥା ଶୁଣିଲା କାନ ।

ଅସମ୍ଭବତା ଓ ଅସାମଞ୍ଜସ୍ୟ କଥାକୁ ନେଇ ହାସ୍ୟରସର ସୃଷ୍ଟି ।

୪୨୦୬. ଓଲ (=ଓଲୁଅ) ଗଛରେ ପୋଲ(=କଣା) ।
ଅନ୍ନ କଷ୍ଟରେ ପଞ୍ଜରା ଦିଶିଲା ।
ଢର କଲା ବୋଲି ବୋଲ ।

ଦରିଦ୍ରର ଦରିଦ୍ରତାକୁ ପ୍ରକାଶ ନ କରିବା । ପ୍ରକୃତ ପକ୍ଷେ ଖାଇବାକୁ ନ ପାଇ ପଞ୍ଜରା ହାଡ଼ ଦେଖାଯାଉଛି । ମାତ୍ର ପ୍ରକୃତ କଥା ।କୁ ଲୁଚେଇ ଢରରେ ଶୁଖି ପଞ୍ଜରାକାଠି ଗଣିହଉଛି ବୋଲି କହିବା ।

୪୨୦୭. ଓଳକି (=ନମସ୍କାର) ଗୋସେଇଁ - ନା ' ତୋ ମନ ତୋତେ ଫଳୁ'

ପରିହାସ କରି ଦରିଦ୍ର ବ୍ରାହ୍ମଣକୁ ନମସ୍କାରକଲେ, ଏପରି ଲୋକକୁ ବ୍ରାହ୍ମଣ ତୋ 'ମନ ଅନୁସାରେ ତୁ ଫଳ ପା' ବୋଲି କଲ୍ୟାଣ କରିଥାଏ ।

୪୨୦୮. ଓଳି ତଳେ ସବୁ ଗୋ ଡ଼ି
ଭାଇ ଯେତେବେଳେ ବିଭା ହୋଇଯିବେ
ହଲୁ ଥିବ କାନ ଦୋଳି ।

ନିକଟ ଭବିଷ୍ୟତରେ ଭାଇର ବିବାହ ଉତ୍ସବ ଚିନ୍ତାରେ ଭଉଣୀର ଆନନ୍ଦ ।

୪୨୦୯. ଓଲୁଅ ପତର ବଣ ସାରୁ,
ରହ ରହ ବୁଢା ଦମ୍ଭମାରୁ ।

ବୁଢା ଲୋକ ପ୍ରତି ବ୍ୟଙ୍ଗ ।

୪୨୧୦. ଓଲୁଅ ଲାଗଇ ଗଲୁ
ବାପା କରିଥିଲେ ବାଛି ବାଛି ଜୋଇଁ
ସେ ତ ନିପଟ ଓଲୁ ।

ସ୍ୱାମୀର ଓଲାମୀ ଅର୍ଥାତ୍ ମୂର୍ଖତାପାଇଁ ସ୍ତ୍ରୀ ତା ବାପାଙ୍କୁ ଦୋଷ ଦେଉଛି ।

୪୨୧୧. ଓଲମା (=ଓଲୁ ) ହୋଇ ଯେବେ କରେ ଚୋରୀ,
ଗରିବ ମାଇପ ହେଲେ ସୁନ୍ଦରୀ,
ଯୁବତୀ ଦେହର ବଡ଼ ବେମାରୀ
ସହି(=ସଙ୍ଗାତ) ବସଇ ଦେଖିଣ ଥୋବରୀ ( =ନିଲ୍ଲଜ୍ଜୀ),
ରମଣ ଇଚ୍ଛି ଯେ ବ୍ରହ୍ମଚାରୀ
ଏମାନଙ୍କ ମନ ହୁଅଇ ଘାରି ।

୪୨୧୨ **ସର୍ବଜନ ବଶିକରଣ**

ମନ୍ତ୍ର - ଓଁ ବଶ୍ୟ ମୁଖୀ ରାଜମୁଖୀ ସ୍ୱାହା ।

ବିଧାନ - ସଂସାରରେ କେହି କାହାକୁ ଆନ୍ତରିକ ଭାବରେ ଭଲ ପାଉନାହାନ୍ତି । ତେଣୁକରି ପରଅପରକୁ ସାହାଯ୍ୟ କରୁନାହିଁ । ଏପରି କ୍ଷେତ୍ରରେ ବହୁକାର୍ଯ୍ୟହୋଇପାରୁ ନାହିଁ । ଅନେକ ନିରୀହ ବ୍ୟକ୍ତି ସମସ୍ତ କ୍ଷେତ୍ରରେ ହଇରାଣ ହେଉଛନ୍ତି । ତେଣୁ ସେମାନେ ଏହା ଅବଲମ୍ବନ କଲେ ସର୍ବଦା ସୁଫଳ ପାଇବେ ।

ସାଧକ ସକାଳୁ ଉଠି ପାଣି ଡାଳ ଧରି ଏହି ମନ୍ତ୍ରକୁ ଏକୋଇଶ ଦିନ ପର୍ଯ୍ୟନ୍ତ ଦିନକୁ ଶହେଥର ଯାହାଙ୍କର ନାମ ଧାରଣ ପୂର୍ବକ ପଢିବେ ଏବଂ ଡାଳପାଣିରେ ସପ୍ତବାର ମୁଖଧୌତ କରିବେ ସେ ଲୋକ ନିଶ୍ଚୟ ବଶ୍ୟତା ସ୍ୱୀକାରକରି କାର୍ଯ୍ୟରେ ଲାଗିବ ।

୪୨୧୩. **ଅବୋଲକରା ସ୍ତ୍ରୀ ବଶିକରଣ**

ମନ୍ତ୍ର- ଓଁ ନମଃ କ୍ଷିପ୍ତ କାମିନୀ ଅମୁକି (ନାମଧରିବ)
ମେ ବଶମାୟା ହ୍ରଂ ଫଟ୍ ସ୍ୱାହା ।

ବିଧାନ- ପ୍ରାତଃର ପ୍ରଥମ ପ୍ରହରକୁ ଦାନ୍ତ ଧୌତ ପୂର୍ବକ ଯେଉଁ ସ୍ତ୍ରୀ ଅବୋଲକରା ହେଉଛି ତାହାଙ୍କର ନାମକୁ ଏହି ମନ୍ତ୍ରରେ ସାତଥର ମନ୍ତୁରାଇ ସାତ ଗଣ୍ଡୁସ ପାଣିକୁ ପାନକରିବ । ସେ ସ୍ତ୍ରୀ ଟାଣି ହୋଇ ଆସି ସମସ୍ତ ବୋଲ ମାନିବ ।

୪୨୧୪. **ଅଳତୀ ନିର୍ମୁଳ ପାଇଁ**

ମନ୍ତ୍ର - ଓଁ ଅଳତୀ ଅଳତୀ ସାତ ଜଣ ଜାଣନ୍ତି
ଓଁ ଅଳତୀ ପୂଜା ଉଠିଲା ନିଶାଭାଗ ରାତି
ସପ୍ତଋଷି ଦେଲେବର
ରେ ରେ ଅଳତୀ ଅତି ବେଗେ ମର ।
ନମରୁ ବୋଲି କହାର ଆଜ୍ଞା
ଈଶ୍ୱର ପାର୍ବତୀଙ୍କର କୋଟିଏ ଆଜ୍ଞା ।
ବ୍ରହ୍ମା ,ବିଷ୍ଣୁ ଅଇଲେ ଧାଇଁ

ଦେଖିଲେ ଅଳତୀ ପାତାଳେ ନାହିଁ ।
କିରେ ଅଳତୀ ମଞ୍ଚକୁ କିମ୍ବା ଅଇଲୁ ,ପାତାଳକୁ ଯା ଯା
ନ ଯାଉ ବୋଲି କାହାର ଆଜ୍ଞା
ବ୍ରହ୍ମା, ବିଷ୍ଣୁ ମହେଶ୍ୱରଙ୍କର କୋଟିଏ ଆଜ୍ଞା ।

ଅଳତୀ ଶିଶୁମାନଙ୍କର ଏକ ପ୍ରକାର ଚର୍ମ ରୋଗ । ଏ ରୋଗରେ ଅଳତା ପରି ନାଲି ମନ୍ଦାମାନ ଦେହର ସ୍ଥାନେ ସ୍ଥାନେ ଦେଖାଯାଏ । ପୂର୍ବକାଳରେ ଏହି ମନ୍ତ୍ର ବାରମ୍ବାର ବୋଲି ରୋଗିଣା ଶିଶୁକୁ ଫୁଙ୍କିଲେ ଏହି ରୋଗ ଭଲ ହେଉଥିଲା । ଏହାର ପ୍ରଚଳନ ଏବେ ବି କୁତ୍ରାପି ଦୃଷ୍ଟିଗୋଚର ହୁଏ ।

## ୪୨୧୫. ପ୍ରସବ ପରେ ଫୁଲ ପଡ଼ିବା

ମନ୍ତ୍ର-ଓଁ ପେଟ ବ୍ୟଥାବ୍ୟାଧି କାଟେ
ଭବ ସୁନ୍ଦରୀ କାଟେ
ମୋ ଇଚ୍ଛା କାଳ ବଚ୍ଛା କାଟେ
ଜ୍ଞାନକୁ ଜ୍ଞାନ କାଟେ
ବାଦି ଖଳବଳ କାଟେ
ତାଳୁପା ଖୋଷା କାଟେ
ମୋହର ବାବୁ ବ୍ରହ୍ମ କତୁରି ଶର
ନ କାଟୁବୋଲି କାହାର ଆଜ୍ଞା
ଶ୍ରୀରାମ ଠାକୁରଙ୍କର କୋଟିଏ ଆଜ୍ଞା ।

ଶିଶୁ ଜନ୍ମ ହେବାପରେ ମାତୃ ଗର୍ଭରୁ ଫୁଲ ପଡ଼ିଥାଏ । ଫୁଲ ପଡ଼ିବାରେ ବ୍ୟତିକ୍ରମ ହେଲେ ମା'ର ଜୀବନ ସଙ୍କଟାପନ୍ନ ହୁଏ । ତେଣୁ ପିଲା ଜନ୍ମ ହେବାମାତ୍ରେ ଫୁଲ ପଡ଼ିବାପାଇଁ ପ୍ରତିକାର କରାଯାଇଥାଏ । ପୂର୍ବେ ଏହି ପ୍ରତିକାର ମନ୍ତ୍ର ସାହାଯ୍ୟରେ ହେଉଥିଲା ।

## ୪୨୧୬. ଧନ ବଢାଇବା ମନ୍ତ୍ର ଓ ବିଧାନ

ମନ୍ତ୍ର- ଓଁ ନିମୋଧନ ଦାନର ସ୍ୱାହା
ମନ୍ତ୍ରେତଂ କୃତ୍ୱା ,ମନ୍ତ୍ରଂ ଅତ୍ରେକ କଥ୍ୟତେ ।

ବିଧାନ- ବିଜ୍ଞବ୍ୟକ୍ତି ରୋହିଣୀ ନକ୍ଷତ୍ରରେ ଉଡୁମ୍ବର ଗଛର ମଲାଙ୍ଗ ସଂଗ୍ରହକରି ତାକୁ ଉପରଲିଖିତ ମନ୍ତ୍ରରେ ଅଭିମନ୍ତ୍ରିତ କରି ,ପୁଣି ଏହି ମନ୍ତ୍ରକୁ ପାଠକରି ସଞ୍ଚିତ ଧନ ମଧ୍ୟରେ ସ୍ଥାପନକଲେ ସେହିଧନ ଅକ୍ଷୟ ହୋଇଥାଏ ।

## ଗ୍ରହମାନଙ୍କୁ ମନ୍ତ୍ର ସାହାଯ୍ୟରେ ସନ୍ତୁଷ୍ଟ କରିବାର ଉପାୟ -

(କ) ରବିଗ୍ରହଙ୍କୁ ଉପାୟ -

ରୋଗ- ଶିର ଏବଂ ରକ୍ତଚାପ ନିମନ୍ତେ ।

ମନ୍ତ୍ର- ଓଁ ହ୍ରୀଂ, ରଂ ରଂ ରବି ନାରାୟଣାୟ ନମଃ ।

ବିଧାନ- ଏହି ମନ୍ତ୍ରକୁ ରବିବାର ଦିନ ସୂର୍ଯ୍ୟଙ୍କୁ ଧ୍ୟାନ କରି ୧୦୮ ଥର ପଠନ କରିବାକୁ ହୋଇଥାଏ ।

(ଖ) ଚନ୍ଦ୍ରଗ୍ରହଙ୍କୁ ଉପାୟ

ରୋଗ- ଥଣ୍ଡା, ଶ୍ୱାସ, କାସ, ଜ୍ୱର, ଜଳୋଦର, ଅତିସାର ।

ମନ୍ତ୍ର- ଓଁ ଭୁଂ ଭୁଂ ହ୍ରୀଂ ଉଂ ଉଂ ଭୁବନେଶ୍ୱରୀୟୈ ନମଃ ।
ସର୍ବାରିଷ୍ଟା ଖଣ୍ଡନଂ କୁରୁ କୁରୁ ନମଃ ସ୍ୱାହା

ବିଧାନ-ଏହି ମନ୍ତ୍ରକୁ ୧୦୮ ଥର ଜପ କରିବା ବିଧି ।

(ଗ) ମଙ୍ଗଳ ଗ୍ରହକୁ ଉପାୟ

ରୋଗ- ରକ୍ତ ଅପରିଷ୍କାର, ପିତ୍ତବୃଦ୍ଧି, ସ୍ତ୍ରୀଲୋକଙ୍କର ରକ୍ତ ସ୍ରାବ, ଋତୁ ବାଧକ, କଟି ଶୂଳ, ପ୍ରମେହ, ଧାତୁକ୍ଷୟ, ଅଙ୍ଗପୀଡ଼ା, ବାତଜ୍ୱର ।

ମନ୍ତ୍ର- ଓଁ କ୍ଲୀଂ କ୍ଲୀଂ ହ୍ରୀଂ ଶ୍ରୀ କମଳ ମୁଖୈ ନମଃ
ରୋଗ ନାଶନଂ, କୁରୁ କୁରୁ ନମଃ ସ୍ୱାହା ।

ବିଧାନ- ମଙ୍ଗଳ ବାସରେ ପ୍ରାତ ସମୟେ ତୁଳସୀ ବୃକ୍ଷ ସମୀପରେ ଏହି ମନ୍ତ୍ରକୁ ୧୦୮ ଥର ଜପ କରିବା ବିଧି ।

(ଘ) ବୁଧ ଗ୍ରହକୁ ଉପାୟ

ରୋଗ-ପାଦ ପୀଡ଼ା, ଜିହ୍ୱାରୋଗ, କଣ୍ଠନଳୀ, ଅନ୍ତଃକୋଷ, ଏକଶିରା, ଶ୍ଳେଷ୍ମା, ନପୁଂସକ, ଧ୍ୱଜଭଙ୍ଗ, ସ୍ୱପ୍ନଦୋଷ, ଦୁଃସ୍ୱପ୍ନ ଦର୍ଶନଭୟାତୁର, କାଳଭୟ, କାଳ ଆକର୍ଷଣ, ସନ୍ତାନ ନଷ୍ଟ, ଲିଙ୍ଗରଶିଥିଳତା ।

ମନ୍ତ୍ର- ଓଁ ହ୍ରୀଂ, ଶ୍ଳଂ କ୍ଲୀଂ ତ୍ରିପୁରାୟୈ, ମମ ବ୍ୟାଧି ହରଣଂ ନମଃ ସ୍ୱାହା ।

ବିଧାନ - ଦେବାଳୟଠାରେ ଏହି ମନ୍ତ୍ରକୁ ୧୦୮ ତର ପଠନକଲେ ସାଧନା ସିଦ୍ଧହେବ ।

(ଙ) **ବୃହସ୍ପତି ଗ୍ରହକୁ ଉପାୟ**

ରୋଗ- ମାନସିକ ବ୍ୟାଧ,ଅସ୍ଥିରତା,ଶିରପୀଡ଼ା ,ଶ୍ୱାସରୋଗ,କର୍ଣ୍ଣରୋଗ

ମନ୍ତ୍ର- ଓଁ ହ୍ରାଁ ହ୍ରୁଁ ଲଂ ଲଂ ଯୋଗମାୟା ମମଃ ବ୍ୟାଧି ହରଂ ନମଃ ।

ବିଧାନ- ପ୍ରତ୍ୟେକ ଗୁରୁବାରରେ ବଟବୃକ୍ଷମୂଳରେ ବସି ଏହିମନ୍ତ୍ର ଜପକରିବା ବିଧି ।

(ଚ) **ଶୁକ୍ର ଗ୍ରହକୁ ଉପାୟ**

ରୋଗ- ଚକ୍ଷୁରୋଗ,ଗୁହ୍ୟସ୍ଥଳୀ ପୀଡ଼ା,ଲିଙ୍ଗଦିରେ ପୀଡ଼ା, ପ୍ରମେହ, ଶୋଥ,ମୂତ୍ରରୋଗ, ଗର୍ଭଶୂଳ,ଧାତୁଦୁର୍ବଳ, ରତିକ୍ରୀଡ଼ାରେ ଅକ୍ଷମ ।

ମନ୍ତ୍ର- ଓଁ ଓଁ ବଂ ବଂ ହ୍ରୀଂ ଶ୍ରୀ ବିମଳାୟୈ ନମଃ ।

ବିଧାନ- ଏହି ମନ୍ତ୍ରକୁ ଗ୍ରାମଦେବତୀଙ୍କ ଗୃହରେ /ମନ୍ଦିରରେ ବସି ୧୦୮ ଥର ସାତଦିନ ପଠନ ବିଧି ।

(ଛ) **ଶନି ଗ୍ରହକୁ ଉପାୟ-**

ରୋଗ- ଯକ୍ଷ୍ମା,ମୂର୍ଚ୍ଛା,ଉଦରରୋଗ,ବାତଶ୍ୱାସ,ପ୍ଳୀହାଜ୍ୱର ,ହାତାଗୋଡ଼ ଧରିବା,ବାତବୃଦ୍ଧି,ଗୋଦର ,ଅଙ୍ଗପୀଡ଼ା,ଶତ୍ରୁବୃଦ୍ଧି,ଧନକ୍ଷୟ, ମକଦ୍ଦମା ପ୍ରଭୃତି ବିପତ୍ତି ।

ମନ୍ତ୍ର- ଓଁ ହ୍ରୀଂ କ୍ଲୀଂ ହ୍ଲାଂ ମହାକାଳିକାୟୈ ନମଃ ।

ବିଧାନ- ଶନିବାରରେ କାଳି କିମ୍ବା ଦୁର୍ଗାଙ୍କ ମନ୍ଦିରଠାରେ ବସି ୧୦୮ ଥର ଜପକରିବା ବିଧି ।

(ଜ) **ରାହୁ ଗ୍ରହକୁ ଉପାୟ**

ରୋଗ- ଚକ୍ଷୁ,ଜିହ୍ବା,ନାଶା,କର୍ଣ୍ଣ,ଚର୍ମାଦି ରୋଗ,ଧାତୁ ଦୌର୍ବଲ୍ୟ , ଗୁପ୍ତରୋଗ,ଭଗନ୍ଦର,ଶ୍ୱାସ,ବାତପିତ୍ତ ବୃଦ୍ଧି ।

ମନ୍ତ୍ର- ଓଁ ଐଂ ସୌଂ ହ୍ରୀଂ କ୍ଲୀଂ ଛିନ୍ନ ମସ୍ତକାୟୈ ନମଃ ।

ବିଧାନ- ଶନିବାରରେ ବୃକ୍ଷ ମୂଳରେ ବସି ୧୦୮ ଥର ପଠନ ବିଧି ।

(ଝ) **କେତୁ ଗ୍ରହକୁ ଉପାୟ**

ରୋଗ- ମେରୁଦଣ୍ଡରେ ପୀଡ଼ା,ପିଚା ଓ ପଞ୍ଜରାହାଡ଼ରେ ପୀଡ଼ା,ଅଙ୍ଗ ହାଡ଼ରେ ପୀଡ଼ା,ବିକଳାଙ୍ଗ,ଉଦର ପୀଡ଼ା,ବ୍ରଣ ,ମାନହାନୀ ।

ମନ୍ତ୍ର- ଓଁ ଶ୍ଲଂ କ୍ଲାଁ ଲ୍କାଁ ଧୂମାବତ୍ୟୈ ନମଃ

ବି ଧାନ- ଶନିବାରରେ ୧୦୮ ବାର ପଠନ ବିଧି ।

## ସର୍ବଶୁଭ ମନ୍ତ୍ର

ମନ୍ତ୍ର- ଓଁ ସୁନ୍ଦର ସୁନ୍ଦର ସୁନ୍ଦର ଗୁଣ୍ଡି
ଏ ସୁନ୍ଦର ଘିନନ୍ତି ମଥା ଶ୍ରୀମଙ୍ଗଳା ଚଣ୍ଡୀ
ଏ ସୁନ୍ଦର ଘେନି ଚାହିଁବି ଯାହାକୁ
ବଳଦ ପରି ବାହିବି ତାହାକୁ
ଜୀବନ୍ତେ ପାଦତଳେ ଖଟିବ ଆସିଣ
ମଲେ ଶ୍ମଶାନ ଭୁଇଁରେ ଲୋଟିବ ଯାଇଣ ,
ଭାଇ ବଢ଼ିଣା ପିତା
ସାଇ ପଡ଼ିଶା ପିତା
ମୋତେ ନ ଦେଖିଲେ ରହେ ନିଶି ଚିନ୍ତା ।
ଲାଗ ଲାଗ ସୁନ୍ଦର ଲାଗ
ସାଙ୍ଗସାଥି ଲାଗ ଲାଗ ବୋଲି କାହାର ଆଜ୍ଞା,
ଶ୍ରୀ ଶ୍ରୀ ମାତା ସର୍ବମଙ୍ଗଳାଙ୍କର କୋଟିକୋଟି ଆଜ୍ଞା ।

ବିଧାନ- ମଙ୍ଗଳା ଓଷା ପଡ଼ିବ ମଙ୍ଗଳବାର । ସେହି ବାରରେ ମଙ୍ଗଳା ମା'ଙ୍କୁ ଧୂପ ଦୀପ ନୈବେଦ୍ୟ ଆଦି ନେଇ ପୂଜା କରିବ । ତାପରେ ତାଙ୍କରି ମଥାରୁ ସିନ୍ଦୁର ଆଣି ଏହି ମନ୍ତ୍ରରେ ମନ୍ତୁରାଇବ ଓ ନିଜ ମଥାରେ ଧାରଣ କଲେ ସମସ୍ତ ସ୍ଥାନରେ ଶୁଭ ପ୍ରାପ୍ତି ହୋଇଥାଏ । ଆତଙ୍କ ସମୟରେ ମଙ୍ଗଳା ମା' ନିଶ୍ଚୟ ସହାୟ ହେବେ । ଏହି କାର୍ଯ୍ୟକୁ ନିଷ୍ଠାର ସହ ସମ୍ପନ୍ନ କରିବାକୁ ହୁଏ ।

୪୨୧୭. ଓଁର ଘରକୁ ତଁର
ଛାଡ଼ି ଆସିଲା ଖଣ୍ଡିଆ ବାଲ, (=ବଳା)
ନେଇଆସିଛନ୍ତି ଦିଅର ।

ଶାଶୁଘର ଜଞ୍ଜାଳକୁ ଲକ୍ଷ୍ୟ କରି ବୋହୂର ଅନୁଶୋଚନାର ପ୍ରକାଶ । ତା ଉପରେ ଅତ୍ୟାଚାର ହେବା ଫଳରେ ଶାଶୁଘରକୁ ଯିବାପାଇଁ ତାର ଆଉ ମନ ହେଉନାହିଁ ।

୪୨୧୮. ଓଁ ସହନା ବବତୁ,
ସହନୌ ଭୁନକ୍ତୁ
ସହବୀର୍ଯ୍ୟଂ କରବାବହୈ
ତେଜସ୍ୱୀନା ବଧୀତମସ୍ତୁ
ମା ବିଦ୍ୱିଷାବହୈ
ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ ।

ହେ ପରମାତ୍ମା ! ଆମ ଗୁରୁଶିଷ୍ୟ ଉଭୟଙ୍କୁ ରକ୍ଷା କରନ୍ତୁ । ଉଭୟଙ୍କୁ ପାଳନକରନ୍ତୁ । ଉଭୟଙ୍କୁ ଶକ୍ତି ପ୍ରଦାନ କରନ୍ତୁ । ଆମ ଉଭୟଙ୍କ ଅର୍ଜିତ ବିଦ୍ୟା ତେଜମୟ ହେଉ , ଆମ୍ଭେ କେହି କାହାରିକୁ ବିଦ୍ୱେଷ ନକରୁ ,ଓ ସର୍ବତ୍ର ଶାନ୍ତି ସ୍ଥାପିତ ହେଉ ।

## ରାମ ତାରକ ମନ୍ତ୍ର

୪୨୧୯. ଓଁ ରାମାୟ ନମଃ ।-(ଷଡ଼ାକ୍ଷର ମନ୍ତ୍ର)

ଓଁ ରାମଚନ୍ଦ୍ରାୟ ନମଃ- (ଅଷ୍ଟାକ୍ଷର ମନ୍ତ୍ର)

ଓଁ ରାମଭଦ୍ରାୟ ନମଃ ।-( ଅଷ୍ଟାକ୍ଷର ମନ୍ତ୍ର)

ଓଁ ରାମଚନ୍ଦ୍ରାୟ ନମଃ ଓଁ ।(ନବାକ୍ଷର ମନ୍ତ୍ର)

ଓଁ ରା ମ ଭଦ୍ରାୟ ନମଃ ଓଁ । (ନବାକ୍ଷର ମନ୍ତ୍ର)

ଓଁ ହ୍ରିଂ ଶ୍ରୀଂ ଶ୍ରୀଂ ଦଶରଥାୟ ନମଃ । (ଏକାଦଶାକ୍ଷର ମନ୍ତ୍ର)

ଓଁ ନମୋ ଭଗବତେ ରାମ ଚନ୍ଦ୍ରାୟ ।(ଦ୍ୱାଦଶାକ୍ଷର ମନ୍ତ୍ର)

ଓଁ ନମୋ ଭଗବତେ ରାମ ଭଦ୍ରାୟ । ( ଦ୍ୱାଦଶାକ୍ଷର ମନ୍ତ୍ର)

ଓଁ ନମୋ ଭଗବତେ ରାମାୟ ମହାପୁରୁଷାୟ ନମଃ । (ଅଷ୍ଟାଦଶାକ୍ଷର ମନ୍ତ୍ର)

ଉପର ଲିଖିତ ଅକ୍ଷର ସମଷ୍ଟିର ଅନୁସାରେ ରାମତାରକ ମନ୍ତ୍ର ଯାହାର ଆଦ୍ୟରେ 'ଓଁ' ସ୍ଥାନ ପାଇଛି ।

ଅନ୍ୟାନ୍ୟ ରାମତାରକ ମନ୍ତ୍ରଗୁଡ଼ିକ ଅକ୍ଷର ସମଷ୍ଟି କ୍ରମରେ ହେଲା-

୪୨୨୦. ପଞ୍ଚାକ୍ଷର ମନ୍ତ୍ର -ରାମାୟ ନମଃ ।

ସପ୍ତାକ୍ଷର ମନ୍ତ୍ର- ରାମ ଚନ୍ଦ୍ରାୟ ସ୍ୱାହା

ସପ୍ତାକ୍ଷର ମନ୍ତ୍ର- ରାମ ଭଦ୍ରାୟ ସ୍ୱାହା ।

ଦଶାକ୍ଷର ମନ୍ତ୍ର- ହୁଁ ଜାନକୀବଲ୍ଲବାୟ ସ୍ୱାହା ।

ତ୍ରୟୋଦଶାକ୍ଷର ମନ୍ତ୍ର- ଶ୍ରୀରାମ ଜୟରାମ ଜୟ ଜୟ ରାମ ।

ଏହି ମନ୍ତ୍ର ଧର୍ମ,ଅର୍ଥ,କାମ,ମୋକ୍ଷ ଏହି ଚାରିଫଳକୁ ପ୍ରଦାନ କରେ । ଶ୍ରୀରାମ ଦେବତା ମାନଙ୍କର ପରମ ଦେବତା ଅଟନ୍ତି ।

୪୨୨୧. ଓଁ ନମୋ ନାରାୟଣାୟ । - ବିଷ୍ଣୁଙ୍କର ଅଷ୍ଟାକ୍ଷର ମନ୍ତ୍ର ।

୪୨୨୨. ଓଁ ଆଗ୍ନେୟ ନମଃ । - ଅଗ୍ନିଦେବତାଙ୍କୁ ପଞ୍ଚାକ୍ଷର ମନ୍ତ୍ରରେ ଜପ କରାଯାଏ ।

୪୨୨୩. **ସପ୍ତବାରର ମନ୍ତ୍ର**

(୧) ରବିବାର ଦିନର ମନ୍ତ୍ର- ଓଁ ହ୍ରୀଁ ସୂର୍ଯ୍ୟାୟୈ ନମଃ ।

(୨) ସୋମବାର ଦିନର ମନ୍ତ୍ର- ଓଁ ଭ୍ରୁଁ ଭ୍ରୁଁ ଭଂ ଭଂ ହଂ ହଂ ଭୁବନେଶ୍ୱରୀୟେ ନମଃ ।

(୩) ମଙ୍ଗଳବାରଦିନର ମନ୍ତ୍ର- ଓଁ ଶ୍ରୀଁ କ୍ଲୀଁ ଧ୍ଲୀଁ ନମଃ ।

(୪) ବୁଧବାର ଦିନର ମନ୍ତ୍ର-ଓଁ ଶ୍ଲୀଁ କ୍ଲୀଁ ଶ୍ଲୀଁ ନମଃ ।

(୫) ଗୁରୁବାର ଦିନର ମନ୍ତ୍ର- ଓଁ ଦ୍ରାଁ ଦ୍ରାଁ ଲଂ ଲଂ ମହାଲକ୍ଷ୍ମୀୟେ ନମଃ ।

(୬) ଶୁକ୍ରବାର ଦିନର ମନ୍ତ୍ର- ଓଁ ବ୍ଲୀଁ କ୍ଲୀଁ ପ୍ଲୀଁ ନମଃ ।

(୭) ଶନିବାର ଦିନର ମନ୍ତ୍ର- ଓଁ ହ୍ରୀଁ ,କ୍ଲୀଁ ନ୍ଲୀଁ ଦକ୍ଷିଣେ କାଳୀକେୟେ ନମଃ ।

ପ୍ରତ୍ୟେକ ବାରରେ ପ୍ରାତଃ କାଳରେ ମୁଖଧୌତ କରି ୧୦୮ ଥର ଏହି ମନ୍ତ୍ର ଜପକଲେ ସର୍ବକାର୍ଯ୍ୟ ସିଦ୍ଧି ହୁଏ ଏବଂ ଆତ୍ମଜ୍ଞାନ ବୃଦ୍ଧି ଓ ପ୍ରକାଶପାଏ ।

**୪୨୨୪. ଛାତ୍ରଛାତ୍ରୀମାନଙ୍କର ଉତ୍ସାହ ଓ ସ୍ମରଣ ଶକ୍ତି ବୃଦ୍ଧିର ମନ୍ତ୍ର**

ମନ୍ତ୍ର- ଓଁ ଶ୍ଲୀଁ କ୍ଲୀଁ ଶ୍ଲୀଁସରସ୍ୱତୀ ଶାରଦାୟେ ନମଃ ।

ବିଧାନ-ବ୍ରାହ୍ମମୁହୂର୍ତ୍ତରେ ଶଯ୍ୟା ତ୍ୟାଗକରି ମୁଖହାତ ଧୌତ କରି ,ପଦ୍ମାସନରେ ବସି ଏହି ମନ୍ତ୍ରକୁ ୧୦୮ ଥର ଜପ କଲେ,ସ୍ମରଣ ଶକ୍ତି ବୃଦ୍ଧିପାଏ । ବିଦ୍ୟାପଠନ କରିବାକୁ ଉତ୍ସାହ ଜନ୍ମେ। ବିଦ୍ୟାବୃଦ୍ଧି ପ୍ରକାଶପାଏ ।

**୪୨୨୫. ମୂଳ ବ୍ରହ୍ମଗାୟତ୍ରୀ ମନ୍ତ୍ର**

ଓଁ ଭୂ ର୍ଭୁବଃ ସ୍ୱଃ ତତ୍ ସବିତୁର୍ବରେଣ୍ୟଂ
ଭର୍ଗୋଦେବସ୍ୟ ଧୀମହି ଧିୟୋ ୟୋନଃ ପ୍ରଚୋଦୟାତ୍ ।

ଯେ ସମସ୍ତଙ୍କର ରକ୍ଷକ ,ସମସ୍ତ ଜଗତର ପ୍ରାଣ , ସମସ୍ତଦୁଃଖ ହରଣକାରୀ ,ସମସ୍ତ ସୁଖର ଦାତା ପରମେଶ୍ୱର ଅଟନ୍ତି ,ସେ ସର୍ବବ୍ୟାପକ ଓ,ସମସ୍ତର ସୃଷ୍ଟିକର୍ତ୍ତାଅଟନ୍ତି । ସେହିସର୍ବଶ୍ରେଷ୍ଠ ଓ ଗ୍ରହଣ କରିବା ଯୋଗ୍ୟ,ଶୁଦ୍ଧ ସ୍ୱରୂପ ,ଦିବ୍ୟଗୁଣ ଯୁକ୍ତ ଦେବଙ୍କୁ ମୁଁ ଧ୍ୟାନ କରୁଅଛି । ସେ ମୋର ବୁଦ୍ଧିକୁ ଉତ୍ତମ ମାର୍ଗରେ ପ୍ରେରିତ କରନ୍ତୁ । ଏହା ହେଉଛି 'ଗାୟତ୍ରୀ ମହାମନ୍ତ୍ର' ।

ବ୍ରହ୍ମା ,ବିଷ୍ଣୁ ,ମହେଶ୍ୱର ଯାହାକୁ କୁହନ୍ତି ସତ୍,ରଜ,ଓ ତମ ଏହି ତ୍ରୀଗୁଣରେ ପ୍ରାଣୀମାନେ ବନ୍ଧନରେ ଅଛନ୍ତି ।

ଗାୟତ୍ରୀ ଜପ ବିଧାନ- (କ) ପ୍ରାତଃକାଳରେ ଉତ୍ତାନ ଧାନଚିତ୍ତ ହସ୍ତେ ।
(ଖ) ସାୟଂ କାଳରେ ଅଧଃମୁଖ ହସ୍ତେ ।
(ଗ) ମଧ୍ୟାହ୍ନେ ତୀର୍ଯ୍ୟକ୍ ହସ୍ତେ ।

ଗାୟତ୍ରୀ ଜପର ଫଳାଫଳ-

(୧) ଦିନକୁ ଦଶଥର ଜପକଲେ ପାପନାଶହୁଏ ।
(୨) ଶତବାର ଜପକଲେ ,ଅଭିଶାପ ଦୋଷରୁ ମୁକ୍ତହୁଏ
(୩) ସହସ୍ରବାର ଜପକଲେ ,ଆତ୍ମାଶୁଦ୍ଧିହୁଏ ।

(୪) ଲକ୍ଷେଥର ଜପକଲେ ,ସପ୍ତ ଜନ୍ମ ଜନ୍ମାନ୍ତର ମହାପାପ ବିନାଶ ହୁଏ,ବ୍ରହ୍ମଦର୍ଶନ ପ୍ରାପ୍ତି ହୁଏ ।
(୫) କାଳ ଭୟ, ଅକାଳମୃତ୍ୟୁ ଭୟ,ରୋଗଭୟ,
ଗ୍ରହପୀଡ଼ାଦି ଭୟ,ଓ ଶତ୍ରୁଭୟ ନିବାରିତହୁଏ ।

୪୨୨୬. **ସରସ୍ୱତୀ ଗାୟତ୍ରୀ**
ଓଁ ସରସ୍ୱତୈ ବିଦ୍‌ମହେ ,ବ୍ରହ୍ମପୁତ୍ରୈ ଧୀମହି
ତନ୍ନୋଦେବୀ ପ୍ରଚୋଦୟାତ୍ ।
ଫଳାଫଳ-ମେଧାବୃଦ୍ଧି ,ଧୀଶକ୍ତି,ଚତୁରତା,ଦୂରଦର୍ଶିତା,ବିବେକ ଶୀଳତା ।

୪୨୨୭. **ଦୁର୍ଗା ଗାୟତ୍ରୀ**
ଓଁ ଗିରିଜାୟୈ ବିଦ୍‌ମହେ ପ୍ରିୟାୟୈ ଧୀମହି
ତନ୍ନୋ ଦୁର୍ଗା ପ୍ରଚୋଦୟାତ୍ ।
ଫଳାଫଳ -ବିଘ୍ନବିନାଶ ,ଦୁଷ୍ଟ ଓ ଶତ୍ରୁ ସଂହାର ,ପ୍ରଚଣ୍ଡ ଦର୍ପର ଅଭିବୃଦ୍ଧି ।

୪୨୨୮. **ଲକ୍ଷ୍ମୀ ଗାୟତ୍ରୀ**
ଓଁ ମହାଲକ୍ଷ୍ମୈ ବିଦ୍‌ମହେ ,ବିଷ୍ଣୁ ପ୍ରିୟାୟୈ ଧୀମହି,
ତନ୍ନୋ ଲକ୍ଷ୍ମୀ ପ୍ରଚୋଦୟାତ୍ ।
ଫଳାଫଳ- ସମ୍ପଦ,ଯଶ,ସୌଭାଗ୍ୟ,ପ୍ରଶଂସା,ପଦ ପଦବୀଓ ଭୋଗ୍ୟପଦାର୍ଥ ପ୍ରାପ୍ତି ।

୪୨୨୯. **ରାଧାଗାୟତ୍ରୀ**
ଓଁ ବୃଷଭାନୁ ଜାୟୈ ବିଦ୍‌ମହେ ,କୃଷ୍ଣପ୍ରିୟାୟୈ ଧୀମହି
ତାନ୍ନୋ ରାଧା ପ୍ରଚୋଦୟାତ୍ ।
ଫଳାଫଳ- ପ୍ରେମଦୃଷ୍ଟି,ବିଦ୍ୱେଷହୀନତା,କୋମଳତା, ଲାଳିତ୍ୟ ,ଅନ୍ତରଙ୍ଗତା ।

୪୨୩୦. **ସୀତା ଗାୟତ୍ରୀ**
ଓଁ ଜନକ ନନ୍ଦିନୈ ବିଦ୍‌ମହେ, ଭୂମିଜାୟୈ ଧୀମହି ,
ତନ୍ନୋ ସୀତା ପ୍ରଚୋଦୟାତ୍ ।
ଫଳାଫଳ- ପବିତ୍ରତା,ନିର୍ବିକାର,ସାତ୍ତ୍ୱିକତା,ଶାଳୀନତା,ନମ୍ରତା ।

୪୨୩୧. **ପୃଥ୍ୱୀ ଗାୟତ୍ରୀ**
ଓଁ ପୃଥ୍ୱୀଦେବୈ ବିଦ୍‌ମହେ ସହସ୍ରସୂର୍ଯ୍ୟୈ ଧୀମହି ,
ତନ୍ନୋ ପୃଥ୍ୱୀ ପ୍ରଚୋଦୟାତ୍ ।
ଫଳାଫଳ- ସହିଷ୍ଣୁତା,କ୍ଷମାଶୀଳତା,ଧୈର୍ଯ୍ୟ,ଦୃଢ଼ତା,ଭାର ବହନକ୍ଷମତାର ଅଭିବୃଦ୍ଧି ।

୪୨୩୨. ତୁଳସୀ ଗାୟତ୍ରୀ
ଓଁ ଶ୍ରୀ ତୁଳସେୈ ବିଦ୍‌ମହେ ,ବିଷ୍ଣୁପ୍ରିୟାୟୈ ଧୀମହି,
ତନ୍ନୋ ବୃନ୍ଦା ପ୍ରଚୋଦୟାତ୍ ।

ଫଳାଫଳ- ସତ୍ୟନିଷ୍ଠା,ଆନୁଗତ୍ୟ,ଆତ୍ମାଶାନ୍ତି, ପତିବ୍ରତା,ଲୋକସେବା ।

୪୨୩୩. ଓଁ କଂ ଖଂ ଘଂ ଙଂ

ଏହା ଛାୟା ତତ୍ତ୍ୱ ମନ୍ତ୍ର । ନିର୍ମଳ ଶୁଦ୍ଧକାଳରେ ବସି ଏ ମନ୍ତ୍ର ଦିବା ଅବା ନିଶି ଜପିବ, ତାହାହେଲେ ନିଜ ଛାଇକି ଦୃଷ୍ଟି ଦେଇ ଶୁଭ ଅଶୁଭ ଜାଣି ପାରିବା ସଙ୍ଗେସଙ୍ଗେ ଆଗତ ଭବିଷ୍ୟତ ଜାଣିହୁଏ । ଛାଇ ଚାରିପ୍ରକାର - ସେମାନଙ୍କର ଫଳାଫଳ ସମ୍ପର୍କରେ ସୂଚନା- (୧) ରକ୍ତବର୍ଣ୍ଣ- ସୂର୍ଯ୍ୟ(୨) ଶ୍ୱେତ ବର୍ଣ୍ଣ- ଦୀର୍ଘଜୀବୀ(୩) ପାଣ୍ଡୁର ବର୍ଣ୍ଣ- ଶୁଭାଶୁଭ (୪) କୃଷ୍ଣବର୍ଣ୍ଣ- ମୃତ୍ୟୁ ।

୪୨୩୪. ଓଁ କ୍ଲୀଂ କୃଷ୍ଣାୟ ଗୋବିନ୍ଦାୟ ଗୋପୀଜନ ବଲ୍ଲଭାୟ ସ୍ୱାହା ।

ଏହା ଶ୍ରୀଗୋପାଳ ମନ୍ତ୍ର । ଏହାକୁ ଜପକଲେ ଗୋପୀଗୋବିନ୍ଦଙ୍କୁ ନୟନରେ ଦେଖିବାକୁ ମିଳେ । ଏବଂ କୃଷ୍ଣଭାବରେ ମନୁଷ୍ୟ ମିଶିଯାଏ । ମନ ବ୍ରହ୍ମଭାବରେ ପରିପୂର୍ଣ୍ଣ ହେବ । ଫଳରେ ଦୁଃଖ ସୁଖ ସବୁ ସମାନ ଜଣାପଡ଼ିବ ଆଉ ଯମ ଯାତନା ନଥିବ ।

୪୨୩୫. ଓଁ ହ୍ଲୀଂ ଶ୍ଲୀଂ ଧ୍ଲୀଂ ।

ଏହା ଚିତ୍ତ ସ୍ଥିର ମନ୍ତ୍ର । ଏକୋଇଶ ଦିନ ପାଳନକରିବାର ବିଧାନ ହେଲା ପ୍ରତ୍ୟହ ପ୍ରଭାତରୁ ଉଠି ନିତ୍ୟକର୍ମ ,ଶଉଚ ,ଶୁଦ୍ଧସ୍ନାନ କରିବ । ଦିନ ସାରା ମୌନ ରହିବ । ମଧ୍ୟାହ୍ନରେ ହବିଷ୍ୟ ଥରୁଟିଏ କରି ଖାଇବ । ସହସ୍ର ସଂଖ୍ୟାରେ ପ୍ରତିଦିନ ନିୟମିତ ଭାବେ ଏହି ମନ୍ତ୍ରକୁ ଜପ କରିବ । ରାତ୍ର ଭୋଜନ ନିଷେଧ । ଏ ସମସ୍ତ କର୍ମ ପ୍ରବୋଧ ଚିତ୍ତରେ କରିବ । ଏହି ମନ୍ତ୍ର ସାଧନାର ଫଳାଫଳ ହେଲା- ମନର ଚଞ୍ଚଳତା ଦୂର ହୋଇ ଚିତ୍ତ ସ୍ଥିରହୁଏ । କାମ,କ୍ରୋଧ ପ୍ରଭୃତି ରିପୁମାନେ ଦହନହୁଅନ୍ତି । କର୍ମମୁଖର, ପ୍ରଖର ବୁଦ୍ଧି ଓ ଶାସ୍ତ୍ରବିତ୍ ହୁଏ । ସୁଖ ଶାନ୍ତି ସର୍ବଦା ବିରାଜମାନ କରେ । ବିପଦରେ ମନ ନିଶ୍ଚଳ ରୁହେ ।

୪୨୩୬. ଓଁ କ୍ଲୀଂ ଅଣାକ୍ଷରାୟ (ଦେବାୟ) ନମଃ ।

ଏହା ଅଣାକ୍ଷର ମନ୍ତ୍ର । ଛାୟାତତ୍ତ୍ୱ ମନ୍ତ୍ରଦ୍ୱରା ଅଶୁଭ ଛାୟାର ସୂଚନାମିଳିଲେ ଏହି ମନ୍ତ୍ର ଜପକଲେ ପାପ ତାପ ଆପେଆପେ ଦୂରୀଭୂତ ହୁଏ । ଛାୟା ତତ୍ତ୍ୱ ମନ୍ତ୍ରପରି ଦୈନିକ ମୌନ ରହି ଦିବସରେ ହବିଷ୍ୟ ଭୋଜନ କରିବ । ଏବଂ ଅଣାକ୍ଷର ମନ୍ତ୍ର ସହସ୍ରବାର ଜପକରିବା ଫଳରେ ଛାୟା ମନ୍ତ୍ର ସାଧନାର ଅଶୁଭ ଦୂର ହେବ । ଅନ୍ତର ଓ ବାହାର ତେଜମୟ ହେବ । ବିଶ୍ୱବ୍ରହ୍ମାଣ୍ଡ କଥା ଅଚିରେ ଜାଣି ହେବ । ଲକ୍ଷେଥର ଏହି ମନ୍ତ୍ର ଜପକଲେ ଶରୀର ଶୁଦ୍ଧିହୁ ଏ । ସତ ମିଛରୁ ବାଛିହେବ । ବ୍ରହ୍ମସହିତ ସାନ୍ନିଧ ମିଳିବ ।

୪୨୩୭. ଓଁ ଜୟନ୍ତୀ ମଙ୍ଗଳାକାଳୀ ଭଦ୍ରକାଳୀ କପାଳିନୀ,
ଦୁର୍ଗା କ୍ଷମା ଶିବା ଧାତ୍ରୀ ସ୍ୱାହା ସ୍ୱଧା ନମସ୍ତୁତେ ।

ସର୍ବଶକ୍ତିମୟୀ ସର୍ବମଙ୍ଗଳମୟୀ ବିଶ୍ୱଜନନୀ ମହାମାୟା କାଳୀଙ୍କର ବନ୍ଦନା ।

୪୨୩୮. ଓଁ ହଂ ହଂ ପ୍ରଜାପତୟେ ନମଃ ।

ପ୍ରଜାପତି ମନ୍ତ୍ର । ଏହି ମନ୍ତ୍ରକୁ ବିବାହ ସମୟରେ ବର ଡ଼ାହାଣ ପାଦ ବେଦୀ ଉପରକୁ ନିକ୍ଷେପ କରିବା ସମୟରେ ତିନିଥର ସ୍ମରଣ କରିବ । କନ୍ୟା ବାମ ପାଦ ନିକ୍ଷେପ କରିବା ସମୟରେ ତିନଥର ଏହି ମନ୍ତ୍ର ସ୍ମରଣ କରିବ । ଏହାଦ୍ୱାରା ବରକନ୍ୟାଙ୍କର ଯାବତୀୟ ଗ୍ରହରିଷ୍ଟ ଖଣ୍ଡନ ହୁଏ ଓ ଭବିଷ୍ୟତ ଜୀବନ ସୁଖମୟ ତଥା ଉଜ୍ଜ୍ୱଳମୟ ହୁଏ । (ଭୃଗୁସଂହିତା)

**ପଞ୍ଚଦେବତା ମନ୍ତ୍ର**

୪୨୩୯. ଓଁ ଗଣେଶାୟ ନମଃ (ଗଣେଶଙ୍କ ମନ୍ତ୍ର)
ଓଁ ନମୋ ନାରାୟଣାୟ (ନାରାୟଣଙ୍କ ମନ୍ତ୍ର)
ଓଁ ହ୍ରୀଂ ଦୁର୍ଗାୟୈ ନମଃ (ଅମ୍ବିକାଙ୍କ ମନ୍ତ୍ର)
ଓଁ ନମଃ ସୂର୍ଯ୍ୟାୟ । (ଭାସ୍କରଙ୍କ ମନ୍ତ୍ର )
ଓଁ ଶ୍ରୀ ଜଗନ୍ନାଥାୟ ନମଃ ।

୪୨୪୦. ଓଁ ଜୀବେମଃ ଶରଦଶତଂ ,ଶ୍ରୁଣୁୟାମଃ ଶରଦ ଶତଂ ।

ଆମ୍ଭେମାନେ ଶହେଟି ଶରତକାଳ ଭୋଗକରିବାକୁ ବଞ୍ଚିବା ।

୪୨୪୧. *ଏକାର୍ଥରେ* - ଜିଜୀବିଷେଦ୍ ଶତଃ ସମାଃ ।

ଲୋକେ ଶହେ ବର୍ଷ ବଞ୍ଚିବାକୁ ଚେଷ୍ଟା କରିବେ ।

୪୨୪୨. ଓଁ ଶବର ଶୁଭ କରଣ
ଶ୍ରୀ ରାସ ପ୍ରିୟ କାରକ
ସୌରୀ ଦେବୀ ପୁତ୍ରସ୍ୟ
ବ୍ରହ୍ମ ଦାନ ଧ୍ୟକ୍ଷ ।

ଦାରୁବ୍ରହ୍ମ ପ୍ରତିଷ୍ଠାପାଇଁ ବସୁଶବର ମଥାରେ ପାଟଚୁମୁଳା (= ମୁଚୁଳା) ଥୋଇ ତହିଁ ଉପରେ ଦାରୁବ୍ରହ୍ମଙ୍କୁ ମୁଣ୍ଡରେ ମୁଣ୍ଡେଇ ଏହି ମନ୍ତ୍ର ଉଚ୍ଚାରଣକରି ବାଙ୍କିମୁହାଣଠାରୁ ବଡ଼ଦେଉଳ ଜଗମୋହନ ଠାକୁ ନେଇଆସିଥିଲେ ।

୪୨୪୩. ଓଁ କାର ମୂରତି ହେବେ ନାରାୟଣ
କଳକୀ ସ୍ୱରୂପ ହୋଇ,
ଷଟତ୍ରିଂଶ ବିଂଶେ ଏକତ୍ର ହୋଇବ,
ପାମର ଅଚ୍ୟୁତି କହି ।

ମହାପୁରୁଷ ଅଚ୍ୟୁତାନନ୍ଦ ଦାସଙ୍କ କଳିକାଳ ସମ୍ପର୍କରେ ଭବିଷ୍ୟତବାଣୀ ।

୪୨୪୪. ଓଡ଼ିଆ ବଙ୍ଗଳା ପାର୍ଶି ନାଗରୀ ପଢିଲା ଯେ ପାଠ
ସକଳ ବିଦ୍ୟାରେ ସେହୁ ବଛା ହୋଇଲା ଗରିଷ୍ଠ ।

ପୂର୍ବେ ଓଡ଼ଶାରେ ସଂସ୍କୃତ ଏବଂ ଓଡ଼ିଆ ସହିତ ବଙ୍ଗଳା ଓ ପାର୍ଶି ଭାଷାର ପ୍ରଚଳନ ଥିଲା । ଯେଉଁମାନେ ଏହି ୪ଟି ଭାଷାରେ ପାରଙ୍ଗମ ଥିଲେ ସେମାନେ ସମାଜରେ ଗରିଷ୍ଠ ଭାବରେ ପରିଗଣିତ ହେଉଥିଲେ । କାରଣ ସରକାରୀ ମହକୁମାରେ ବଙ୍ଗଳା ଓ ପାର୍ଶିର ପ୍ରଚଳନ ଥିଲା ।

୪୨୪୫. ଓଡ଼ିଶା କାବକାଣ (= ଦୁର୍ବଳ ,ନିରାଶ୍ରୟ ,ଦୃଷ୍ଟିହୀନ)
ଯେ ମାଇଲା ସେ ଟାଣ ।

ଏହା 'ଦୈନିକ ଆଶା' ୧୯୨୮ ମସିହାରେ ପ୍ରକାଶିତ ହୋଇଥିଲା ।

୪୨୪୬. ଓଡ଼ିଆ ଜାତି ନିଷାଣ
ଘୋଷୁଛି ଜାତିର ଟାଣ ।

୪୨୪୭. ଓଡ଼ିଶୀ ଉରୁ(= ଜଂଘ), କାମାକ୍ଷା (=ଆସାମ)ଭୂରୁ
ଦକ୍ଷିଣୀ ବେଶ ,ବଙ୍ଗାଳୀ କେଶ
ଉତ୍ତରୀ କୁଚ(ସ୍ତନ) ,ଗୁଜ୍ଜରୀ (=ଗୁଜୁରାଟୀ) କୁଞ୍ଚ
ମଥୁରା ନାରୀଙ୍କ ଚାହାଣୀ
ଆଖିରେ ପଡ଼ିଲେ
ମରମ ଦିଅଇ ହାଣି ।

୪୨୪୮. ଓସ୍ତ ଫୁରୁଫୁରି ।

ଅଶ୍ୱତ୍ଥ ଗଛର ଗଣ୍ଡିରୁ ଛାଡ଼ିଯାଇଥିବା ଶୁଖିଲା ବକଳା

୪୨୪୯. ଓଲଟେଇ କାଟ ବା ଚିତ କରି କାଟ ।

୪୨୫୦. *ଏକାର୍ଥରେ* - ଓଲଟେଇ କାଟିଲେ ଯାହା
ଚିତ କରି କାଟିଲେ ତାହା ।

୪୨୫୧. ଓଡ଼ଙ୍ଗ ଗଡ଼ ପାଗଳ,
ଡ଼ଗର ପଡ଼ା ମାଙ୍କଡ଼,
କଟକ ନଗର ଝାବଡ଼ ।

୪୨୫୨. ଓର ଉଣ୍ଡି ହାତ ମାରିବା ।

ପ୍ରକୃଷ୍ଟ ସମୟ ଦେଖି କାର୍ଯ୍ୟରେ ଅଗ୍ରସର ହେବା ।

୪୨୫୩. ଓଗୋ ଜ୍ୟେଷ୍ଠା ! କ'ଣ କହୁଛିରେ ବେଟା ।

ଜ୍ୟେଷ୍ଠ ସମ୍ପର୍କ ସ୍ଥାପନକରି ଚରଣଚୁଟିଆର ଆତ୍ମୀୟତା ।

୪୨୫୪.    ଓଲଟ ପାଦ (= ଯୋଗାସନ) ଆସନ ଯାହାର
ନିଦ୍ରା ମୈଥୁନ ଜିତାଇ ତାହାର ।    - ପ୍ରାଚୀ - ପରଚେଗୀତା

୪୨୫୫.    ଓଲଟ କମଳ (= ଯୋଗାସନ) ଆସନ କରି,
ତହିଁ ଜପି ବସିବ ପଞ୍ଚାକ୍ଷରୀ ।    - ପ୍ରାଚୀ-ପରଚେଗୀତା

୪୨୫୬.    ଓଳିଆ ଗାଣ୍ଡି ,ଓଡ଼ିଆ ଗାଣ୍ଡିଆ ।

୪୨୫୭.    ଓଲୋ (= ଆଲୋ)ମୋରନନୀ (= ଗେହ୍ଲଝିଅ)
ସାଦ ମେଣ୍ଟିଲା ଖାଇତୋର
ଓଲମରାର ଫେଣୀ (= ମିଷ୍ଟାନ୍ନ) ।

'ଓଲମରା' ବାଲେଶ୍ୱର ଜିଲ୍ଲାର ଏକ ଗ୍ରାମ । ପୂର୍ବେ ଏହା ମୟୂରଭଞ୍ଜ ରାଜ୍ୟ ଅଧୀନରେ ଥିଲା । ଏହି ଗ୍ରାମ ଫେଣୀମିଷ୍ଟାନ୍ନ ପାଇଁ ପ୍ରସିଦ୍ଧ ।

୪୨୫୮.    ଓଲୋ (=ଆଲୋ) ମୋ ହୀରା
ସାଦ ମେଣ୍ଟିଲା ଖାଇ
ତୋର ଡିଙ୍କିକୁଟା ବୁରା(=ବୁଢ଼ା)।

୪୨୫୯.    ଓଲ (=ଓଲୁଅ) ଧରିଛି ନିଜଗୁଣରୁ ।

ଓଲୁଅର ଗଲ୍ଲକୁ ମନୁଷ୍ୟର କଷ୍ଟ ସହିତ ତୁଳନା କରାଯାଇଛି । ନିଜ ଗୁଣପାଇଁ ମନୁଷ୍ୟକୁ କଷ୍ଟ ଭୋଗିବାକୁ ପଡ଼େ । ଏହି ଚିରନ୍ତନ ସତ୍ୟଟି ଏହି ଉକ୍ତିଟିରେ ପ୍ରକାଶ ପାଇଛି ।

୪୨୬୦.    ଓଡ଼ଶ ବିଆଣରେ ପୂଜ ନାହିଁ  କି ରକତ ନାହିଁ ।

୪୨୬୧.    ଓଳିଆର ମୁଣ୍ଡ ଫିଟିଛି
କେତେ ପିଲାଛୁଆ ହଉଛି (ଦେଖ) ।

୪୨୬୨.    ଓଁ କାର ଶୂନ୍ୟରୁ ହେଲା,ଓଁ କାର ରୁ ଶୂନ୍ୟ
ଏହା ଅଟେ ନାମ ବ୍ରହ୍ମ ହେତୁକରି ଘେନ ।    - ଅଚ୍ୟୁତାନନ୍ଦ

୪୨୬୩    ଓକର ଖୋଳିବା ।

କୌଣସି ବ୍ୟକ୍ତିର ଗୃହଛିଦ୍ର ସାଧାରଣରେ ପ୍ରକାଶ କରିବା ।

୪୨୬୪.    ଓଁ ଅଖଣ୍ଡ ମଣ୍ଡଳାକାରଂ ବ୍ୟପ୍ତଂଯେନ ଚରାଚରଂ
ତଦ୍ ପଦଂ ଦର୍ଶିତଂ ଯେନ ତସ୍ମୈ ଶ୍ରୀ ଗୁରୁବେ ନମଃ ,
× × × ×
ଗୁରୁବ୍ରହ୍ମା ,ଗୁରୁ ବିଷ୍ଣୁ, ଗୁରୁଦେବ ମହେଶ୍ୱରଃ ।
ଗୁରୁ ସାକ୍ଷାଦ୍ ପରଂବ୍ରହ୍ମ ,ତସ୍ମୈ ଶ୍ରୀଗୁରୁବେ ନମଃ ।।

୪୨୬୫. ଓଳେଇ ମାଇକିନାର ଓଷା
ଉକୁଣୀ ମୁଣ୍ଡରେ ଖୋସା ।

୪୨୬୬ ଓଡ଼ଗାଁର ଡ଼ାଙ୍ଗ । - ଭିଟାମାଟି ଶୂନ୍ୟ ତଥା ସମ୍ବଳହୀନ ଲୋକର ଦୁର୍ଦ୍ଦଶା ।

୪୨୬୭. ଓଡ଼ିଆ ଚକ୍ର( =ଚକ୍ରାନ୍ତ) ଗହମ ପେଷା
ରାଜୁ ଚକ୍ର(=ଚକ୍ରାନ୍ତ) ଶନିର ଦଶା ।

ଓଡ଼ିଆଲୋକେ ଚକ୍ରାନ୍ତ କଲେ ଗହମ ପେଷିଲାପରି କଷ୍ଟଦେବେ । ଉତ୍ତରଓଡ଼ିଶାର ସୀମାନ୍ତରେ ଓଡ଼ିଆ ଖଣ୍ଡାୟତମାନଙ୍କୁ 'ରାଜୁ 'ବୋଲି କୁହାଯାଏ । ଏମାନଙ୍କର ଧୀଶକ୍ତି ଅନ୍ୟ ଓଡ଼ିଆ ଲୋକଙ୍କ ତୁଳନାରେ ଅଧିକ । ତେଣୁ କୁହାଯାଏ ଯେ ରାଜୁମାନଙ୍କ ଚକ୍ରାନ୍ତ ରେ ପଡ଼ିଲେ ଶନି ଦଶାରେ ଯେଉଁ କ୍ଲିଷ୍ଟ ହୁଏ ତାହା ଭୋଗିବାକୁ ପଡ଼େ ।

୪୨୬୮. ଓଡ଼ିଆ ,ତେଲଗୁ,ନାଗରୀ (= ସଂସ୍କୃତ) ଜାଣ
ନ ପଢିଲେ କାହୁଁ କରିବ ଟାଣ ।

ଓଡ଼ିଆ ନାରୀ ତାର ସନ୍ତାନକୁ ତିନୋଟି ଭାଷା ଶିକ୍ଷା ଦେବାକୁ ପ୍ରବର୍ତ୍ତାଇଥାଏ । ଏହି ତ୍ରିଭାଷୀ ଶିକ୍ଷା ଆଧୁନିକ ଭାରତୀୟ ସଭ୍ୟତା ଯେଉଁ ତିନୋଟି ଭାଷାଶିକ୍ଷା କରିବାକୁ ଉପଦେଶ ଦେଉଅଛି ତାହା ଓଡ଼ିଆ ମାଟିରେ ଦୀର୍ଘକାଳରୁ ଅନୁସୃତ ହୋଇଅଛି । ମନେହୁଏ ତେଲଗୁ ଭାଷା ଓ ସଂସ୍କୃତି ସହିତ ଉତ୍କଳୀୟ ସଂସ୍କୃତି ସହୋଦର ପରିଥିଲା । ଏହାର ପ୍ରମାଣ ଇତିହାସରୁ ମିଳେ ।

୪୨୬୯. ଓଳନାଳ ହେବା । - ଏପାଖ ସେପାଖ ହେବା ।

୪୨୭୦. ଓଲମ୍ ବିଲମ୍ । -ଓଲଟ ପାଲଟ ,ଗୋଳମାଳ ।

୪୨୭୧. *ଏକାର୍ଥରେ-* (୧) ଉଲମ୍ ବିଲମ୍ ,(୨) ଓଲୋମ୍ ବିଲୋମ୍
(୩) ଓଲୋମ୍ ବିଲମ୍ ।

୪୨୭୨. ଆଖିରେ ଦେଖି ମୁଆଳା(= ସାକ୍ଷପ୍ରମାଣ) ଚାହେଁ
ତାହାଠାରୁ ବଳି ଓଲମା କିଏ ?

୪୨୭୩. ଓଲମାଆଶିଆ ବା ଓଲମା ଆଁଶିଆ । - ଅତିରିକ୍ତ ବୋକା ବା ଓଲୁ ।

୪୨୭୪. ଓଲା ଉଠା । - ଝାଡ଼ାବାନ୍ତି ରୋଗ, ହଇଜା ,ବିସୂଚିକା ।

୪୨୭୫. ଓଲାଛାଡ଼ିବା ବା ଓଲା ଛଡ଼ାଇବା । - ଭୋଜନ ଲାଳସା ତୃପ୍ତ ହେବା ।

୪୨୭୬. ଓଲୁଅ ଖାଇ ଗଲୁକଲା ପାଟି
ତେନ୍ତୁଳି ଚକଟି ଦିଅ ଚାଟି ।

୪୨୭୭. *ଏକାର୍ଥରେ-* ଓଲୁଅ ଖାଇ ତୁଣ୍ଡ ଗଲୁ
ତେନ୍ତୁଳି ଚକଟା ଧାପେ ଦେଲୁ ।

ତେନ୍ତୁଳି ଚକଟା ତୁଣ୍ଡରେ ଦେଲେ ଓଲୁଅ ଜନିତ ଗଲୁ ଲାଘବ ହୁଏ ।

୪୨୭୮. ଓଲ ଚଟକିବା । - ବର୍ଷା ହେବାପରେ ଓଦାଭୂଇଁ ଶୁଖିଯିବା ।

୪୨୭୯. ଓଲଟ କଦଳୀ ।- ମୁଣ୍ଡ ପାଖ ତଳକୁ କରାଯାଇ ରଖାଯିବା କଦଳୀ ଗଛର ଗଣ୍ଡି ।

୪୨୮୦. ଓଲଟ କମଳ ଆସନ । - ଶୀର୍ଷାସନ ।

୪୨୮୧. ଓଟରା ପଡ଼ିବା । - ନଈବଢି ଛାଡ଼ି ଯାଉଥିବାବେଳେ ସ୍ରୋତରେ ବେଗ ଅଧିକ ହେବା

୪୨୮୨. ଓଟ ମୁହାଁ । - ଉପର ମୁହାଁ ହୋଇବାଟ ଚାଲିବା ଓ ଓଟ ମୁହାଁ (=ସ୍ତ୍ରୀ) ।

୪୨୮୩. ଓଟରୋଗୀ । - କୋଷବୃଦ୍ଧି ଘ ଟିଥିବା ରୋଗୀ ।

୪୨୮୪. ଓଟ ବନ୍ଦି ।

ପଡ଼ିଆ ଓ ଜଙ୍ଗଲ ଜମିକୁ ପ୍ରଥମେ ଆବାଦ କରିବା ପାଇଁ ଜମିଦାର ସଙ୍ଗେ ପ୍ରଜାର ଚୁକ୍ତି । ଏହା ଓଡ଼ିଶାର ଉପାନ୍ତ ମେଦିନିପୁର ଅଞ୍ଚଳରେ ପ୍ରଚଳିତ ।

୪୨୮୫. ଓଟ ଜାଣେନି ,ଓଟ ପିଠିରେ କୁଜ ।

ଓଟର ଦୈହିକ ବୈଶିଷ୍ଟ୍ୟ ହେଲା ତା ପିଠିର କୁଜ । ମାତ୍ର ସେ ଏ ସମ୍ପର୍କରେ ସଚେତନ ନୁହେଁ । ସେହିପରି ଯେଉଁମାନେ ବିଷୟବସ୍ତୁ ବା ସମ୍ପିରିର ଅଧିକାରୀ ହୋଇବି ସେ ବିଷୟରେ ସଚେତନ ନୁହନ୍ତି ସେମାନଙ୍କୁ ପ୍ରବାଦଟିରେ ଇଙ୍ଗିତ କରାଯାଇଛି ।

୪୨୮୬. ଓଲଟ ମୁହାଁ । - ଏକ ପ୍ରକାର ନାକଚଣା ।

୪୨୮୭. ଓଲଟା ଗୋଠ ।- ଅଣ୍ଟାରେ ପିନ୍ଧିଥିବା ସୁନା ବା ରୂପାର ଅଳଙ୍କାର ।

୪୨୮୮. ଓଲଟ ସାଧନା ।

ଏକ ବାମାଚାରୀ ସାଧନା । ଏହି ସାଧନା ତନ୍ତ୍ରଶାସ୍ତ୍ର ଅନୁଯାୟୀ ପୁରୁଷ,ସ୍ତ୍ରୀ ସହିତ ଏହାକୁ ସାଧନା କରେ ।

୪୨୮୯. ଓଲଟ ଗଙ୍ଗା ।

ପାପ ହରଣକାରୀଙ୍କୁ ଗଙ୍ଗା କୁହାଯାଏ । ହଠଯୋଗରେ ଇଁଥିଳା ନାଡ଼ିକୁ ଗଙ୍ଗା କୁହାଯାଏ । ଏହି ସାଧନାରେ ଅଧୋମୁଖୀ ଶ୍ୱାସକୁ ପ୍ରାଣାୟାମ ଦ୍ୱାରା ଉର୍ଦ୍ଧ୍ୱମୁଖୀ କରି ବ୍ରହ୍ମାଣ୍ଡରେ ପ୍ରଚଳନ କରାଯାଏ । ଏହା ଓଲଟା ପ୍ରକ୍ରିୟା ହୋଇଥିବାରୁ ଏଥିପାଇଁ 'ଓଲଟଗଙ୍ଗା' ର ପ୍ରୟୋଗ ହୋଇଥାଏ ।

୪୨୯୦. **ମଙ୍ଗଳନ ବନ୍ଦାପନାର ବୋଲି ପଦମାଳ**

ଓଲଗି ହୋଇଣ ମାଏ ବନ୍ଦାଇଲେ ଦୂବ,
ଯୁଗେ ଯୁଗେ ସୀତା ମୋର ଅହ୍ୟ ହୋଇଥିବ
ଓଲଗି ହୋଇଣ ମାଏ ବନ୍ଦାଇଲେ ଦୀପ,
ଯୁଗେ ଯୁଗେ ସୀତା ମୋର ସ୍ୱାମୀଙ୍କୁ ସେବିବ ।

ଓଳଗି ହୋଇଣ ମାଏ, ଚନ୍ଦନ ଲେପନ୍ତି ,
ଜନ୍ମେ ଜନ୍ମେ ସୀତା ମୋର ହେଉ ଭାଗ୍ୟବନ୍ତୀ ।
ଓଳଗି ହୋଇ୍ଣ ମାଏ ମନେ ମନାସନ୍ତି ,
ଯୁଗେ ଯୁଗେ ସୀତା ମୋର ହେଉପୁତ୍ରବନ୍ତୀ ।
ଓଳଗି  ହୋଇଣ ମାଏ ମଣୋହି ବାଢିଲେ
ନାନା ବର୍ଣ୍ଣେ କ୍ଷୀରି ପିଠା ନେଇ ଯୋଗାଣିଲେ ।

ମା, ମାଉସୀ ,ପ୍ରତିବେଶୀ ଓ ପରିବାରର ଅହ୍ୟସ୍ତୀମାନେ ଦୂବ,ବରକୋଳି ପତ୍ର ,ଅରୁଆ ଚାଉଳ ଓ ଦୀପରେ ସମବେତ କଣ୍ଠରେ ହୁଳହୁଳି ପକେଇ କନ୍ୟାକୁ ବନ୍ଦାପନା ଓ ମଙ୍ଗଳ କାମନା କରନ୍ତି ।

× × × ×

ଉଠ ଉଠ ନଣନ୍ଦ ଗୋ ନୃପତି ଦୁଲଣୀ
ତୁମପାଇଁ ଆଣି ଅଛି ରତ୍ନ ଓଢ଼ିଆଣୀ
ଉଠ ଉଠ ନଣନ୍ଦ ଗୋ ନୃପତି ଦୁହିତୀ
ମଥାପାଇଁ ଆଣି ଅଛି ମୁକୁତା ସୀମନ୍ତୀ ।
ଉଠଉଠ ନଣନ୍ଦ ଗୋ ନୃପତି ଦୁଲାଲୀ
କଣ୍ଠକୁ ଆଣିଛି ଦଶ ଅବତାର ମାଳି ।
ଉଠ ଉଠ ନଣନ୍ଦ ଗୋ ନ କର ଗୋ ହଟ
ତୁମ ପାଇଁ ଆଣିଅଛି ସୁବର୍ଣ୍ଣ କରାଟ ।
ଉଠ ଉଠ ନଣନ୍ଦ ଗୋ ଉଠି ହୁଅ ଠିଆ
ତୁମ୍ଭ ପାଇଁ ଆଣିଅଛି କାଞ୍ଚନ ତାଟିଆ
ଉଠ ଉଠ ନଣନ୍ଦ ଗୋ ଛାଡ଼ିଦିଅ ବାଟ
ତୁମ୍ଭ ପାଇଁ ଆଣିଅଛି ଚିତ୍ରମେଘି ପାଟ ।

ବରକନ୍ୟାଙ୍କୁ  ସଙ୍କୁଳିଲା ବେଳେ ଦ୍ୱାର ଦେଶରେ ନଣନ୍ଦ ଉପସ୍ଥିତ ହୋଇ କନ୍ୟା ମୁଖରେ ମିଷ୍ଟାନ୍ନ ଗୁଞ୍ଜିଦେଇ ବାଟଓଗାଳି,'ତା ପାଇଁ କ'ଣ କ'ଣ ଆସିଛି ' ବୋଲି ଅଳିକରେ । କନ୍ୟା ସୁଲଳିତ କଣ୍ଠରେ ଯାହା ଯାହା ଆଣିଛି ତାକୁ ଗୀତ ଆକାରରେ ବୋଲିଥାଏ ।

× × × ×

ଓଳଗି ହୋଇଣ ମାଏ ବନ୍ଦାଇଲେ ଧୂପ
ପାଚିଲା ବାଳରେ ସୀତା ସିନ୍ଦୁର ଘେନିବ ।
ଓଳଗି ହୋଇଣ ମାଏ ଧଇଲେକ ଛତି (=ଛତ୍ରୀ)
କାଳେ କାଳେ ଆୟୁବନ୍ତ ହେଉ ସୀତାପତି ।

ମା ଓ ବୟସ୍କା ଅହ୍ୟସ୍ତ୍ରୀମାନେ ବରକନ୍ୟାଙ୍କୁ ଦାଣ୍ଡଦୁଆର ମୁଣ୍ଡରେ ବନ୍ଦାପନା କରି କନ୍ୟା ଆୟୁଷ୍ମତୀ ଓ ବର ଦୀର୍ଘଜୀବୀ ହେଉ ବୋଲି ଆଶୀର୍ବାଦକରି ଘର ଭିତରକୁ ପାଛୋଟି ନେଇଥାଆନ୍ତି ।

୪୨୯୧. ଓଗୋ (=ଆଗୋ) କଳମଲତା,
ପାଣି ଶୁଖିଲେ ହେବୁ ଅନାଥା ।

କଳମଶାଗ ପାଣିରେ ହୁଏ । ପାଣି ବିନା ବଞ୍ଚିପାରେ ନାହିଁ । ସେହିପରି ସ୍ତ୍ରୀ ଲୋକମାନେ ନିଜ ସ୍ୱାମୀ ଓ ପୁତ୍ର ମାନଙ୍କ ଉପରେ ସର୍ବଦା ନିର୍ଭରଶୀଳ । ଆଶ୍ରୟବିନା ସେମାନଙ୍କର ନିର୍ଭୀକ ଜୀବନଯାପନ ଅସମ୍ଭବ । ତେଣୁ କୁହାଯାଏ - 'ବିନାଶ୍ରୟେ ନ ବର୍ତ୍ତନ୍ତି କବିତା ,ବନିତା,ଲତା' ।

୪୨୯୨. ଓଧ (=ପାଣି ବିରାଡ଼ି) ଧରେ ମାଛ ।
କଟାସ (= ବଣ ବିରାଡ଼ି) କରେ ଭାଗ ।

ଜଣକର ପରିଶ୍ରମ ଲବ୍ଧ ଧନରେ ଅନ୍ୟଜଣେ ମାମଲତକାରୀ କରିବା ଅନୁଚିତ । ଏପରି କରୁଥିବା ବ୍ୟକ୍ତି ସର୍ବଦା ନିନ୍ଦନୀୟ ।

୪୨୯୩. ଓଧ ବିରାଡ଼ି ଉଦ (=ଜଳ) ଖା ।
ଘଇତା ରଖ୍ ସଉତୁଣୀ ଖା ।

ସଉତୁଣୀର ମୃତ୍ୟୁ କାମନା କରି ଓଧ ବିରାଡ଼ିର ସାହଚର୍ଯ୍ୟ ପ୍ରାର୍ଥନା କରାଯାଇଛି ।

୪୨୯୪. ଓଲୁଅ ,ସାରୁ, ମାଣ (=ମାଣ ସାରୁ) ତିନିହେଁ ସମାନ ।

ଗୋଟିଏ ଶ୍ରେଣୀର ହୀନ ବସ୍ତୁ ସମୂହ ଯେପରି ଏକପ୍ରକାର ହୁଅନ୍ତି ,ସେହିପରି ହୀନ ପ୍ରକୃତିର ବ୍ୟକ୍ତିମାନଙ୍କ ମଧ୍ୟରେ କୌଣସି ବିଶେଷ ପାର୍ଥକ୍ୟ ପରିଲକ୍ଷିତ ହୁଏ ନାହିଁ ।

୪୨୯୫. ଓଲ (=ଓଲୁଅ)ଆଉ ଘୋଳ(=ଘୋଳ ଦହି)ଅମଣିଆ ମାଇପର ବୋଲ ।

ଓଲୁଅ ସହିତ ଘୋଳଦହି ଯେପରି ବିଷତୁଲ୍ୟ ସେହିପରି ବୋଲ ନମାନିବା ସ୍ତ୍ରୀ କଥାରେ ନିର୍ଭରଶୀଳ ହେଲେ ପରିଣାମ ବିଷମୟ ହୁଏ ।

୪୨୯୬. ଓଉ କାଟୁ ବୋହୂ ,ଶାଶୁ କାଟିବ ଲାଉ ।

ହାଲୁକା ସହଜିଆ କାମକରିବା ଲୋକ କଠିନ କାର୍ଯ୍ୟକୁ ଏଡ଼ାଇ ଦିଏ । ଲାଉକାଟିବା ସହଜ ମାତ୍ର ଓଉକାଟିବା କଷ୍ଟସାଧ । ବୋହୂକୁ ଓଉକାଟିବାକୁ ଦେଇ ଶାଶୁ ଲାଉ କାଟି ବସେ । ତେଣୁ ବୋହୂ ପ୍ରତି ଏପରି ପକ୍ଷପାତିତା ପାଇଁ ଶାଶୁକୁ ଛଟା କରାଯାଇଛି ।

୪୨୯୭. ଓଲାଉଠାର (=ହଇଜା) ନାଡ଼ୀ,
ମୌଲବୀର ଦାଢି,
ଜଙ୍ଗଲରେ ଗାଈ ,
ତିନିଙ୍କୁ ବିଶ୍ୱାସ ନାହିଁ ।

୪୨୯୮. ଓଲ(=ଓଲୁଅ) ଖାଇ ଗୋଳ ।

ଓଲୁଅପରି ଏକ ନିକୃଷ୍ଟ ପଦାର୍ଥ ଖାଇଲେ ଯେପରି ତୁଣ୍ଡ ଗଲୁକରି ଶରୀରରେ ଅସ୍ଥିରତା ସୃଷ୍ଟିକରେ ସେହିପରି ଅତି ହୀନପ୍ରକୃତିର ମନୁଷ୍ୟ ବିନା କାରଣରେ ଗୋଳମାଳ ଜନିତ ଅପ୍ରୀତିକର ପରିସ୍ଥିତି ସୃଷ୍ଟି କରନ୍ତି ।

୪୨୯୯.　ଓଲୁଅ ନାଆଁରେ ଗଲା କୁଣ୍ଢେଇହବା ।

ନିଜ ଅସୁବିଧା ପାଇଁ ପର ଉପରେ ଦୋଷାରୋପ କରିବା ।

୪୩୦୦.　*ଏକାର୍ଥରେ-* କଣ୍ଟାବାଡ଼ରେ ଲୁଗା ପକାଇ କଳିକରିବା ।

୪୩୦୧.　ଓଲୁଅ ପୁଅ ଓଲୁ ।

ସାରୁ ପୁଅ ମାରୁ ।

ମାଣ(=ମାଣ ସାରୁ) ପୁଅ ପାଣ ।

ଓଲୁଅ ,ସାରୁ ଓ ମାଣସାରୁ ତିନୋଟିଯାକ ଖାଦ୍ୟସାମଗ୍ରୀ ହେଲେ ମଧ ଏ ଗୁଡ଼ିକୁ ନିକୃଷ୍ଟ ପଦାର୍ଥ ହିସାବରେ ହୀନ ଭାବରେ ଚିତ୍ରଣ କରାଯାଇଛି ।

୪୩୦୨.　ଓଲୁଅ କହେ - ଆରେ ମାଣ (=ମାଣସାରୁ) ତୁ ପରା ଗଲୁ (=କୁଣ୍ଢାଉ ) ।

୪୩୦୩.　*ଏକାର୍ଥରେ -* ଚାଲୁଣି କହେ ଛୁଞ୍ଚିକୁ ତୋ ଗାଣ୍ଡିରେ ଗୋଟେ କଣା ।

ଓଲୁଅ ଖାଇଲେ ଯେପରି ଗଳାକୁଣ୍ଢାଏ ମାଣସାରୁର ମଧ ସେହିପରି ପ୍ରତିକ୍ରିୟା ଦେଖାଯାଏ । ଅଥଚ ଓଲୁଅ ଏଠାରେ ମାଣସାରୁକୁ ନିଲ୍ଲଜ ଭାବରେ ସମାଲୋଚନା କରିଛି । ସେହିପରି ଦୋଷ ଦୁର୍ଗୁଣ ଯୁକ୍ତ ବ୍ୟକ୍ତି ଅନ୍ୟର ଛିଦ୍ର ବାହାରକରି ତାକୁ ଦୋଷାରୋପ କରିଥାଏ ।

୪୩୦୪.　ଓଝା (=ଗୁଣିଆ) କାନ୍ଧରେ( ଭୁତ) ବୋଝ ।

ଲୋକଙ୍କ ଉପରେ ଭୁତ ସବାର (=ଚଢିଲେ) ହେଲେ ଭୁତ ଛଡ଼ାଇବା ପାଇଁ ଗୁଣିଆ ଡ଼ାକରା ହୁଏ । ମାତ୍ର ଏ କ୍ଷେତ୍ରରେ ଗୁଣିଆକୁ ବ୍ୟଙ୍ଗ କରାଯାଇ ତା କାନ୍ଧରେ ଭୁତର ବୋଝ ପଡ଼ିଛି ବୋଲି କୁହାଯାଉଛି ।

୪୩୦୫.　ଓଝା ଡ଼ାକିଲି ମା' କୁ ଭଲ କରିବ

ଓଝା ଚାହୁଁଛି ମା' କୁ ବାହା ହେବ ।

ଗୁଣିଆମାନେ ଭୁତ ଛଡ଼ାଇବା ବାହାନାରେ ଘରର ଭୁଆସୁଣୀ ଝିଅ ବୋହୂ ମାନଙ୍କୁ ଫୁସୁଲା ଫୁସୁଲି କରି କରାୟତ କରୁଥିବାରୁ ସେମାନଙ୍କୁ ଏ ପ୍ରବାଦଟିରେ ଉପହାସିତ କରାଯାଇଛି ।

୪୩୦୬.　ଓଦା (=ଆର୍ଦ୍ର) ଧାନର ଭାତ,ଗୋଦର ଗୋଡ଼ର ନାତ ।

ବର୍ଷାକାଳରେ ଉତ୍ପନ୍ନ ଆଉଶ ଧାନର ଚାଉଳର ଭାତ ମୋଟା ହୁଏ । ଗୋଦର ଗୋଡ଼ର ନାତ ବଡ଼ କାଟେ । ଆଉଶ ଧାନର ଚାଉଳର ଭାତକୁ ଗୋଦର ଗୋଡ଼ ସହିତ ତୁଳନା କରାଯାଇଛି।

୪୩୦୭.　ଓଦା ଧାନ କୁଟି କୁଟି କୁଟୁଣୀ

ଓଦା ଭାତ ରାନ୍ଧି ରାନ୍ଧି ରାନ୍ଧୁଣୀ ।

ବର୍ଷାକାଳର ଉତ୍ପନ୍ନ ଆଉଶ ଧାନକୁଟି ଚାଉଳକରିବା ଯେପରି କୁଟୁଣୀ ପକ୍ଷରେ କଷ୍ଟସାଧ ,ସେ ଚାଉଳରୁ ଭାତ ରାନ୍ଧିବା ରାନ୍ଧୁଣୀ ପକ୍ଷରେ ମଧ ସେହିପରି ଶ୍ରମ ସାପେକ୍ଷ ।

୪୩୦୮.　ଓର ଉଣ୍ଡି ହାତ ମାରିବା ।- ଉପଯୁକ୍ତ ସମୟ ଦେଖି କାର୍ଯ୍ୟ ହାସଲ କରିବା ।

୪୩୦୯.　ଓଠ ଚାଟିଲେ ଶୋଷ ମରେନାହିଁ ।

୪୩୧୦. ଓସ୍ତାତର ମାଡ଼ ଶେଷ ରାତିରେ ।

୪୩୧୧. ଓହଳକୁ ଦୋହଳ (=ଇଚ୍ଛାଶକ୍ତି)ଟାଣ ।

୪୩୧୨. **ମନ୍ତୁରା ବୋଲି ପଦମାଳ**

ଓଁ ପାଣି ତ ପାଣି
ସତ୍ୟ ତ୍ରେତା ଦ୍ୱାପର କଳି ଚାରି ଯୁଗ ପାଣି
ଶ୍ରୀରାମ ଅବତାର ପାଣି
କୂର୍ମ ଅବତାର ପାଣି
ବଉଧ ଅବତାର ପାଣି
ପର୍ଶୁରାମ ଅବତାର ପାଣି
ମଛ ଅବତାର ପାଣି
କଛ ଅବତାର ପାଣି
ବରାହ ଅବତାର ପାଣି
ଏପାଣି ଦେଲେ ବିଶ୍ୱାମିତ୍ର ଅଗସ୍ତି ମହାମୁନି ଛାଣି
ହନୁମନ୍ତ ଆଣିଲାକ ସାତ ସମୁଦ୍ର ପାଣି
ଏ ପାଣି ବ୍ରହ୍ମାଙ୍କ କମଣ୍ଡଳ ପାଣି
ମହାଦେବଙ୍କ ତ୍ରିଶୁଳ ଡ଼ମରୁ (=ଡ଼ମ୍ବରୁ)ପାଣି
ବିଶ୍ୱନାଥଙ୍କ ଡ଼ମରୁ ପାଣି
ପାର୍ବତୀଙ୍କ ଶ୍ରୀଅଙ୍ଗ ପାଣି
କାର୍ତ୍ତିକେଶ୍ୱରଙ୍କର ଚତୁର୍ଭୁଜ ପାଣି
ହରିଙ୍କ ସୁଦର୍ଶନ ଚକ୍ର ପାଣି
ଶ୍ରୀ ଜଗନ୍ନାଥଙ୍କର ଶ୍ରୀଅଙ୍ଗ ପାଣି
ସୁଭଦ୍ରାଙ୍କର ଦୁଇଭୁଜ ପାଣି
ବଳଭଦ୍ରଙ୍କର ଚତୁର୍ଭୁଜ ପାଣି
ଶ୍ରୀକୃଷ୍ଣଙ୍କର ବେଣୁସ୍ୱନ ପାଣି
ରାମଚନ୍ଦ୍ରଙ୍କର ବ୍ରହ୍ମଶର ପାଣି
ଦୁର୍ଗାଦେଲେ ପଣତରେ ଛାଣି
କାଉଁରିମଣ୍ଡଳ ନିତେଇ ଧୋବଣୀ ପାଣି
କାଉଁରୀପାଟଣା ମାଧବବେହେରା ମା ସାତବିଆଣିଆ ପାଣି ।

**ଫଳାଫଳ-**

ଏ ପାଣି ଦେଲେ ନଳୀନାଶଣ (=ସୁଗନ୍ଧ ନାଶକ) ଲେଉଟଇ
ଗାଈ ଗୁହାଳ ଲେଉଟଇ
ମଇଁଷି ଗୋଠ ଲେଉଟଇ
ବାଇଗଣ ଗଛ ଲେଉଟଇ
ରାଶି ଗଛ ଲେଉଟଇ
ଗାଈ, ମଇଁଷି ଗଭୁରୁଥିଲେ ଫଳରହଇ
ଦଧି ଦୁଧ ନାଶଣ ଖୁଆ ଲେଉଟଇ
କାକମଡ଼ଛୀ (= ଖଳବ୍ୟକ୍ତି ଦ୍ୱାରା ଯେଉଁ ସ୍ତ୍ରୀର ମଣ୍ଡାଳୁଆ ହୁଏ ) ଭଲହୁଅଇ ।

୪୩୧୩. ଓଡଲ (=ଓଡ ନାମକ ନିରସ ଶାଢୀ ) କନା ପିନ୍ଧି ପଶିଲୁ ଘରେ ।
ତୋର କିପାଇଁ ସତେ ଗାରିମା ଏଡ଼େ ।
ବୁଢୀକାଳେ ଲୋ ମୋର ଆସୁଛି ଭାର ।
ବୁଡ଼ି ନ ମଲୁ ତୁଲୋ ବାଡ଼ିଁରେ ଯୋଡ଼ ।

ବୋହୂ ଶାଶୁଘରେ ପହଞ୍ଚିଲା ମାତ୍ରେ ତା ଉପରେ ଶାଶୁର ଅତ୍ୟାଚାର ଆରମ୍ଭ ହୋଇଯାଏ । ଉଲ୍ଲିଖିତ ପଦ ବୋହୂପ୍ରତି ଶାଶୁର କଟୁକ୍ତି ।

୪୩୧୪. ଓଉ କୋମଳିଆ ,ଖାଇତେ ବଢିଆ
କଟୁରୀ ଆଗରେ ଲୁଣରେ ;
ମୋ ବାପା କୋମଳିଆ ,ସବୁଠୁ ସୁନ୍ଦର
ଦେହରେ ଲାଗିଛି ସୁନାରେ ।

୪୩୧୫. ଓଉ ଗଛମୂଳେ ବୋଉ ବଇଛି (=ବସିଛି)
ଉଠପୀଡେଇ ବର ଆଉଚି (=ଆସୁଛି) ।

ବର ଦେଖିବା ପାଇଁ ଗାଁଉଲି ସ୍ତ୍ରୀଲୋକମାନଙ୍କର ପ୍ରବଳ ଆକାଂକ୍ଷା । ଯେ ଯାହା କାର୍ଯ୍ୟ କରୁଥିଲେ ମଧ ଛାଡ଼ି ଛୁଟି ଚାଲି ଆସନ୍ତି ଗାଁ ଦାଣ୍ଡକୁ - ବର ଦେଖିବେ ।

୪୩୧୬. ଓକିଲ ଭାଇ, ଯାହାର ଖାଇବ ତାହାର ଗାଇ ।

ଓକିଲ ଯାହାଠାରୁ ପଇସା ପାଆନ୍ତି /ନିଅନ୍ତି ତା ତରଫରୁ ମକଦ୍ଦମା ଲଢନ୍ତି ।

୪୩୧୭. ଓଛନା ପାଏନା । - ଅସନା ପାଣି ।

୪୩୧୮. ଓଜନ ଦେଖି ଭୋଜନ ।

ମନୁଷ୍ୟ ସ୍ୱାସ୍ଥ୍ୟରକ୍ଷା ପାଇଁ ଶରୀରର ଓଜନ ଅନୁଯାୟୀ ଖାଦ୍ୟ ଖାଇବା ଉଚିତ ! ତେଣୁ କୁହାଯାଏ ଯେ-' ଖାଇ ଖାଇଲେ ଯମର ଭେଟ ' ।

୪୩୧୯.　ଓଟ ତୋ ପିଠିରେ ଗୋଟିଏ କୁଜ ,
　　ଓଟକହେ -ମୋର କେଉଁ ଅଙ୍ଗଟା ସଜ ।
୪୩୨୦.　ଓଟ ମୁହଁରେ ଜିରା ।
୪୩୨୧.　*ଏକାର୍ଥରେ-* ସମୁଦ୍ରକୁ ଶଙ୍ଖେ ପାଣି ।

ଓଟପରି ବଡ଼ଜୀବର ମୁହଁକୁ ଜୀରାପରି ସାମାନ୍ୟ ବସ୍ତୁ ଖାଇବାକୁ ଦେଲେ ତାହା ନଗଣ୍ୟ । ସେହିପରି ବେଶିବସ୍ତୁ ଲୋଡ଼ାଥିବା ସ୍ଥଳେ ଅତ୍ୟଳ୍ପ ବସ୍ତୁ ଦିଆଗଲେ ଏହା ପ୍ରୟୋଗ କରାଯାଏ ।

୪୩୨୨.　ଓଡ଼ (=ମୁର୍ଖ) ,ଗଉଡ଼ ,ଭଣ୍ଡାରି , ଏ ତିନିହେଁ ଧର୍ମର ବଇରୀ ।

ମୂର୍ଖ ଧର୍ମାଚରଣ ଜାଣେ ନାହିଁ ,ଗଉଡ଼ ଦୁଧରେ ପାଣି ମିଶାଇ ଧର୍ମହାନୀ କରେ ,ଭଣ୍ଡାରିର ବାକ୍ ଚାତୁରୀ ଧର୍ମ ବିରୋଧି ।

୪୩୨୩.　ଓଡ଼ଶ ବିଆଣ ପରି । - ବହୁ ସନ୍ତାନ ପ୍ରସବ କରୁଥିବା ସ୍ତ୍ରୀ ।
୪୩୨୪.　ଓ 'ଡ଼ ପାଇଟି ଦୋ 'ଡ଼ କରିବା ।
୪୩୨୫.　ଓଡ଼ିଆ ମାଇ ,ପଞ୍ଜାବୀ ଗାଈ ।

ଓଡ଼ିଆ ସ୍ତ୍ରୀଲୋକ ସୁନ୍ଦର ଓ ପଞ୍ଜାବ ଅର୍ଥାତ୍ ହରିଆନାଗାଈ ଦୁଧିଆଳୀ ,ଏମାନେ ଅନ୍ୟମାନଙ୍କ ଠାରୁ ଉତ୍କୃଷ୍ଟ ଅଟନ୍ତି ।

୪୩୨୬.　ଓଡ଼ିଆ ସେ ଦାତା ନେହିଁ (=ନାହିଁ) ,
　　ମାଡ଼ ନେହିଁ ଦେନେ ସେ ( ବେଗରମାଡ଼ ସେ) ଦେତା ନେହିଁ ।
୪୩୨୭.　ଓରା (=ଉରା) ରେ ବୁଣିଲି ଗଜା ଗହମ,
　　ଶଶୁର ପାଇଲି ଜଗମୋହନ ।
　　ଶାଶୁ ପାଇଲି କଳା ତୁଳସୀ
　　ନଣନ୍ଦ ପାଇଲି ଗୋଟି ଖଡ଼ିକା
　　ଯାଆତ ପାଇଲି ସାଙ୍ଗ ସରିସା
　　ଘଇତାର ବଡ଼ ହିଂସା ।
୪୩୨୮.　ଓଡ଼ାମଡ଼ା ! ତୋ ବଉଁଶ ଯାକ ପୋଡ଼ା ।

ଖେଳୁଥିବା ପିଲାମାନଙ୍କ ମଧ୍ୟରେ 'ଓଡ଼ାମଡ଼ା' ଏକପ୍ରକାର ଅଶୁଭସୂଚକ ଗାଳିବିଶେଷ ।ଏହି ଶିଶୁ ପଦରେ ଏହା ପ୍ରକାଶ ପାଇଛି । 'ଓଡ଼ାମଡ଼ା' ପକେଇବାର ଅର୍ଥ ଅଶୁଭ ବାଞ୍ଛାକରି ଗାଳିଦେବା ।

୪୩୨୯.　ଓର ନାଳ ଗାଁ ପଦିଆ ତନ୍ତୀ
　　ଲାଭ ଖାଇଗଲେ ମାଧ ମାହାନ୍ତି ।

ତନ୍ତୀମାନେ ସାଧାରଣତଃ ଚଲାକ ଲୋକବୋଲି ପରିଗଣିତ । କାରଣ ସେମାନେ ଲୋକଙ୍କଠାରୁ

ଲୁଗାବୁଣିବା ଆଢରେ ବହୁ ଅର୍ଥ ଉପାର୍ଜନ କରିଥାଆନ୍ତି । ମାତ୍ର ମାହାନ୍ତି ଜାତି ତନ୍ତୀମାନଙ୍କ ଠାରୁ ଆହୁରି ଚତୁର । ତନ୍ତୀର ଜାଉକୁ ମହାନ୍ତି ମାନେ ନା ନା ପ୍ରକାରର କଥାର କୁହେଳିକା ସୃଷ୍ଟିକରି ହଡ଼ପ କରିଥାଆନ୍ତି । ମହାନ୍ତି ଜାତିକୁ ଏଥିରେ ମୃଦୁ ଭର୍ତ୍ସନା କରାଯାଉଛି । ପ୍ରବାଦ ଅଛି- 'ମହାନ୍ତି ଜାତି ଢେଉ ଗଣି ଗଣି ପଇସା ଖାଆନ୍ତି ।'

୪୩୩୦. ଓରଛାଖାଲେ । - ଓଳି ତଳ ।

୪୩୩୧. ଓଡ଼ିଶା ଗୁଡ଼ି (= ମନ୍ଦିର)
ଆମ ବାପାଙ୍କର ସୁନା ପଗଡ଼ି
ଖୁଦୁରୁ ଖୁଦୁରୁ ଖୁଦ ପିଠା,
ଆଠ ଗଡ଼ିଆଣୀ ଜଗନ୍ତିତା
ହଲେଇ ଦିଅନ୍ତି କାପ ମଲକଢି
ବାଣପୁରିଆଣୀ ଦେଖେଇ ଦିଅନ୍ତି ବାହାଚିତା ।

୪୩୩୨. ଓଡ଼ିଆ -ଖାଡ଼ିଆଶିଙ୍ଗା ବଢିଆ ।

ଗୋରୁମାନଙ୍କମଧରେ ଖାଡ଼ିଆଶିଙ୍ଗା ସବୁଠାରୁ ଉତ୍କୃଷ୍ଟ ଗୋରୁ । ତେଣୁ ଓଡ଼ିଆ ଚାଷୀମାନଙ୍କୁ ଚେତାବନୀଦେଇ ଏହି ଉତ୍କୃଷ୍ଟ ଗୋରୁ କିଣିବାକୁ ଉପଦେଶ ଦିଆଯାଉଛି ।

୪୩୩୩. ଓରାଂ ଆଉଟାଂ ।

ବଣ ମଣିଷ । ଏକ ଶ୍ରେଣୀୟ ଆଦିବାସୀ ଲୋକଙ୍କୁ ଓ 'ଓରାଆଁ 'ବା 'ଓରାଂ' ବୋଲି କୁହାଯାଏ । ଯେପରି ସାନ୍ତାଳ, କୋହ୍ଲ ,କନ୍ଧ,ଗଣ୍ଡ ଇତ୍ୟାଦି ।

୪୩୩୪. ଓଳି ତଳେ ଚାଷ କି ଓଳି ତଳେ ବାସ ।

ଓଳିତଳେ ଚାଷ କିମ୍ବା ଅନ୍ୟର ଓଳିତଳେ ବାସକରିବା ଭଲନୁହେଁ ।

୪୩୩୫. ଓଳି ଗୁଣେ କୋଳି ,ପଲମ ଗୁଣେ ସରୁ ଚକୁଳି ।

୪୩୩୬. *ଏକାର୍ଥରେ* - ଓଳି ଘେନି କୋଳି, ପଲମ ଘେନି ସରୁ ଚକୁଳି ।

ମାଟି ଗୁଣରେ କୋଳି ଖଟା ବା ମିଠା ଏବଂ ପଲମ ଘେନି ଚକୁଳି ସରୁ ବା ମୋଟା ହୁଏ । ସେହିପରି ମନୁଷ୍ୟ ପ୍ରକୃତି ବଂଶାନୁଗୁଣ ଓ ପାରିବାରିକ ପରିପାର୍ଶ୍ୱ ଦ୍ୱାରା ପ୍ରଭାବିତ ହୋଇଥାଏ ।

୪୩୩୭. ଓପ୍ରଧିଆ (=ଉପରୋଧ)ମାଇପକୁ କୁକୁର ନିଏ ।

୪୩୩୮. *ଏକାପରି* - ମାଇପ ଓପ୍ରଧରେ ସାନ ଶଳାକୁ ଜୁହାର ।

## ଚଢେଇୟାଣୀର ବିଳାପ

୪୩୩୯. ଓଡ଼ଙ୍ଗଗଡ଼ର ଡ଼ବା ବାଉଁଶରେ ମୟୂରୀ ନପାଏ ସନ୍ଧି
ମାଇପୀ ହୋଇ ମୁଁ ଛ' ମାସେ ଯୁଝିଲି ମୋ ସ୍ୱାମୀ ରହିଲେ ବନ୍ଦି ।

ମୋ ବାୟାରେ କା ଆଗେ କହିବି ଯାଇ,
ଯା ଆଗେ କହନ୍ତି ହୃଦୟ ବେଦନା ମରି ପଡ଼ିଛନ୍ତି ସେହି ।
ସରିଲା ମୋ କର୍ମ,ବିହି କଲା ବାମ ,ନାମ ଲୋପ ହେଲା ମହୀ
ରାଣୀ ସଙ୍ଗେ କାଣୀ ପରି ହେଲି ଘଣି ନେତ୍ରୁ ନୀର ଯାଏ ବହି
ମୋ ବାପରେ ,ମୁଁ କା ଆଗେ କହିବି ଯାଇ
ଯା ଆଗେ କହନ୍ତି ହୃଦୟ ବେଦନା ମରି ପଡ଼ିଛନ୍ତି ସେହି ।
ବହୁତ ନଖାନ୍ତି ,ଅଳପ ଖାଆନ୍ତି ,ପଟିଏ ଖାଆନ୍ତି ଘୃଅ,
ତବତ ଅଗ୍ନିରେ ଝାସ ଦେଲା ଯାଇ ,ସୁନା ପରତିମା ଦେହ
ମୋ ନାଥରେ ,କା ଆଗେ କହିବି ଯାଇ
ଯା ଆଗେ କହନ୍ତି ହୃଦୟ ବେଦନା ମରି ପଡ଼ିଛନ୍ତି ସେହି ।
କରୁ ସୁନାଚୁଡ଼ି ତଳେଗଲା ପଡ଼ି,ମୋ ଶାଢୀନେଲୁ ଛଡ଼ାଇ
ମସ୍ତକ ସିନ୍ଦୁର ଲିଭିଲା ମୋହର ଦରମୁ ପାରିଡ଼ା କହି
ମୋ ଧନରେ ,କା ଆଗେ କହିବି ଯାଇ
ଯାଆଗେ କହନ୍ତି ହୃଦୟ ବେଦନା ମରିପଡ଼ିଛନ୍ତି ସେହି ।

୪୩୪୦. ଓଳିଆ ଉପରେ ନେଳିଆ ଖଦି
କିଏ ହଜାଇଲା ତୁମର ବୁଦ୍ଧି ।

୪୩୪୧. ଓଳି ତଳେ ,ଠିଆ ନୋହିବ ସଂଧ୍ୟାକାଳେ

ସଞ୍ଜବେଳେ ଓଳି ତଳେ ଛିଡ଼ାହେଲେ ଲକ୍ଷ୍ମୀ ଛାଡ଼ି ଯାଆନ୍ତି ବୋଲି ଲୋକ ବିଶ୍ବାସ ।

୪୩୪୨. ଓଶକା ସଙ୍ଗାତ ମିତ ବଉଳ,
ସରିଗଲା ତୁମ୍ଭ ଆମ୍ଭର ଖେଳ ।

ଶାଶୁ ଘରକୁ ପହିଲିପାଳି ଯାଉଥିବା ଝିଅର ସଙ୍ଗିନୀମାନଙ୍କ ପ୍ରତି ବିଦାୟ ସମ୍ଭାଷଣର ଢମାଳି ।

୪୩୪୩. ଓଶକା କଡି ,
ମନେ ପଡୁଥିବ (ରଖୁଥିବ) ଘଡ଼ିକି ଘଡ଼ି ।

ଅଶୋକାଷ୍ଟମୀ ଦିନ ଅଶୋକଫୁଲକଢ଼ି ଖୁଆଖୋଇ ହୋଇ ବସିଥିବା ଧର୍ମ ବାନ୍ଧବୀ । ଉଭୟେ ଉଭୟଙ୍କୁ 'ଓଶକା' ବୋଲି ଡ଼କାଡ଼କି ହୁଅନ୍ତି । ଏହାକୁ 'ଓଶକା' ବସିଛି ବୋଲି କୁହାଯାଏ । ଶାଶୁ ଘରକୁ ଯିବାବେଳେ 'ଓଶକା' ବସିଥିବା ସଙ୍ଗିନୀଙ୍କ ବିଦାୟ ସମ୍ଭାଷଣର ଢମାଳି ।

୪୩୪୪. ଓଳିଆରୁ ଗଳା /ଓଳିଆରୁ ପଡ଼ି ଗଳା ।

ଅଳ୍ପ ବୟସରେ ଅତି ଚଲାଖି ବା ଧୂର୍ତ୍ତତା ଦେଖାଇବା ପିଲା । ଯେପରି ଶସ୍ୟବୁଣା ପୂର୍ବରୁ ସେଥିରୁ ଗଛ ବାହାରିବା ।ଏପରି ପାଚିଲ ଚଲାଖି ପ୍ରକାଶ ପାଉଥିବା ପିଲାକୁ 'ଇଞ୍ଚଡ଼ପାକା' କୁହାଯାଏ ।

୪୩୪୫. ଓଳିପାଣି ତଳି ଧଇଲାଣି ।

୪୩୪୬. *ଏକାର୍ଥରେ* -ଲେଡ଼ିଗୁଡ଼ କହୁଣୀକୁ ବହିଯିବା ।

ମୁଣ୍ଡପାଣି ଗୋଡ଼କୁ ଆସିଲାଣି ଅର୍ଥାତ୍ କଥା ବଢେଇଗଲାଣି ।

୪୩୪୭. ଓଲଟ କଦଳୀ ଦୁଇଜାନୁ ତୋର ,
ତାକୁ ଝାମ୍ପିବାକୁ ମନ
ଖଟଖୁରା ପ୍ରାୟେ ଦଣ୍ଡା ଶୋହାବନ,
ଦିହ ତୋ କେତକୀ ବର୍ଣ୍ଣ
ପ୍ରାଣ ସଜନୀ ଗୋରି ,
ମୋ ନୟନ ତତେ ଭଗାରି ।

୪୩୪୮. ଓଷାଯାକରେ ଖୁଦୁରୁକୁଣୀ , ଯାତ ଯାକରେ ତିରିବିଣୀ

ଖୁଦୁରୁକୁଣୀ ଓଷା ଭାଦ୍ରମାସରେ କୁମାରୀମାନେ ପାଳନ୍ତି ।ଏହାର ଅନ୍ୟନାମ 'ଭାଲୁକୁଣୀ' । ଉତ୍କଳର ଗୌରବମୟ ଐତିହ୍ୟ ଏଥିରେ ପ୍ରତିଫଳିତ । ସେହିପରି ତିରିବେଣୀ (=ତ୍ରିବେଣୀ )ମାଘ ମାସରେ ପ୍ରାଚୀନଈ କୂଳରେ ପୁରୀ ଜିଲ୍ଲାର ନିମାପଡ଼ା ନିକଟବର୍ତ୍ତୀ ସ୍ଥାନରେ ବିରାଟମେଳା ଅନୁଷ୍ଠିତ ହୁଏ ଯାହାକି ଓଡ଼ିଶାର ଗୌରବମୟ ପ୍ରାଚୀନ ସଭ୍ୟତାର ପ୍ରତୀକ ।

୪୩୪୯. ଓଷଇତି ର ମନ ନାହିଁ ,ଘଣ୍ଟି ବଜାଉ କାହିଁପାଇଁ ?

କୌଣସି କାର୍ଯ୍ୟରେ ସଂପୃକ୍ତ ପକ୍ଷର ଅନାଗ୍ରହଭାବ ପ୍ରତି ।

୪୩୫୦. ଓଷ୍ଟ କରିବାକୁ ନ ମିଳିବା ।

ଔଷଧ ପାଇଁ କୌଣସି ପଦାର୍ଥ ଅତି ସାମାନ୍ୟ ମାତ୍ରାରେ ଲୋଡ଼ାହୋଇ ନମିଳିଲେ ଅର୍ଥାତ୍ କୌଣସିବସ୍ତୁ ଅତି ସାମାନ୍ୟ ପରିମାଣରେ ମଧ ନମିଳିଲେ ଲୋକେ କହନ୍ତି 'ଅମୁକ ଜିନିଷ ଓଷ୍ଟ କରିବାକୁ ସୁଦ୍ଧା ମିଳୁନାହିଁ ।'

୪୩୫୧. ଓଷଧୀଶାନନ ।- ଚନ୍ଦ୍ରପରି ଉଜ୍ଜଳମୁଖ ଯାହାର - ଚନ୍ଦ୍ର ବଦନ ।

୪୩୫୨. ଓଲୁଅକୁ ବଣସାରୁ ସାକ୍ଷୀ ।

୪୩୫୩. ଓଲୁଅ କହୁଛି ବଣସାରୁକୁ
ତୋର ମୋର ଯିବା ବିଭାଘରକୁ ।
ତୁହେବୁ ଗାଲୁମାଲୁ ମୁଁ ହେବି କୁଣ୍ଡେଇ
ତିଅଣ(=ତରକାରୀ) ହାଣ୍ଡିକି ନେବା ମୁଣ୍ଡେଇ ।

୪୩୫୪. ଓଲୁଅ ତିଆରେ ବଣସାରୁକୁ ତୋରାମୋର ଯିବା ବିଭାଘରକୁ ।

ବିଭାଘର ଭୋଜିରେ ଓଲୁଅ ଓ ବଣସାରୁ ଆଦୌ ଦରକାର ପଡ଼େନାହିଁ ।ତେଣୁ ଅସମ୍ଭବର ଅବତାରଣା କରି ଥଟ୍ଟା ପରିହାସ କରିବା ।

୪୩୫୫. ଓସ୍ତାନି ,ପୋସ୍ତାନି ବାହାର କରିବା ।

କୌଣସି ବ୍ୟକ୍ତିର ପୂର୍ବ ପୁରୁଷାନୁକ୍ରମିକ ପାରିବାରିକ ଗୃହଛିଦ୍ର ବାହାର କରିବା । ଯେପରି କୁହାଯାଏ 'ମୁଁ ତୋର ଓସ୍ତାନି ପୋସ୍ତାନି ଖୋଲି ଦେବି '।

୪୩୫୬. ଓଷ୍ଟେ କଷ୍ଟେ । - କଷ୍ଟେ ମଷ୍ଟେ ଅର୍ଥାତ୍ ଅତି କଷ୍ଟରେ ।

୪୩୫୭. ଓସ୍ତ ଗଛକୁ କେବେ ନ କାଟ ,
ଗୁରୁନିନ୍ଦା କେବେ ନକର ଚାଟ ।

୪୩୫୮. ଓଲଟା (ଓଲଟି) ଦାସେ ଗଧ( ଘୋଡ଼ା) ଚଢିବା ।

ନିଜେ ଦୋଷକରି ଅନ୍ୟକୁ ଦୋଷୀକରିବାକୁ ଚେଷ୍ଟା କରିବା । ନିଶାପରେ ବା ବିଚାରଣାରେ ଯେଉଁ ପକ୍ଷ ଦୋଷୀହୋଇଥାଏ ସେ ଓଲଟି ଅପରପକ୍ଷକୁ ଦୋଷୀବୋଲି କହିବା ,ଅର୍ଥାତ୍ ଯାହା ଉପରେ ମୋର ପାଉଣା ପାଇବାରଅଛି ,ତାକୁ ନଦେଇ ଓଲଟି ମୋ ଉପରେ ବିରକ୍ତ ହେଲେ ଏହି ଉକ୍ତିଟି ପ୍ରୟୋଗ କରାଯାଏ ।

୪୩୫୯. ଓଲେଇ ହାତରେ ଶୁଖୁଆ ପୋଡ଼ା ।

ଠକ ବା ଅସାଧୁ ବ୍ୟକ୍ତି ହାତରେ ଧନ ସମ୍ପଦ ଦାୟିତ୍ୱ ନ୍ୟସ୍ତ କରିବା ।

୪୩୬୦. ଓଲଟା ଗଙ୍ଗା ବହିବା । - ଅସମ୍ଭବ ଚିନ୍ତା ବ୍ୟକ୍ତକରିବା ।

୪୩୬୧. ଓଲଟା କଳସରେ ଜଳ ପୁରାଇବା । - ଅସମ୍ଭବ ପ୍ରଚେଷ୍ଟା କରିବା ।

୪୩୬୨. ଓଲେଇ କପାଳକୁ ଶିକା ଛିଣ୍ଡିଲା ।

୪୩୬୩. *ଏକାର୍ଥେ* -ଅଜଗରକୁ ଦାତା ରାମ ।

ଅଳ୍ପବୁଦ୍ଧି, ଅଳସୁଆ କିନ୍ତୁ ଭାଗ୍ୟବାନ । ତେଣୁ ପରିଶ୍ରମ ନକରି ସେ ଭାଗ୍ୟବଳରେ ସୁଖ ଓ ଐଶ୍ୱର୍ଯ୍ୟ ଲାଭ କରି ଥାଏ । ଯେ ଯାହା ଆଶା କରିଥାଏ ତାହା ଦୈବୀ କୃପାରୁ ହଠାତ୍ ମିଳିଲେ ଏହି ପ୍ରବାଦଟି ପ୍ରଯୁଜ୍ୟ ହୁଏ । ।

୪୩୬୪. ଓଲଟ ବୃକ୍ଷେ ଖେଳୁଛି ଲୋଟଣୀ ପାରା
ଅଠାକାଠି ପଞ୍ଜୁରୀରେ ନ ଦିଏ ଧରା । - ଶରୀର ଭେଦ ବଚନ ।

୪୩୬୫. ଓଲେଇ ଦରକଞ୍ଚା ଖାଏ,
ଦୁଆରବୁଲାର ପୋଡ଼ିଯାଏ ।

ଓଲେଇର ଧୈର୍ଯ୍ୟ ହୀନ ,ସେ କଞ୍ଚା ,ଦରସିଝା ଯାହାପାଏ ଖାଇଦିଏ । ମାତ୍ର ଯେ ବାର ଦୁଆରକୁ ବୁଲିଯାଏ ସେ ଠିକ୍ ସମୟରେ ଫେରିପାରେ ନାହିଁ । ତା ତରକାରୀ ପୋଡ଼ିଯାଏ ।

୪୩୬୬.　　ଓଲେଇଲୋ ଘରୁଯା,
　　　　ଓଲମୀ ଲୋ ଘରେ ଥା ।

ଓଲେଇ ସବୁ ଖାଇଯାଏ ତେଣୁ ତାକୁ କେହି ଭଲପାଆନ୍ତି ନାହିଁ । ଛି ଛାକର କରନ୍ତି । ଓଲମୀ ଘରର ଧନକୁ ସାଇତି ରଖେ । ଯାହି ତାହି ଘର ଚଳାଏ । ତେଣୁ ତାକୁ ସମସ୍ତେ ଆଦର କରନ୍ତି ଓ ସେ ଅନ୍ୟର କରୁଣା ଆକର୍ଷଣ କରେ ।

୪୩୬୭.　　ଓଲେଇର ଦର ଦର କଞ୍ଚା ,
　　　　ହାଣ୍ଡିଖାଇର ଦର ଦର ଶିଝା ।

ଓଲେଇ କଞ୍ଚା ପରିବା କାଟୁକାଟୁ ପାଟିରେ ଖାଏ । ହାଣ୍ଡି ଖାଇ ଦର ଶିଝା ଜିନିଷ ହାଣ୍ଡିରୁ କାଢିଖାଏ ।

୪୩୬୮.　　ଓଲେଇ ପାଟିକି ପାନ ଗଲା ,
　　　　ପାନ କହିଲା ଯେ ପ୍ରାଣ ଗଲା ।

ଓଲେଇ ଏକାଥରକେ ପାନକୁ ଗିଳିପକାଏ । ସେହିପରି ଅନୁଷ୍ଠାନର ଦାୟିତ୍ୱ କୌଣସି ପଇସା ଖିଆ ହାତରେ ପ ଡ଼ିଲେ ସେ ତାକୁ ନାଶ କରିଦିଏ ।

୪୩୬୯.　　ଓଲେଇ ଗାଈ ,
　　　　ପଡ଼ିଶାର ବାଡ଼ ନିତି ଡ଼ିଅଁଇ ।

ଓଲେଇ ଗାଈ ,ପଡ଼ିଶାର ବାଡ଼ ଭାଙ୍ଗି ଫସଲ ଖାଏ ।ଏଥି ପାଇଁ ପଡ଼ିଶାସହିତ ପ୍ରତିଦିନ କଳି ଲାଗେ ।

୪୩୭୦.　　ଓଲିଆ ଗାଈ ,ଅଣ୍ଟା ମୋଟୁଆ ମାଈ ,
　　　　ଆଖି ରୁ ଅନ୍ତର କରିବ ନାହିଁ ।

ଓଲିଆ ଗାଈ ,ଗାଈଆଳକୁ ଠକି ବାଡ଼ଡେ଼ଇଁ ଫସଲ ନଷ୍ଟକରେ । ଅଣ୍ଟା ମୋଟୁଆ ମାଈକିନିଆ ହସ୍ତିନୀ ଜାତୀୟା ,ପରପରୁଷକୁ ରସନ୍ତି । ଏମାନଙ୍କୁ ସବୁବେଳେ ନିଘାରେ ରଖିବା ଉଚିତ ।

୪୩୭୧.　　ଓଲଟଙ୍ଗ, ଲୋଲଟଙ୍ଗ ,ବିଚିଖଡ଼ା ।

ଦୁଇ ପକ୍ଷରେ କଳିକଲିଇ ମୀମାଂସା ଲାଗି ମଧ୍ୟସ୍ଥ ହେଉଥିବା ବ୍ୟକ୍ତି ଦୁଇପକ୍ଷରୁ ପଇସା ପାଇ ଠକେ ।

୪୩୭୨.　　ଓଳିଆ ପୋଳିଆ । - ଛାଞ୍ଚୁଣି ଦ୍ୱାରା ପରିଷ୍କାର କରିବା ।

୪୩୭୩.　　*ଏକାର୍ଥରେ*- ଓଳିଆ ଓଳି /ଓଳିଆ ଓଳେଇ ।

୪୩୭୪.　　ଓଲାଦେବୀ । - ବିସୂଚିକା ଠାକୁରାଣୀ ।

ପୂର୍ବେ ଲୋକଙ୍କ ବିଶ୍ୱାସ ଥିଲାଯେ ବିସୂଚିକା ତଥା ହଇଜା ରୋଗ,ବସନ୍ତ ଆଦି ଗୋଟିଏ ଗୋଟିଏ ଦେବୀ । ଦେବୀ କୁପିତା ହେଲେ ଏହି ରୋଗମାନ ହୁଏ । ଏହା ଏକ ଅନ୍ଧବିଶ୍ୱାସ ।

୪୩୭୫.　　ଓଲେଇ ଦୁଆର କୁ ଭିକାରୀ ଗଲା ,
　　　　ଚାଉଳ ଧୁଆ ପାଣି ଚକୁଳି କଲା ।

ଓଲେଇର ଅତିଲୋଭୀ । ଚାଉଳ ଧୁଆ ପାଣି ଛଡ଼ା କିଛି ଫୋପାଡ଼େ ନାହିଁ । ଭିକାରୀ ନିର୍ଲ୍ଲଜ । ସେ ଦେଖିବ୍ରୁ ବି ଆହାର ସଂଗ୍ରହ କରେ । ଓଲେଇର ଓଲିଆ ପଣ ଓ ଭିକାରୀର ନିଲଠାପଣ ପ୍ରତି ।

୪୩୭୬. ଓଲେଇ ଚୋରଣୀ ହାଣ୍ଡିରେ ଖାଏ ,
ଗୋଡ଼ରେ ପଡ଼ିଲେ ଗାଧୋଇ ଯାଏ ।

ଓଲେଇର ଓଲେଇ ପଣପ୍ରତି । ଓଲେଇ ହାଣ୍ଡିରେ ଖାଇଲେ ବି ଧୋଇ ଧାଇ ହୋଇପଡ଼େ, ଯେପରି ହାଣ୍ଡିରୁ ଖାଇବାର କୌଣସି ଚିହ୍ନ ନ ରହିବ ।

୪୩୭୭. ଓଲେଇ ( ଓଲମୀ) ନାନୀ,
ବିରାଡ଼ି କାମୁଡ଼େ (ମୂଷା କାଟିନେଲା )ପଣତ କାନି ।

ଏତେ ଓଲେଇ ଯେ ତାର ପଣତକାନି ବିରାଡ଼ି ମୂଷା କାଟିନେଲେ ଜାଣିପାରେ ନାହିଁ ।

୪୩୭୮. ଓଲୁଅ ଖତ ସାରୁର ଛାଇ (=ପାଉଁଶ),
ଏହି ରୂପେ କୃଷି କରହେ ଭାଇ ।

ଓଲୁଅ ଗଛମୂଳରେ ଖତ ଓ ସାରୁଗଛ ମୂଳରେ ପାଉଁଶ ଦେଲେ ଭଲ ଫଳମିଳେ ।

୪୩୭୯. ଓଳିଆପଡ଼େ ପିଣ୍ଡା ତଳକୁ ,
ଝିଅ ଜନମ ପର ଘରକୁ ।

୪୩୮୦. ଓଟ ଚଢ଼ିଲେ ବି କୁକୁର କାମୁଡ଼େ ।

ହଜାରେ ଉପାୟ କଲେ ମଧ୍ୟ ଯାହା ହେବାର ଥିବ ତାହା ହେବହି ହେବ ।

୪୩୮୧. ଓଟ ବୋହେ, ଗଧ ମରେ ।

ଅନୁଚିତ ସାହସ କରିବା ମରଣକୁ ଡ଼ାକି ଆଣିବା ସଙ୍ଗେ ସମାନ ।

୪୩୮୨. ଓଟ ବୁଢ଼ାହେଲେ ବି ମୁତି ଜାଣେନି ।

ଝିଆଣା ହେଲେ ମଧ୍ୟ ଯାହାର ଅକଲ /ବୁଦ୍ଧି ନଥାଏ ।

୪୩୮୩. ଓଛ (ନୀଚ) ଘର ଖାନା -ଜନମ ଜଦନମ ପସ୍ତାନା ।

ନୀଚ ଲୋକଠାରେ ଅନୁଗୃହୀତ ହେବା ଅନୁଚିତ ।

୪୩୮୪. ଓପରି ଲାଭରେ ନ ପୁରେ ପେଟ,
ଯେଉଁ ନିଅଣ୍ଟକୁ ସେଇ ନିଅଣ୍ଟ ।

ଲାଞ୍ଚ ନେଇ କେହି ଚଳିପାରେ ନାହିଁ ,ଉପୁରି ପଇସା ଭୂତଖାଏ ।

୪୩୮୫. ଓଡ଼ିଶାରେ ଭଣ୍ଡେ ଜୀଅନ୍ତି ,
ସନ୍ତରା ବଣରେ ଧଣ୍ଡେ ଜୀଅନ୍ତି ।

ଓଡ଼ିଶାରେ ଶଠ ,ଭଣ୍ଡ ରାଜତ୍ୱ କରନ୍ତି କାରଣ ଏଠାରେ ସାପ ଓ ହିଂସ୍ର ଯନ୍ତୁମାନେ ରହନ୍ତି ।

୪୩୮୬. ଓରଉଣ୍ଡି ବସିଥା ,ବେଳଦେଖି ହଗିଯା ।

ନିୟମିତ ଝାଡ଼ାଯିବା ସ୍ୱାସ୍ଥ୍ୟର ଅନୁକୂଳ ।

୪୩୮୭. ଓଳିକି (=ନମସ୍କାର) ,
ନା ଭାତ ନାହିଁ ଆରଓଳିକି (=ବେଳାକୁ) ।

ବ୍ରାହ୍ମଣମାନେ ମାନ୍ୟ । ମାତ୍ର ଦରିଦ୍ର ହୋଇଥିବାରୁ ଅବହେଳାର ପାତ୍ର ହୋଇଥାନ୍ତି ।

୪୩୮୮. ଓଷ୍ଠ ପତର ଫର ଫର ,
ଟିକିଏ କଥାରେ ଗର ଗର (ଥର ଥର ) ।

ସ୍ତ୍ରୀର ଅକାରଣ କ୍ରୋଧ ପ୍ରତି ।

୪୩୮୯. ଓରଉଣ୍ଡି(= ସୁବିଧା ଦେଖି) ଦେ ଚଡୁ (= ଡ଼ିଆଁ ମାରିବା) ।

ଏକା ଡ଼ିଆଁକେ ନଟ ଛିଡୁ (= ଅଡୁ ଆ ଛିଡୁ) ।

୪୩୯୦. ଓରଉଣ୍ଡି ମାରିବ ହାତ,
ରକ୍ଷିବେ ମାରିବେ ଜଗନ୍ନାଥ ।

ଚୋରଙ୍କ ଅନୁଚିନ୍ତା । ଚୋର ମଧ ନିଜର ବୃତ୍ତିର ସଫଳତା ପାଇଁ ଈଶ୍ୱରଙ୍କୁ ପ୍ରାର୍ଥନା କରେ ।

୪୩୯୧. ଓଳିଆ ମୁଣ୍ଡି ଫିଟିଛି ,
କେତେ ପିଲା ଛୁଆ ହେବେ ।

ଓଳିଆର ମୁଣ୍ଡି ଫିଟିଲେ ଧାନ/ ଶସ୍ୟ ଗଳଗଳହୋଇ ଗଳିପଡ଼େ । ସେହିପରି ପଲାପିଲି ହେଉନଥିବା ସ୍ତ୍ରୀର ଥରେ ସନ୍ତାନ ହେବା ଆରମ୍ଭହେଲେ ତାପରେ ଗୁଡ଼ାଏ ସନ୍ତାନ ଜନ୍ମହୁଅନ୍ତି ।

୪୩୯୨. ଓଠ ଚାଟି ଖାଇବା ।

୪୩୯୩. *ଏକାର୍ଥରେ* -ହାତ ଚାଟି ଖାଇବା । - ସ୍ୱାଦିଷ୍ଟ ଖାଦ୍ୟ ଖାଇବା ।

୪୩୯୪. ଓଠ ଫରକିବା (ଫଡ଼କିବା) । - କ୍ରୋଧରେ ଓଠ କମ୍ପିବା ।

୪୩୯୫. ଓଠରେ ହସ । - ସ୍ମିତ ହାସ୍ୟ ।

୪୩୯୬. **ଓଖଲା ଓଖଲୀରେ (=ହେମଦସ୍ତାରେ) ମଥାଦେବା ।**

ଜାଣିଶୁଣି ବିପଦ୍ ବରଣ କରିଆଣିବା ।

୪୩୯୭. **ଓଛ ପଣ ଦେଖାଇବା** । - ନୀଚ ତା ପ୍ରକାଶ କରିବା ।

୪୩୯୮. ଓଛ ଗର୍ଭା ।- ଯେଉଁ ସ୍ତ୍ରୀର ସନ୍ତାନ ଜନ୍ମ ହେବାମାତ୍ରେ ମରିଯାଆନ୍ତି ।

୪୩୯୯. ଓଛ ନଜରରେ ଦେଖିବା । - ହୀନ ଦୃଷ୍ଟିରେ ହେୟଜ୍ଞାନ କରିବା ।

୪୪୦୦. ଓଛ ପ୍ରୀତି । - ନୀଚ ସହିତ ବନ୍ଧୁତା ।

୪୪୦୧. ଓଶ୍ (=ଶିଶିର) କା ମୋତି । - ଯେପରି ଏ ସଂସାର ଶିଶିର ବିନ୍ଦୁ ପରି କ୍ଷଣସ୍ଥାୟୀ ।

୪୪୦୨. ଓଶ୍ (=ଶିଶିର) ଚାଟିଲେ ଶୋଷ ମରେନାହିଁ ।

୪୪୦୩. ଓଠରୁ ବାହାରି କୋଠା ଚଢିବା ।

କଥା ତୁଣ୍ଡରୁ ଥରେ ବାହାରିଗଲେ ତାହା ଗୁପ୍ତ ନରହି ଚାରିଆଡ଼େ ବ୍ୟାପିଯାଏ ।

୪୪୦୪. ଓଳତୀ (=ଓଳିତଳ/ଚାଳରପ୍ରାନ୍ତ) ତଳର ଭୂତ ।

ପାଖପଡ଼ିଶା ଲୋକ ଯାହାପାଖରେ ଘରର ଭେଦ ଅଛପାନାହିଁ କିମ୍ବା ରହିପାରିବ ନାହିଁ ,ସେପରି ପଡ଼ୋଶି ଦୁଃଷ୍ଟହେଲେ ଏହି ଉକ୍ତିଟି ପ୍ରଯୁକ୍ତ ହୁଏ ।

୪୪୦୫. ଓଲଟି ପଛି ପଢେଇବା । - ଓଲଟା କଥା/ପାଠ, କହିବା/ପଢାଇବା ।

୪୪୦୬. ଓଲଟା ମାଳା ଗଡ଼େଇବା ।

ଅନ୍ୟର ମରଣ ପାଇଁ ଜପକରିବା ବା ଅନିଷ୍ଟ କରିବା ଉପାୟ ପାଞ୍ଚିବା ।

୪୪୦୭. ଓଲଟି ଚୋର କଟୁଆଳକୁ ଧମକ ।

ଆପଣା ଅପରାଧ ସ୍ୱୀକାର ନକରି କଟୁଆଳ ଉପରେ ଗର୍ଜନ କରି ଦାଉ ସାଧିବା ,ଅର୍ଥାତ୍ ଓଲଟା ତାକୁ (କଟୁଆଳକୁ )ଦୋଷୀ ସାବ୍ୟସ୍ତ କରାଇବା ।

୪୪୦୮. ଓଟ ଗଳାରେ ବିଲେଇ । - ଅନୁଚିତ ,ଅନୁପଯୁକ୍ତ ବା ବେଯୋଡ଼ ସମ୍ବନ୍ଧ ବା ବିବାହ ।

୪୪୦୯. ଓଟଘୋଡ଼ା ଭାସିଯାଏ ,ଗଧ କହେ କେତେ ପାଣି ।

ଯଦି କୌଣସି କାର୍ଯ୍ୟକୁ ଶକ୍ତଶାଳୀ ଲୋକ କରିପାରେ ନାହିଁ ଅଥଚ କେହି ଦୁର୍ବଳ ଲୋକ ତାକୁ କରିବା ପାଇଁ ଚହିଁଲେ ତା' ପ୍ରତି କଟାକ୍ଷ ।

୪୪୧୦. ଓଟ ବିଲେଇକୁ ନେଲା ବୋଲି ,ଆଜ୍ଞା ଆଜ୍ଞା କହିବା ।

**ସମ୍ପୂର୍ଣ୍ଣ ପଦ** - କହେ ଧୋବା ଶୁଣରେ ଧୋବଣୀ ,
ଏଇ ଗାଁରେ ରହିବା ।
ଓଟ ବିଲେଇକୁ ନେଲା ବୋଲି
ଆଜ୍ଞା ଆଜ୍ଞା କହିବ । ।

କେହି ବଡ଼ ବା କ୍ଷମତାପନ୍ନ ଲୋକର କୌଣସି ଅସମ୍ଭବ କଥାକୁ ଅନ୍ୟ ଜଣେ ହଁ ହଁ କହି ଅନୁମୋଦନ କଲେ ସେ କ୍ଷେତ୍ରରେ ଏହା ପ୍ରଯୁକ୍ତ । ଯେପରି କୁହାଯାଏ - 'ହ ରିଆ ଭାଇରେ , ହଇ ହଇ' ।

୪୪୧୧ .ଓଟ ବରକୁ ଗଧ ପୁରୋହିତ ।

ଜଣେ ମୂର୍ଖ ବା ନୀଚଲୋକ ଅନ୍ୟଜଣେ ମୂର୍ଖ ବା ନୀଚ ଲୋକକୁ ପ୍ରଶଂସା କଲେ ଏହି ଉକ୍ତିଟି ପ୍ରଯୁକ୍ତ ହୁଏ ।

୪୪୧୨. ଓଟ ଯେ ପର୍ଯ୍ୟନ୍ତ ପାହାଡ଼ ତଳକୁ ନଯାଇଛି ,
ସେପର୍ଯ୍ୟନ୍ତ ସେ ଜାଣେ ଯେ ତା ଠାରୁ ଉଞ୍ଚା ଆଉ କେହି ନାହିଁ ।

କୌଣସି ଅହଂକାରୀ ବ୍ୟକ୍ତି ଯେତେବେଳଯାଏଁ ଆପଣାଠାରୁ ଶ୍ରେଷ୍ଠବ୍ୟକ୍ତିକୁ ନ ଭେଟିଲା ସେ ପର୍ଯ୍ୟନ୍ତ ତାର ଅହଂକାର ଦୂର ହୁଏ ନାହିଁ ।

୪୪୧୩. ଓଡ଼ିଶାଟା ଆମର ମତ୍ସ୍ୟ (ମଛ) ଦେଶ ।

ଓଡ଼ିଆ ବ୍ରାହ୍ମଣମାନେ ମାଛ ଖାଆନ୍ତି କିନ୍ତୁ ପଶ୍ଚିମା ଓ ଦକ୍ଷିଣୀ ବ୍ରାହ୍ମଣମାନେ ମାଛ ଖାଆନ୍ତି ନାହିଁ। ତେଣୁ ଓଡ଼ିଆ ବ୍ରାହ୍ମଣମାନେ ନିଜର ମାଛଖିଆ ପ୍ରବୃତ୍ତି ଓ ଅଭ୍ୟାସକୁ କାଏମ ରଖିବା ପାଇଁ ଏହି ପୌରାଣିକ ଉକ୍ତିଟି କହିଥାଆନ୍ତି -'ଓଡ଼ିଶା ମତ୍ସ୍ୟ ଦେଶ ଥିବାରୁ ଏଠାରେ ସମସ୍ତେ ମାଛ ଖାଆନ୍ତି ' ।

୪୪୧୪. ଓଡ଼ିଶା ମଛୁଆ ଦେଶ ।

ହିନ୍ଦୀ ଭାଷାଭାଷୀ ଅଞ୍ଚଳରେ ଏହି ବୋଲିଟି ପ୍ରବାଦ ଭାବରେ ପ୍ରଚଳିତ ।

## ଔ-ଔ-ଔ

୪୪୧୫. ଔକାତ (=ପ୍ରକୃତ ସାମର୍ଥ୍ୟ) ହେବା ।

୪୪୧୬. ଔକାତ ଦେଖାଇବା ।

ଅସଲ ରୂପ ଦେଖାଇବା । ଯେପରି ଆମ୍ବ ବଡ଼ିମା ହାଙ୍କିବା ଗଲାଣି ଏଣିକି ଔକାତ ଦେଖାଅ ।

୪୪୧୭. ଔଘଟ ଘାଟ ।

ବିକଟ ସ୍ଥାନ । ଯେପରି ବେଳେବେଳେ ସାଧାରଣ ଭୁଲ ପାଇଁ ଲୋକ ଔଘଟ ଘାଟରେ ପହଞ୍ଚିଥାଏ ।

୪୪୧୮. ଔଚଟରେ ବଡ଼ିବା

ଆପଦ ବା ସଙ୍କଟରେ ପଡ଼ିବା ଯେପରି ବିଲେଇ ଔଚଟରେ ପଡ଼ିଲେ କାମୁଡ଼େ ।

୪୪୧୯. ଔଲ ଫୌଲ କହିବା (ବକିବା) ।

୪୪୨୦. *ଏକାର୍ଥରେ* -ଖଣ୍ଡ ଶଣ୍ଡ କହିବା (ବକିବା) ଆଗେ ବାଗେ କଥା କହିବା ।

୪୪୨୧. ଔଷଧାର୍ଥେ ସୁରାପାନ ।

ଔଷଧାକାରରେ ବ୍ୟବହାରକଲେ ସୁରାପାନ ଦୋଷଣୀୟ ନୁହେଁ ।

୪୪୨୨. ଔଷଧାର୍ଥେ ସୁରାପାନ ।
ମାତ୍ରା ରହିଲେ ମାତ୍ରାଜ୍ଞାନ ।
ମାତ୍ରା ନ ବଢିଲେ ରହେ ମାନ ।

୪୪୨୩. ଔଷଧ ଫିଙ୍ଗି ,ଖଲ (= ଆୟୁର୍ବେଦ ଔଷଧ ବାଟିବା ପଥୁରି) କାମୁଡ଼ିବା ।

୪୪୨୪. *ଏକାର୍ଥରେ*- ରୋଗ ଜ୍ୱାଳାରେ ତାଟିଆ କାମୁଡ଼ା ।

୪୪୨୫. *- ଏଢନ-* ଚୋରକୁ ମାନ କରି ଖପରାରେ ଖାଇବା ।

୪୪୨୬. *-ଏଢନ -* ଔଷଧ ନପିଇ ରାଗରେ ତାଟିଆ କାମୁଡ଼ିବା ।

ଜଣକ ଉପରେ ରାଗର କାରଣଥିଲେ ମଧ୍ୟ ତା ଉପରେ ରାଗି ନପାରି ଅନ୍ୟ ଉପରେ ରାଗିବା ।

୪୪୨୭. ଔଷଧ ନ ଖାଏ ,ତାର ନିକଟ ମରଣ ।

୪୪୨୮. ଔଷଧ ଯେହ୍ନେ ନ ରୁଚଇ ।
ବ୍ୟାଧି ସଂଯୋଗୀ ବଳେ ଖାଇ ।। - ଜଗନ୍ନାଥ ଭାଗବତ ।

୪୪୨୯. ଔଷଧ ପିଇସାରି ଡାଟିଆ ଉଘଡ଼ାଇ ପକାନ୍ତି ।-ଅର୍ଥହୀନ ଲୌକିକ ସଂସ୍କାର ।

୪୪୩୦. ଔଷଧ ଗଙ୍ଗାଜଳ ,ବୈଦ୍ୟ ନାରାୟଣ ହରି ।

ଔଷଧକୁ ଗଙ୍ଗାଜଳ ପରି ପବିତ୍ର ଓ ଚିକିତ୍ସକ ବା ବୈଦ୍ୟଙ୍କୁ ସ୍ୱୟଂ ତ୍ରାଣକର୍ତ୍ତା ଭଗବାନ ବୋଲି ମାନେକରିବା ଉଚିତ ।

୪୪୩୧. ଔଷଧରେ କି ଆଶ୍ୱାସନା ମିଳେ ।

୪୪୩୨. ଔଷଧ ଧରିବା -ଔଷଧ କାଟୁକଲେ ରୋଗ ଉପଶମ ହୁଏ । ସେହିପରି ବୋଲମାନୁ ନଥିବା ଲୋକକୁ ବୁଝେଇ ସୁଝେଇ ବୋଲମନାଇଲେ ଏହି ଉକ୍ତିଟି ପ୍ରୟୋଗ ହୁଏ ।

## ପ୍ରହେଳିକା(ନାଁ ଦିଆ)

| | ପ୍ରଶ୍ନ | ଉତ୍ତର |
|---|---|---|
| ୪୪୩୩. | ଇ ଘର ବୁଢୀ ସିଘର ଯାଉଛି<br>ଚଣା ଭାତୁ ଭାତୁ ଚୋବାଉଛି ।...... | ଘୋରଣା |
| ୪୪୩୪. | ଇଙ୍କରକୁ ଝିଙ୍କର ,ଶଙ୍ଖ ଭିତରେ ସମୁଦର । ... | ନଡ଼ିଆ |
| ୪୪୩୫. | ଇଠିରାରେ ତୁରୁ ତୁରୁ ,ମୁଇଁ ରତନପୁର । ... | ପାଦ ଚିହ୍ନ |
| ୪୪୩୬. | ଇତି ତୁରୁ ତୁରୁ ନଥାଏ ଦୂରୁ<br>କାନ୍ଦେ ଲୁଟୁ ପୁଟ୍ ପଇସା ସୁରୁ । | କୁମ୍ଭାର ଚକ |
| ୪୪୩୭. | ଏଇଠି ଅଛି ,ଏଇଠି ନାହିଁ । ... | ଖରା,ଛାଇ |
| ୪୪୩୮. | ଇଙ୍ଗି,ବିଙ୍ଗି,ଗୋଟିଏ ଗାଈର ତିନିଟା ଶିଙ୍ଗି ।... | ଚୁଲି |
| ୪୪୩୯. | ଇଲୋ ବୋପା,ରସ ଗଳିଯାଇ ରହିଲା ଚୋପା<br>ଠାକୁର ତୁହି ,ଗୋସାଇଁ ତୁହି,<br>ତୁ ଥିଲେ କି ଯାଆନ୍ତି ମୁହିଁ ।... | ... ସାପ କାତି ଓ ବେଙ୍ଗ |
| ୪୪୪୦ | ଇଟିମ୍ ଟିମ୍ ,କାହିଁରେ ନଫୁଟେ ଡ଼ିମ୍(=ଡ଼ିମ୍ବ)। ... | ଖୋଷା |

୪୪୪୧. ଇଆଡ଼େ ପର୍ବତ ସେ ଆଡ଼େ ପର୍ବତ
କେନ୍ ବାୟୁ ନ ଧାନ ବୁନିଛେ
ଗଛର ଯାକର କଁଟା । ଜିଭ

୪୪୪୨. ଇଆଡ଼େ ପର୍ବତ ସିଆଡ଼େ ପର୍ବତ
କେନ୍ ଶୁଆଶାରୀ ଡ଼ିମ୍ ପାରିଛେ
ସୁର ଯୋ ଏଡ଼େ ପୁଟ୍ । ... ଗୋସ୍ତନର ରନ୍ଧ୍ର

୪୪୪୩. ଇଆଡ଼େ ପର୍ବତ ସିଆଡ଼େ ପର୍ବତ
ମଝାର ଗଛର ଛାଲି
ତୋତେ ଛାଡ଼ି ତୋର ଗୁରୁକେ ପଚାର
କେନ୍ ଗଛରେ ନାଇଁନ ଛାଲି । ଜିଭ

୪୪୪୪. ଇଆଡ଼େ ସିଆଡ଼େ ଡ଼ରି ନେଲି
ଫୁଗଲରେ ପସାଇ ନେଲି
ଖୁକ୍ ଖୁଡ଼ାଇ ଦେଲି ବାହାର କଲି ବଡ଼ା ସୁଖ୍
ପୁଛି ଦେଲି ପକାଇ ଦେଲି । କୁକୁଡ଼ା ପର

୪୪୪୫. ଇନୁ ସେନୁ ଲମିଛେ ନାକ୍ କେଛି ଦେଲେ
ମୁଲ (ମୁବ୍) କରି ହସିଛେ । ବିଜୁଳିବତୀ

୪୪୪୬. ଇଡ଼ିଗଲା ପାଣି ଯାଏ ତଳକୁ
କେଉଁ ପାଣି ଯାଇଥାଏ ଚଳକୁ । ...ଜଳୀୟ ବାଷ୍ପ ଓ ହସ୍ତୀଶୁଣ୍ଢର ଜଳ

୪୪୪୭. ଇନ୍ଦ୍ରଧନୁ କେଉଁ ଦିଗରେ ପଡ଼େ
କିଏ ସେଇ ରଙ୍ଗ ଆକାଶେ ଗଢେ ।... ସୂର୍ଯ୍ୟଙ୍କ ବିପରୀତ ଦିଗରେ ସୂର୍ଯ୍ୟାଲୋକଓ ବର୍ଷା

୪୪୪୮. ଇନ୍ଦ୍ର ସମ୍ପଦକୁ ମଣନ୍ତି ତୁଛ
କେଉଁମାନେ ସଦା ସର୍ବଦା ପୁଛ (=ପଚାରିବା)। ... ... ସାଧୁମାନେ

୪୪୪୯. ଈଶ ହୋଇ ଲଙ୍ଗଳରେ କେ ରହେ
ପଥର ଭିତରେ ସେ ଲୁଚିଥାଏ । ଶିବ ଲିଙ୍ଗ

୪୪୫୦. ଉଚ୍ଚ ପରବତ କାଳିଆ
ତା ଦେହରେ ଭଲଭଲ ଲୋକ ମେଳିଆ ।... ଆକାଶ, ଚନ୍ଦ, ସୂର୍ଯ୍ୟ ଓ ତାରା

୪୪୫୧. ଉପରେ ନାଗସାପ ପରା ଖେଳୁଛି
ଆଲଟ ବିଛଣା ପଡ଼ିଛି ।... ହାତୀ

୪୪୫୨. ଉଟୁ ଟୁଙ୍କୁର କୁଟୁ ନାଚେ
ଚିଙ୍ଗରିଧାନ ଭୁଗେକେ ପାଚେ । ଖଜୁରୀ
୪୪୫୩. ଉଠ୍ କୁଜି ,କାଛ ଆଉଜି । ଶିଳ
୪୪୫୪. ଉଠଇ ସକାଳୁ ନୁହେଁ ବ୍ରାହ୍ମଣ
ଯୋଦ୍ଧା ନୁହେଁ ବହେ ମୁକୁଟ ଜାଣ
ଡ଼ାକଇ ଉଚ୍ଚରେ ,ଡ଼ାକୁଆ ନୁହେଁ
ଋଷି ନୁହେଁ ,ଘରେ ବନେ ବା ରହେ । କୁକୁଡ଼ା
୪୪୫୫. ଉଡ଼ିଗଲା ଚିଲ, ବୁଲିଗଲା ବିଲ
ରୂପାର ପଞ୍ଜରୀ ସୁନାର ଖିଲ । ... କୋଲପ
୪୪୫୬. ଉଡ଼େ ଫିରି ଫିରି ବସେ କପୋତ
ଯେ ନ କହିବ ତା ମା ସଉତ (=ସଉତୁଣୀ) ।... ଶାଳମଞ୍ଜି
୪୪୫୭. ଉଡ଼ିଗଲା ନିନି ପିଲା ପେଣ୍ଡେ ଦାତୁନ୍ କରେ । ନିଆଁ
୪୪୫୮. ଉତମ ତୁମୁଡ଼ିଟା ,ହାତ ଗୋଡ଼ ନାହିଁ ଧାଙ୍ଗଡ଼ିଟା । ... ମାଣ
୪୪୫୯. ଉତର ଦିଗରୁ ବହେ ପବନ
ବାପ ବାହାଦିନ ପୁଅ ଜନମ
ପୁଅ ଯେଉଁଦିନ ଜନମ ହେଲା
ମାଆ ସେଇଦିନ ଘରେ ନଥିଲା । ... ଅରଟ
୪୪୬୦. ଉପରକୁ ଦେଖୁଛି, ଗବପରା ମାରିସି । କୋଡ଼ି
୪୪୬୧. ଉପରେ ଛତା, ତଳେ ଜୋତା । ସାରୁ
୪୪୬୨. ଉପରୁ ପଡ଼ିଲା ପିଲାଟେ ,ତା ଗିଜଟା ଫୁଲଟେ । ମହୁଲ
୪୪୬୩. ଉପରେ ପଟା ତଳେ ପଟା
ମଝିରେ ବସିଛି ରଜାବେଟା । ଜିଭ
୪୪୬୪. ଉପରୁ ପଡ଼ିଲା ଯାନ ,
ତଳେ ପଡ଼ିବାରୁ ବାଇଶିଟି କାନ । ... ରାବଣ ଓ ସାରଥି
୪୪୬୫. ଉପରେ ଫାଣି ତଳେ ବୁକୁ,
ଧିପା ଦେଇଥା ଜଳା ମୁହଁକୁ ।... ଦହିଖୁଆ
୪୪୬୬. ଉପରୁ ସାହିରୁ ଆସିଲା ପୋଢ
ସେହି ପୋଢର ଗୋଟିଏ ଗୋଡ଼ । ଛତା

୪୪୬୭. ଉପର ସାହିରୁ ଆସିଲା ଲିଟି
ସବୁକୁ ନେଲା ମାରି ପିଟି । ନିଦ

୪୪୬୮. ଉପରେ ଛତା, ତଳେ ସୂତା । ... ସାରୁଗଛ

୪୪୬୯. ଉଳାଉ ଥିଲି ଖଳାମାଳ, ହଜାଇ ଦେଲି ଚିନାମାଳ
ଚିନମାଳ କେ ନିଅନ୍ତା, ଲକ୍ଷେ ଟଙ୍କା ସେ ଦିଅନ୍ତା । ...ମଲା ମଣିଷ

୪୪୭୦. ଉଟା ଶଏ କୁଟି । ପକ୍ଷୀ

୪୪୭୧. ବୁଡ଼ା ଶଏ କୁଟି । ..ମାଛ , ଜଳଚର

୪୪୭୨. ଚଳା ଶଏ କୁଟି । ...ମଣିଷ ଓ ଜୀବଯନ୍ତୁ

୪୪୭୩. ଅଚଳା ଶଏ କୁଟି । ... .. ଉଦ୍ଭିଦ ଓ ଗୁଳ୍ମ

୪୪୭୪. ଉପର ରାଏଜୁ ଆସିଲା ଘୁଡ଼ା
ଧାନ୍ ମସ୍ ମସ୍ ଖାଏ
ଶୁଏନ୍‌କି ବସେନି
ଧାଁରାରୀ (=କ୍ରମାଗତ ଋଣ) ନହେ ଥାଏ । ଢେଙ୍କି

୪୪୭୫. ଉପରଟା ସମତୁଲ
ଭାଙ୍ଗି ଦେଲେ କଇଁଫୁଲ । ନଡ଼ିଆ

୪୪୭୬. ଉଲଟା ପଖିଆ ଖୋଳେ ମାଟି
ତିନିଟା ଗଣ୍ଡିକୁ ଛଅଟା ଆଖି । ...ହଳ , ଦୁଇବଳଦ ଓ ହଳୁଆ

୪୪୭୭. ଉତ୍ତପ୍ତ ବେଳରେ ନାଲି ଟହ ଟହ କେହି ନପାରନ୍ତି ଧରି
ନିର୍ବାପିତ ହେଲେ ତାର ଅଙ୍ଗ କଳା , କହହେ ବୁଦ୍ଧି ବିଚାରି । ...ଅଙ୍ଗାର

୪୪୭୮. ଉତ୍ତରା ପବନ ବହେ ଘନ ଘନ
ବାପ ନଥାଇକି ପୁଅ ଜନମ
ପୁଅ ଯେତେବେଳେ ଜନମ ହେଲା
ମା' ସେତେବେଳେ ଘରେ ନଥିଲା ।... ... ... ମୟୂର ଛୁଆ

୪୪୭୯. ଉପର କଠିନ ଭିତର ପଙ୍କ
ବୁଢା ହେଲେ ସେହୁ ବଡ଼ ମହକ
ପଣା ଖାଇଦେଲେ ଆସଇ ଭୋକ
ପତ୍ରେ ଲିଙ୍ଗରାଜ ସେ ଅଭିଷେକ । ...ବେଲ

୪୪୮୦. ଉଚ୍ଚସ୍ଥାନେ ଗୋଡ଼ ଟେକି କରଇ ସେ ଏକ
ଆଘାତ କରନ୍ତି ତାରେ ଜାତି ଭାଇଯାକ
ଆଦର କରନ୍ତି ଧନୀ, ପୁଲିସ ତାହାକୁ
ଘରଜଗେ, ଶୁଙ୍ଘି ଧରେ ଅପ୍ରାଧୀମାନଙ୍କୁ । ... କୁକୁର

୪୪୮୧. ଋଷି ନୁହେଁ ତାର ଶିରରେ ଜଟ
ବସି ଧ୍ୟାନକରେ ଜଳର ଘଟ
ଧ୍ୟାୟିଥାଏ ବିଷ୍ଣୁ ଅବତାରକୁ
କହ ଦେଖି ପିଲେ ତାର ନାମକୁ । ବଗ

୪୪୮୨. ଋଷି ହୋଇ ଲଭେ ବେଶ୍ୟାର ସଙ୍ଗ
ମଣିଷ ହୋଇଯେ ବହଇ ଶୃଙ୍ଗ
ତା ଆଗମେ ବୃଷ୍ଟି ଦେଶେହୋଇଲା
ବ୍ରହ୍ମ ଶାପରୁ ସେ ମୁକ୍ତ ହୋଇଲା
କିଏ ସେହି ଋଷି ,କିଏ ସେ ବେଶ୍ୟା
କି ଦେଶ ,କେ ରାଜା କହ ମଉସା । ...ଋଷ୍ୟଶୃଙ୍ଗ,ଜରତା,ଅଙ୍ଗରାଜ୍ୟ,ଲୋମପାଦ

୪୪୮୩. ଏକଇ ବୃକ୍ଷ ହଂସ ଦୁଇ । ବସନ୍ତି ପ୍ରିୟ ଭାବ ବହି ।।
ସ୍ୱଭାବେ ବେନି ଶାଖେ ଥାନ୍ତି । ଏକ ଆରେକେ ନ ଦେଖନ୍ତି ।।
ସମାନ ଶକ୍ତି ସେ ବହନ୍ତି । ବନ୍ଧ ବିମୁକ୍ତ ବେନି ଗତି ।।
ସେ ବୃକ୍ଷେ ଯେତେ ଫଳଫଳେ । ଏକ ଭୁଞ୍ଜଇ ତାହା ବଳେ ।।
ଏକ ବଞ୍ଚଇ ଉପବାସେ । ନିର୍ଲେପ ନରଞ୍ଜନ ଆସେ ।। ..ଜୀବାତ୍ମା ଓ ପରମାତ୍ମା

୪୪୮୪. ଏକ ଘର ମଧ୍ୟେ ନଅଟି ଦ୍ୱାର
ଦବା ନବା କାର୍ଯ୍ୟ କରେ ସତ୍ୱର ,
ଦେଖେ, ଶୁଣେ ପୁଣି ବିଶ୍ରାମ କରେ
କହିବ ସେ ଘର କିଏ ,ବିଚାରେ । ... ଶରୀର ମଧରେ ଥିବା
ଆଖି-୨+ନାକପୁଡ଼ା-୨+କର୍ଣ୍ଣ-୨+ମୁଖ-୧+ଲିଙ୍ଗ ୧+ଗୁହ୍ୟ ୧ =୯ଦ୍ୱାର

୪୪୮୫. ଏ କଥା କହିବି କାହାକୁ
ଛୁଆଙ୍କ ପାଇଁକି ଆହାର ଖଞ୍ଜିଲି
ଆହାର ଗିଳିଲା ଛୁଆଙ୍କୁ । ଅର୍ଥ ଲୋଭ

୪୪୮୬. ଏଇଠି ଅଛି., ଏଇଠି ନାହିଁ । ... ... ...ଖରା ,ଛାଇ,

୪୪୮୭. ଏଇଠି ଅଛି ,ଗାଁ ଚାରିପାଖେ ବୁଲି ଆସୁଛି । ଆଖି

୪୪୮୮. ଏଇଠି ଅଛି ଏଇଠି ନାହିଁ,
ଶହେ ଟଙ୍କା ଦେଲେ ମିଳିବ ନାହିଁ । ... ବିଜୁଳି

୪୪୮୯. ଏକ ସହସ୍ର ବତା,ତିନି ସହସ୍ର କତା, ତିନି ସହସ୍ର ଗଣ୍ଠି
ଏ ନାଁ ଟି ଯେ କହିବ,ତାକୁ ଦେବି ସୁନା କଣ୍ଠି । ଚାଳ

୪୪୯୦. ଏ କଥା କହିବି କାହାକୁ
ଛୁଆ ପାଇଁ ଯେଉଁ ଆହାର ଆଣିଲି
ଆହାର ଗିଳିଲା ଛୁଆକୁ ।.. ମଲାପରି ଜଣାଯାଉଥିବା ଗୋଟିଏ
ସାପକୁ ଚିଲ ପିଲାମାନଙ୍କ ଆହାର ନିମନ୍ତେ ଆଣିଲା ।
ଚିଲଛୁଆ ଖୁମ୍ପିବା ମାତ୍ରେ ତାହା ଉଠି ପିଲାମାନଙ୍କୁ ଗିଳିଲା

୪୪୯୧. ଏକଇ ଗୋଡ଼ ଏକଇ ପାଟି
ମୁଣ୍ଡ ନାହିଁ ତାର ହାଉଁ ହାଉଁ ପାଟି
ଦିଶଇକଳା,ମଣିଷ ଦେଖିଲେ କହଇ ପଳା ।... ତେଲଘଡ଼ି ଓ ପଳା

୪୪୯୨. ଏ କଡ଼େ ପର୍ବତ ସେ କଡ଼େ ପରବତ
ମଝିରେ ଗିରିଧା ବସା
ଭାଇ କିଏ ସେ କହିବରେ
ବାଘକୁ ଜଗିଛି ମୂଷା । .. ଶଗଡ଼ ଚକ ,ଅଖ,ଓ

ଅନିକିଳି

୪୪୯୩. ଏକୋଇଶ ହାତ ଉଚ୍ଚା କନିଆଁକୁ
ସାତ ହାତ ଉଚ୍ଚା ବର
ଲଙ୍ଗଳ ମୁହଁରେ ଟିକିଏ ଠୁକିଲେ
ତେବେ ଯାଇ ବାହାଘର । ...ରେବତୀ ଓ ବଳରାମ

୪୪୯୪. ଏଡ଼ିକି ଟିକିଏ ଗାତ
ତହିଁକି ନପାଏ ହାତ । ... ...କହୁଣୀ

୪୪୯୫. ଏମିତି ଦାତା ଅଟେ ସେହି
ସକାଳୁ ନେଲେ ସଞ୍ଜେ ଦେଇ । ...ଧୋବାଲୁଗା ନେଇ ସଫାକରି ଦେବା

୪୪୯୬. ଏକ ଆଖିଆ ସେ ତେଲୁଣି ପୋକ
ମାଲ, ମଣିଷ ସେ କରଇ ଭକ୍ଷ । ... ...ରେଳଗାଡ଼ି
୪୪୯୭. ଏକ ବୃକ୍ଷ ତାର ମୁନିର ନାମ.
ଅର୍ଦ୍ଧ ଚନ୍ଦ୍ର ସମ ଫୁଟେ କୁସୁମ
ଘନ କାଳ ଶେଷେ ହୁଅଇ ଫୁଲ
କେଉଁ ବୃକ୍ଷ ଏହା ବିଚାରି ବୋଲ । ...ଅଗସ୍ତି
୪୪୯୮. ଏ କରେ ବିନ୍ଧିଲି
ସେ କରେ ବିନ୍ଧିଲି ,ଚାରିକରେ ବିନ୍ଧିଲି । .....ଦନା(=ପତ୍ରଦୁନା)
୪୪୯୯. ଏକ ସ୍ତ୍ରୀ ସ୍ୱାମୀ ଅପମାନେ
ପଡ଼ନ୍ତେ ଜଳେ ଦେଖି ଅପର ଜନେ
ସ୍ୱାମୀ ନଛୁଇଁବା ସ୍ଥାନକୁ ଧରି
ଆଣନ୍ତେ ଜୀବ ପାଇଲା ସୁନ୍ଦରୀ । ...ସ୍ୱାମୀ ସ୍ତ୍ରୀର ବୁଢ଼ାଆଙ୍ଗୁଠି ଧରି ଆଣିଲା
୪୫୦୦. ଏ ଖୁମ୍ବ ସେ ଖୁମ୍ବ ବାଜେ ଗୁମ୍ ଗୁମ୍
ଶହେ ଚୋଟରେ ନଛିଡ଼ଇ ଚମ ।.. ଛାଇ
୪୫୦୧. ଏ ଖୁମ୍ବ ସେ ଖୁମ୍ବ ବାଜେ ଗୁମ୍ ଗୁମ୍
ମଝି ଖୁମ୍ବ ହେଲା ପାନିଆ
ସହସ୍ର ମଣିଷ ଜଗି ବସିଥିଲେ
କେଉଁବାଟେ ଗଲା କନିଆ । ...ଜୀବନ
୪୫୦୨. ଏ ଘର ମାଉସୀ ସେ ଘର ଗଲା
ଚଣା ଭାତୁ ଭାତୁ ଚୋବାଉ ଥିଲା । ...ଘୋରଣା
୪୫୦୩. ଏଇଠି (ଏଠାରେ) ଅଛି,
ସାତ କିଆବାଡ଼ ଡେ଼ଇଁ ପଡୁଛି (ଆସୁଛି) ।... ପବନ
୪୫୦୪. ଏଠାରେ ଅଛି, କଟକରେ ଯାଇ ପାଣି ପିଉଛି । ବିଜୁଳି
୪୫୦୫. ଏଠାରୁ ମାଇଲି କାଣ୍ଡେ ,ପଡ଼ିଲା ଯାଜପୁର ଦାଣ୍ଡେ
ଯାଜପୁର ଲୋକେ ସାକ୍ଷୀ,କାହାର ବିଶାଶହେ ଆଖି । ... ଚାଲୁଣି
୪୫୦୬. ଏଡ଼େ ବଡ଼ ଖଟ ,କେହି ଶୋଉ ନାହାନ୍ତି
ଏଡ଼େ ବଡ଼ ଭେଣ୍ଡା ପଡ଼ିଛି (ମରିଛି)
କେହି କାନ୍ଦୁ ନାହାନ୍ତି । ...ମଲାବାଘ

୪୫୦୬. ଏଡ଼େ ଟିକେ ନିନୀ ପିଲା,କିନ୍ଦିରି କିନ୍ଦିରି ଲୁଗା ଗିଳଇ।..ପୁତୁଗ ବା ଓକିଆ
୪୫୦୭. ଏଡ଼ିକି ଟିକେ ଚଢେଇ, ବାରନଟି ଗିଳଇ ।... ନିଆଁ
୪୫୦୮. ଏଡ଼େଟା ଟୋକି ,ବିଷ ପରା ପାଙ୍ଗୁଣୀ । ...ଲଙ୍କା ମାରିଚ
୪୫୦୯. ଏଡ଼େ ଟିକେ ତୁଲୀ (=ତୁଳି),
ଭାତଗଲା ଉଥୁଲି (=ଉଛୁଳି)। କପା
୪୫୧୦. ଏଡ଼େ ବଡ଼ ତୋଟାଟେ ,ଫୁଲ ଫୁଟିଛି ଗୋଟାଟେ ।... ସୂର୍ଯ୍ୟ
୪୫୧୧. ଏଡ଼େ ଟିକେ ମାଙ୍କଡ଼,ଭୂଇଁକୁ ମାଇଲା ଥାପଡ଼।
ବା (ଭୂଇଁକୁ ମାରେ ଚାପଡ଼) । ... ...କୋଡ଼ି(କୋଦାଳ)
୪୫୧୨. ଏଡ଼ିକି ଟିକିଏ ଟୁପୁସି,ନଟାଯାକ ଝିଙ୍କୁଛି। ... ପାନିଆ
୪୫୧୩. ଏଡ଼େ ଟିକେ ତୁଭା,ଫୁଲ ଫୁଟେ ଶୋଭା ।... ...କୁକୁଡ଼ା ଚୂଳ
୪୫୧୪. ଏଡ଼େ ଟିକେ ଲିଟି, ସବୁକୁ ଯାଏ ପିଟି । ନିଦ
୪୫୧୫. ଏଡ଼ିକିଟା ଲିଟି ଚଢେଇ ପିଠିକରି ବସେ
ବାଙ୍ଗାରାଜା ଦେଖି ଆସିଲେ ପାଣି ଭିତରେ ପଶେ। ... କଙ୍କଡ଼ା
୪୫୧୬. ଏଡ଼େ ଟିକେ ସିପାହି ପିଲା ,
ପର୍ବତ ଶିଖରେ (ଉପରେ) ଲଢାଇ କଲା। କୁରାଢୀ
୪୫୧୭. ଏଣେ ପରବତ ତେଣେ ପରବତ ମଝି ପର୍ବତ ମଞ୍ଜା
ସଂସାର ଲୋକଙ୍କୁ ପଚାରି ଦେଖ ନିଆଁରେ କି ଫଳ କଞ୍ଚା। ...କୁଆ ପଥର
୪୫୧୮. ଏଣେ ପରବତ ତେଣେ ପରବତ ମଝିରେ ମରିଚ ପଲ୍ଲୀ
ବନ୍ଧ ନଇଲାର ପାଣିକି ଯାଉଛି ମୁଣ୍ଡ ନଇଁଲାର ସ୍ତିରୀ। ...କଙ୍କଡ଼ା
୪୫୧୯. ଏଣୁ ଯାଉଥିଲେ ବାପ ପୁଅ ,ତେଣୁ ଆସୁଥିଲେ ଏକା
ବାପ ଯାହାକୁ ଜୁହାର କରେ
ପୁଅ ଗୋଡ଼ତଳେ ପକା । ... ...... ବାସୁଦେବ ଶ୍ରୀକୃଷ୍ଣ ଓ ଉଗ୍ରସେନ
୪୫୨୦. ଏଡ଼େ ଟିକେ ଟୁପୁସି ,ବାଡ଼ମୂଳେ ବସିଛି
ଯମରାଜା ଆସିବ ,ପାତାଳପୁରକୁ ପଶିବ । ...କାକର
୪୫୨୧. ଏ ନଅ ଘୁଞ୍ଚିଲେ ସେ ନଅ ଘୁଞ୍ଚେ.
ସମୁଦ୍ର ପାଣି ମହ ମହ ବାସେ। ... ...ଦହି
୪୫୨୨. ଏ ପାଖେ ମଲା ହାଡ଼ି ,ସେ ପାଖକୁ ପକା କାଢି ।... ...ସେଣା

୪୫୨୩. ଏପଟେ ପର୍ବତ ସେପଟେ ପର୍ବତ ମଝିରେ ମାଇଲି ମଞ୍ଚା
କେଉଁ ବିଧାତାଲୋ ଫନ୍ଦାକରିଛି ସବୁବେଳେ କଞ୍ଚା ।... ...ଜିଭ

୪୫୨୪. ଏ ପାଖରେ ହଡ଼ା ମଲା,
ସେ ପାରିକି ଗନ୍ଧ (ବାସନା)ଗଲା ... ...କିଆଫୁଲ,ପଣସ

୪୫୨୫. ଏପାଖେ ଡ଼ାକଇ ରାଣୀ,ସେପଟେ ଡ଼ାକଇ ରାଣୀ
କହା ଘରେ ଅଛି କାକର ପାଣି । ... ତେଲ

୪୫୨୬. ଏପଟରେ ଲଗାଇଲି ଲାଉ,ସେପଟକୁ ଡ଼ଙ୍କ ଯାଉ
ଯାକୁ ଯେ ନେଉଟାଇ ଆଣିବ,
ତାକୁ ସୁନା ଶଙ୍ଖା ଦେଉ ।... ଘାଟ, ଡ଼ଙ୍ଗା, ପବନ

୪୫୨୭. ଏପଟେ ସେପଟେ ଡ଼ାକଇ ଶୁଆ
କାହା ଘରେ ଅଛି ନିଦା ଗୁଆ । ..... .. ଧାତୁ ନିର୍ମିତ ଟଙ୍କା

୪୫୨୮. ଏମନ୍ତ ସୁନ୍ଦର ଭେଣ୍ଡିଆଟିଏ ,ହାତ ଗୋଡ଼ ନାହିଁ ଖଣ୍ଡିଆଟିଏ ...ଡ଼ଙ୍ଗା

୪୫୨୯. ଏଇଠି ଅଛି,ସାତ କିଆବାଡ଼ ଡ଼େଇଁ ବୁଲୁଛି । ... ...ପବନ

୪୫୩୦. ଏତେ ବଡ଼ ଭେଣ୍ଡା ମରିଛି,କେହି କାନ୍ଦୁ ନାହାନ୍ତି
ଏତେ ବଡ଼ ଖଟ ପଡ଼ିଛି ,କେହି ଶୋଉ ନାହାନ୍ତି
ଏତେ ମଲ୍ଲୀ ଫୁଲ ଫୁଟିଛି କେହି ତୋଳୁ ନାହାନ୍ତି ... ଚନ୍ଦ୍ର,ଆକାଶ ଓ ତାରା

୪୫୩୧.ପ୍ରଶ୍ନ- ଏ ପାଖରେ ବାଡ଼,ସେ ପଟରୁ ଉଠି
ନବ ଗୋଟି ମୁଣ୍ଡେ ଅଛି ଉଣଇଶ ନେତ୍ର
ଅଷ୍ଟାଦଶ କର୍ଣ୍ଣ ଅଟେ ତିନିଗୋଟି ପାତ୍ର
ଷଡ଼ପାଦ ,ଚଉଦ ବାହୁ ଅଛଇ ଏମନ୍ତ ।

୪୫୩୨.ଉତ୍ତର-ଏ କଠିନ ପ୍ରଶ୍ନ ଏହି କାହିଁ ରଖିଥିଲୁ
ଏତେକାଳେ ଏହା ମୋତେ ଫିଟାଇ କହିଲୁ
ହେଉ ଯେବେ ଶୁଣ ତୋର ପ୍ରଶ୍ନର ଉତ୍ତର
ଶିବ ଶିବା ରାହୁ ପୁଣି ଶ୍ରୀ କାର୍ତ୍ତିକେଶ୍ୱର
ତୋ ଭାବର ଅର୍ଥ ମୁହିଁ କରିଲି ପୂରଣ
ଅନ୍ୟ ଅର୍ଥ ଥାଇପାରେ ନୋହିଲା ସ୍ମରଣ ।

୪୫୩୩. ଏକ କାଳୀ ଗାଈ ଶୋଇଛି
ସହସ୍ର ବାଛୁରୀ ପିଉଛି । ମଥାନର ଶେଣି ଓ ରୁଅ

୪୫୩୪. ଏ ପାଖେ ମଞ୍ଜା ,ସେ ପାଖେ ମଞ୍ଜା
ମଝିରେ କର ପୁଅ ଧାନ ବୁଣୁଛି ,ସବୁବେଳେ କଞ୍ଚା । ... ଜିଭ
୪୫୩୫. ଓଜନ ତାହାର ଚାଳିଶ କିଲୋ
ପଡ଼ି ଚାରିଭାଗ ହେଲା ପଥର
ଯେତେ ମାଗିଲେ ସେ ଦିଏ ତଉଲି
ଚାରିଖଣ୍ଡ କେତେ କିଲୋ ସୁମାରି । ... ୨୭+୯+୩+୧=୪୦
୪୫୩୬. ଓଲଟ ବୃକ୍ଷରେ ବସିଛି ହଂସ
ଉଡ଼ିଗଲେ ହଂସ କେ ହୁଏ ଶେଷ
୪୫୩୭. ଓଖର ଖାଇଲେ କିସ ହୁଅଇ
ମାଦକ ପିଇଲେ କିସ ଲାଗଇ । ବଳ ଓ ମାତାଲ
୪୫୩୮. ଓଉଗାଲି ପୁଚୁକାଗାଲି
ଜର କରିଛି କି ତୋତେ ?
ନିଶ ଦିଇଟା ଫରକା ଫରକା
ନେଇ ଯିବୁକି ମୋତେ ? ... ବିରାଡ଼ି ଓ ମଣ୍ଡାପିଠା
୪୫୩୯. ଓଳି ତଳେ କୋଳି ଝର ଝର ହୋଇ ପଡ଼େ
ରଜାଘରେ ଟିକି ପୁଅଟି
ସକାଳୁ ବୁଡ଼ା (=ବୁଡ଼)ମାରେ । ... ମାଠିଆ
୪୫୪୦. ଏବୟମିତି ଗୋଟିଏ ପ୍ରାଣୀର ନାଁ କୁହ,
ଯାହା ପ୍ରଥମେ ଚାରି ଗୋଡ଼ରେ ଚାଲେ
ତାପରେ ଦୁଇ ଗୋଡ଼ରେ ଚାଲେ
ତାପରେ ତିନିଗୋଡ଼ରେ ଚାଲେ । ... ମଣିଷ
୪୫୪୧. ଓହୋ କାଳିଆ ଧୂମସା
ଗୋଡ଼ ଉପରକୁ ,ମୁଣ୍ଡ ତଳକୁ
ଏକଥା ରହିଛି ସପ୍ତ ପୁରୁଷକୁ । ପଦ୍ମଫୁଲ
୪୫୪୨. ଓଳି ତଳେ କୋଳିଗଛ ଝଡ଼ିଝଡ଼ି ପଡ଼ଇ
ଷାଠିଏ ଟଙ୍କା ଦେଲେ ସେତ ନାହିଁ ନାହିଁ କରଇ । ଆଖି

୪୫୪୩. ଏଡ଼ିକିଟିକେ ଠେକି
ଲଙ୍କା ଗଲା ଫାଟି । ... ଟସର ପୋକ

୪୫୪୪. ଏନ୍ତା ସୁନ୍ଦର୍ ଜୀବନ ଗୁଟେ
ପୋ'କେ ଦୟାନାଇଁ
ଜନମ କରି ଦି ଯେସି ପଲେଇ
ଢ଼ୀ ଯେସନ ସେହି । ... କଇଁଛ

୪୫୪୫. ଏମତା ସୁନ୍ଦର ନାଟ କରିବି ସବ୍‌କେ
ସବବ୍ିହ୍ଲିସି
ତଳେ ଷୋଳ ଉପରେ ଷୋଳ
ମଝିରେ ବିଚରା ଥିସି । ଜୀବ

୪୫୪୬. ଏଡ଼ିକି ଟିକେ ଠେକି
ନାହିଁ ପାରୁଚେଃ ଟେକି । କୂଅ

୪୫୪୭. ଏଡ଼ିକି ଟିକେ ପିଲା
ଡ଼ଙ୍ଗରେ ଯାଇ ଲଢ଼େଇ କଲା । କୁରାଢ଼ୀ

୪୫୪୮. ଇଡ଼ଙ୍ଗରୁ ଆସିଲି ,ସେ ଡ଼ଙ୍ଗରୁ ଆସିଲି
ମଝିର ଡ଼ଙ୍ଗରେ ଶିଷା
ତୋତେ ଛାଡ଼ି ତୋର ,ଗୁରୁଙ୍କୁ ପଚାର
ଚି଼ତାକୁ ଛେକିଚେ଼ ମୂଷା । ଆଖିତଳ ପତା ।





## ସଙ୍କଳୟିତା- ଶ୍ରୀ ବିନୋଦ ବିହାରୀ ଦାସ

| | |
|---|---|
| ଜନ୍ମ- | ବାରିପଦା (୨୩-୦୮-୧୯୩୧) |
| ଆଦିବାସସ୍ଥଳୀ- | ଗ୍ରାମ-ବାଗଲପୁର, ପୋଷ୍ଟ-ଅଠାନ୍ତର-୭୫୨୧୦୨, ଭାୟା-ଭୁବନେଶ୍ୱର-ବାଲିପାଟଣା,ଜିଲ୍ଲା-ଖୋର୍ଦ୍ଧା |
| ଶିକ୍ଷାଗତ ଯୋଗ୍ୟତା- | ବି.ଏସ୍.ସି ,ଏଲ .ଏଲ.ବି. |
| ବୃତ୍ତି- | ଆଡ଼ଭୋକେଟ (ଟିକସ ଆଇନ ପରାମର୍ଶଦାତା) |

***ଅନ୍ୟାନ୍ୟ କାର୍ଯ୍ୟାବଳୀ-***

- ଓଡ଼ିଶା ରାଜ୍ୟ ବାରକାଉନସିଲର ପୂର୍ବତନ ଉପସଭାପତି ।
- ନିଖିଳ ଭାରତ ଟିକସଆଇନ ପରାମର୍ଶଦାତା ମହାସଂଘର ଜାତୀୟ କାର୍ଯ୍ୟକାରୀ କମଟୀର ସଦସ୍ୟ ।
- ଅନ୍ତର୍ଜାତିକ ବାରଆସୋସିଏସନର ସଦସ୍ୟ ।
- ଭାରତୀୟ ବାର କାଉନସିଲ ତରଫରୁ ଆଇନଜୀବୀ ପ୍ରତିନିଧି ଦଳର ନେତୃତ୍ୱ ନେଇ ୧୯୮୦ ରୁ ୧୯୮୮ ମଧ୍ୟରେ ପାଞ୍ଚଥର ଅନ୍ତର୍ଜାତୀୟ ଆଇନ ମହାସଭାମାନଙ୍କରେ ଯୋଗଦାନ ଏବଂ ଆଇନ ଅନୁଧ୍ୟାୟୀଭାବରେ ୟୁରୋପ,ଆମେରିକା,କାନାଡ଼ା ପ୍ରଭୃତି ଦେଶ ଓ ମହାଦେଶର ବିଭିନ୍ନ ସ୍ଥାନକୁ ଗସ୍ତ ।
- ବିପିନ ବିହାରୀ ଉଚ୍ଚ ବିଦ୍ୟାଳୟ,ବାଗଲପୁରର ଉଦ୍ୟୋକ୍ତା ।
- ବିପିନ ବିହାରୀ ଏଜୁକେସନାଲ ଆଣ୍ଡ ପବ୍ଲିକ ଚେରିଟେବ୍‌ଲ ଟ୍ରଷ୍ଟର ସ୍ଥାପୟିତା ।
- ତ୍ରିଭାଷୀ ଏକତା ସ୍କୁଲ ,ବାରିପଦାର ପୃଷ୍ଠପୋଷକତା ।
- ଓଡ଼ିଆ ଓ ଇଂରାଜୀ ସଂବାଦପତ୍ର,ପତ୍ରିକା,ସ୍ମରଣିକା ପ୍ରଭୃତିର ପ୍ରବନ୍ଧକାର ।
- 'ଭାରତୀ ରତ୍ନଭଣ୍ଡାର ରସସାଗର' ଗ୍ରନ୍ଥ ୧ମ,୨ୟ ଓ ୩ୟ ଖଣ୍ଡ ମାନଙ୍କର ସଙ୍କଳୟିତା ।

ସମ୍ପାଦନା ନିର୍ଦ୍ଦେଶକ

# ସାରଳା ରତ୍ନଭଣ୍ଡାର ରସସାଗର
## (ତୃତୀୟ ଖଣ୍ଡ)

*ଏଥିରେ ରହିଛି :-*

☞ 'ଇ' ଠାରୁ 'ଔ' ପର୍ଯ୍ୟନ୍ତ ଅକ୍ଷର କ୍ରମରେ ଢଗଢମାଳି ,ପ୍ରବାଦ, ପ୍ରବଚନ ,ଲୋକୋକ୍ତି ,ଛଟା,ନାଁ ଦିଆ /ପ୍ରହେଳିକା, ପୁରୀ ବୋଲି ଓ ଲୋକକଥା ଇତ୍ୟାଦି ।

☞ ଗର୍ଭବତୀର ସୁଆଦଖିଆ ,କାଞ୍ଜି ,ରଜଦୋଳି ,ବାରମାସୀ, ଚଢେୟାଣୀ,ମଙ୍ଗଳନ ବନ୍ଦାପନା ପ୍ରଭୃତିର ଢମାଳି ,ପତର -ସଉରା ,ଚଷା,ପାଟୁଆ,କ୍ଷତ୍ରିୟବିଦ୍ୟା ପ୍ରଭୃତିର ବୋଲି,ବଚନିକା ; ମନ୍ତ୍ର,ତନ୍ତ୍ର,ଓ ଗାୟତ୍ରୀ ମନ୍ତ୍ର ଇତ୍ୟାଦିର ପଦମାଳ ।

☞ ଶିଶୁମନୋରଞ୍ଜକ ଓ ଶବଳହଡ଼ି ପଦମାଳ ।

☞ ଢଗଢମାଳି ,ପ୍ରବାଦର ପୃଷ୍ଠଭୂମି , ପ୍ରୟୋଗ ଏବଂ ଓଡ଼ିଆ ପ୍ରବାଦର ପ୍ରଥମ ସଂଗ୍ରହର କାଳ ଓ ତାର ସଂଗ୍ରାହକ ଙ୍କ ସମ୍ବନ୍ଧରେ ଏକ ବିସ୍ତୃତ ଗବେଷଣା ମୂଳକ ଆଲୋଚନା - ଦସ୍ତାବିଜ ନଜିର ସହ ।

☞ ଦର୍ଶନ ଅଧ୍ୟାପକ ଶ୍ରୀଯୁକ୍ତ ହୃଦାନନ୍ଦ ରାୟଙ୍କ ''ଗ୍ରନ୍ଥ ଆମୁଖ'' ।

☞ ଫକୀରମୋହନ ସାହିତ୍ୟ ପରିଷଦର ଅଧକ୍ଷ ପ୍ରଥିତନାମା କବି **ଶ୍ରୀଯୁକ୍ତ ବ୍ରଜନାଥ ରଥ** ଙ୍କର 'ମତାମତ' ।

☞ କେରଳ ହାଇକୋର୍ଟର ମାନ୍ୟବର **ମୁଖ୍ୟ ବିଚାରପତି ଶ୍ରୀଯୁକ୍ତ ଅରଜିତ ପଶାୟତ** ଙ୍କ ଲେଖନୀ ନିସୃତ ପଦାବଳୀ ।

(ପ୍ରକାଶକ)
ବିପିନ ବିହାରୀ ଏଜୁକେସନାଲ ଆଣ୍ଡ ପବ୍ଲିକ ଚେରିଟେବୁଲ ଟ୍ରଷ୍ଟ ।